# ଅମୃତ ଅଭୀପ୍ସାର ସନ୍ଦର୍ଭ

ଡକ୍ଟର ଫଣୀନ୍ଦ୍ରଭୂଷଣ ନନ୍ଦ




ମୁଁ କୃତଜ୍ଞ :
ପ୍ରାବନ୍ଧିକ ଓ କଥାକାର ଶ୍ରୀ ନକୁଳ ଚନ୍ଦ୍ର ସାହୁ
ଗବେଷକ ଶ୍ରୀ ଦେବେନ୍ଦ୍ର କୁମାର ଦାଶ
ପ୍ରଫେସର ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ
ଗବେଷକ ଡକ୍ଟର ଗୌରାଙ୍ଗ ଚରଣ ଦାଶ
ଓ
ପ୍ରକାଶକ କବିବନ୍ଧୁ ରମେଶ ପତିଙ୍କ ଠାରେ...!
- ଫଣୀନ୍ଦ୍ରଭୂଷଣ ନନ୍ଦ

ଅମୃତ ଅଭୀପ୍ସାର ସନ୍ଦର୍ଭ
ଲେଖକ : ଡକ୍ଟର ଫଣୀନ୍ଦ୍ରଭୂଷଣ ନନ୍ଦ
ପ୍ରକାଶକ : ପ୍ରବାହ, ଗୋବିନ୍ଦପୁର,
ଜାହାନପୁର, ଦେବୀଦ୍ୱାର, ଯାଜପୁର-୭
ମୁଦ୍ରଣ : ଗ୍ରାଫିକ୍ସ ୱାର୍ଲ୍ଡ, ବାଦାମବାଡ଼ି, କଟକ-୧୨
ପ୍ରଥମ ସଂସ୍କରଣ : ୨୦୧୬
ମୂଲ୍ୟ : ଟ ୧୮୦/-

AMRUTA ABHIPSARA SANDHARVA
[Anthology of Odia Creative & Critical Essays]
By: *Dr. Fanindra Bhusan Nanda* Rs.180.00

ସ୍ୱର୍ଗତ ପିତା ଶ୍ରୀଯୁକ୍ତ ଗିରିଧାରୀ ନନ୍ଦ
ସ୍ୱର୍ଗତା ମାତା ଶ୍ରୀମତୀ ମନୋରମା ନନ୍ଦ

ମୋର ସାରସ୍ୱତ ସାଧନାର ସମସ୍ତ ଶ୍ରେୟ
ଅପଣଙ୍କର
ତେଣୁ ଏହି ପୁସ୍ତକଟି ଆପଣମାନଙ୍କ
ଅଦୃଶ୍ୟ ଚରଣତଳେ ଅର୍ପଣ କରୁଛି...

- ଫଣୀନ୍ଦ୍ର

# ପ୍ରବନ୍ଧ କ୍ରମ...





# ସ୍ମାରକପତ୍ର ଅନ୍ତରାଳରେ
# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ୱର ଓ ସ୍ୱାକ୍ଷର

ଓଡ଼ିଶା ଇଂରେଜ ଶାସନଭୁକ୍ତ ହେବା ଏକ ଐତିହାସିକ ଘଟଣା । ଓଡ଼ିଶାର ସମାଜନୀତି, ରାଜନୀତି ତଥା ସାହିତ୍ୟ-ସଂସ୍କୃତି ଇଂରେଜ ଶାସନ କାଳରେ ଲାଭ କରିଥିଲା ନୂତନ ଆୟାମ । 'କୁସଂସ୍କାର ଓ ପୌତ୍ତଳିକତାର ଉପବନ ଓଡ଼ିଶା' ରୂପରେ ବିଦିତ ଭୂମିଖଣ୍ଡ ଏହି କାଳଖଣ୍ଡରେ ବିଶୋଧିତ ହୋଇଥିଲା । ଶିକ୍ଷା ଓ ସଂସ୍କୃତିର ଦିଗନ୍ତ ପରିବ୍ୟାପ୍ତ ହୋଇଥିଲା । ମିଶନାରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାରର ଉଦ୍ଦେଶ୍ୟ ରଖି ଓଡ଼ିଶାରେ ନୂତନ ଶିକ୍ଷା ପ୍ରଦାନର ପ୍ରଚେଷ୍ଟା କରିଥିଲେ । ଏହି କ୍ଷେତ୍ରରେ ସେମାନେ ମାତୃଭାଷାର ଉପଯୋଗିତା ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ । (୧)

ଇଂରେଜ ଶାସନ ପୂର୍ବରୁ ଓଡ଼ିଶାର ଶିକ୍ଷାକ୍ଷେତ୍ର କେବଳ ଚାଟଶାଳୀ ଓ ଟୋଲ ଭିତରେ ସୀମିତ ଥିଲା । ନଅଙ୍କ ଦୁର୍ଭିକ୍ଷ (୧୮୬୬) ପର୍ଯ୍ୟନ୍ତ ଏହି ଚିତ୍ରରେ କୌଣସି ଆଖିଦୃଶିଆ ପରିବର୍ତ୍ତନ ଦୃଷ୍ଟିଗୋଚର ହୋଇ ନ ଥିଲା । ଶିକ୍ଷା ଅଭାବରୁ ଲୋକେ ନିଜର ଅବସ୍ଥାକୁ ଠିକ୍ ରୂପେ ପରିବେଷଣ ନ କରିବାରୁ ଏପରି ଏକ ବିରାଟ ଦୁର୍ଗତି ଓ ଲକ୍ଷ ଲକ୍ଷ ଲୋକଙ୍କ ପ୍ରାଣହାନି ଘଟିଥିବାର ସରକାର ଅନୁଭବ କଲେ । ଏହି କ୍ଷତିର ଯଥାର୍ଥ ଭରଣା ନିମନ୍ତେ ଇଂରେଜ ସରକାର ଓଡ଼ିଶାରେ ଶିକ୍ଷାର ପ୍ରସାର ଦିଗରେ ଉଚିତ ପଦକ୍ଷେପ ଗ୍ରହଣ କଲେ ।(୨) ଓଡ଼ିଶାରେ ଏକ କ୍ରମବର୍ଦ୍ଧିଷ୍ଣୁ ଶିକ୍ଷିତ ଗୋଷ୍ଠୀ ଯେଉଁମାନେ ଓଡ଼ିଆ ଭାଷାର ଜୀବନ୍ମୃତ ସଙ୍କଟ କାଳରେ ଯାହାକିଛି ମୌଳିକ ଉତ୍କଳୀୟତା ତାହାରି ନେତୃତ୍ୱ ନେଇଥିଲେ । ନଅଙ୍କ ଦୁର୍ଭିକ୍ଷର ପ୍ରଚଣ୍ଡ ଧକ୍କାରେ ଅତୀତର ଏହି କୃତବିଦ୍ୟ ଶିକ୍ଷୀଜାତି ଯେପରି ଅର୍ଦ୍ଧମୃତ ହୋଇଥିଲା, ଦୁର୍ଭିକ୍ଷ ପରବର୍ତ୍ତୀ କାଳରେ ଶ୍ମଶାନ ଏବଂ ଧ୍ୱଂସର ଚିତାନଳ ମଧ୍ୟରୁ ସେହିପରି ଏକ ସ୍ୱାଭିମାନୀ ଦୃଢ଼ ପ୍ରତିଜ୍ଞ ଜାତିର ଅଭ୍ୟୁଦୟ ଘଟିଥିଲା । (୩)

ରାଜତନ୍ତ୍ରର ଢ଼ାଞ୍ଚାରେ ଗଠିତ ଓଡ଼ିଶାର ସମାଜ ଜୀବନ ବ୍ରିଟିଶମାନଙ୍କ ଶାସନାଧୀନରେ ଗଣତନ୍ତ୍ର ପଦ୍ଧତି ଆଡକୁ ପରିବର୍ତ୍ତିତ ହୋଇଥିଲା । ନୂତନ ଶିକ୍ଷା ଓ ସଂସ୍କୃତିର ଅଭ୍ୟୁତ୍ଥାନ ଫଳରେ ଗଢ଼ି ଉଠିଥିଲା ଏକ ଶିକ୍ଷିତ ସମାଜ । ଏହି ସମାଜ ନିଜର ଅସ୍ମିତାକୁ ଦୃଢ଼ମୂଳ

ଭାବେ ରୋପିତ କରିବାକୁ ଉଦ୍ୟମ ଜାରି ରଖିଥିଲା । ଏପରି ଏକ ପରିବର୍ତ୍ତିତ ଚିତ୍ତବୃତ୍ତିର ସନ୍ଧିକ୍ଷଣରେ ଓ ଔପନିବେଶିକ ପରିବେଶରେ ଗଢ଼ି ଉଠିଲା ସିଭିଲ୍ ସୋସାଇଟି । ଏହି ସମାଜ ନିଜର ଆତ୍ମ ପରିଚୟକୁ ସାବ୍ୟସ୍ତ କରିବାକୁ ବିଭିନ୍ନ ମାଧ୍ୟମର ଆଶ୍ରୟ ନେଲା । ଇଂରେଜମାନଙ୍କ ଔପନିବେଶିକ ଶାସନ ପଦ୍ଧତିରେ ଆବେଦନ ନିବେଦନ ଓ ପ୍ରତିବେଦନର ପରଂପରା ସୃଷ୍ଟି କରିଥିଲା । ଶିକ୍ଷିତ ସମାଜ ନିଜର ଅଭାବ ଅସୁବିଧା ଓ ଅସଙ୍ଗତିକୁ ସ୍ମାରକପତ୍ର ମାଧ୍ୟମରେ ଶାସନମୁଖ୍ୟଙ୍କ ଦୃଷ୍ଟିକୁ ଆଣିଲା । ସ୍ମାରକପତ୍ର ପ୍ରଦାନର ପରମ୍ପରା ଦୁଇଟି କାରଣ ଉପରେ ପ୍ରତିଷ୍ଠିତ ପ୍ରଥମତଃ ନିଜର ଜାତୀୟ ଅସ୍ମିତା ସମ୍ପର୍କରେ ସଚେତନତା ଓ ଦ୍ୱିତୀୟରେ ନିଜର ଯଥାର୍ଥ ଦାବି ଉପସ୍ଥାପନା ।

ରାଜଭାବନାରେ ବଶୀଭୂତ ଓଡ଼ିଆ ସମାଜ ଦେଶ ପରିଚାଳନାରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରୁନଥିଲା । ଇଂରେଜମାନଙ୍କ ଆଗମନ ପରେଦେଶର ଉନ୍ନତି ପାଇଁ ଜନତା ସାମୂହିକ ଭାବେ ଉଦ୍‌ବୁଦ୍ଧ ହୋଇଥିଲେ । ବ୍ୟକ୍ତି ଓ ଗୋଷ୍ଠୀର ହିତସାଧନ ପାଇଁ ଶାସକମାନଙ୍କ ସହିତ ଜନସାଧାରଣ ମଧ୍ୟ ଏହି ସମୟରେ ସଚେତନ ହୋଇଥିଲେ । ଜନ ସାଧାରଣଙ୍କ ସଂଯୋଗ ଦ୍ୱାରା ହିଁ ଦେଶର ସର୍ବାଙ୍ଗୀନ ଉନ୍ନତି ସମ୍ଭବ, ଏପରି ଏକ ବିଶ୍ୱାସ ଦୃଢ଼ୀଭୂତ ହୋଇଥିଲା । ଶାସନ କଳର ସୁପରିଚାଳନା ଲୋକଙ୍କ ଅଂଶଗ୍ରହଣ ମାଧ୍ୟମରେ ସଫଳକାମ ହେବ ବୋଲି ଧାରଣା ଜନ୍ମିଲା । ଆଧୁନିକ ଶିକ୍ଷାର ପ୍ରସାର ଥିଲା ସାଧାରଣ ଚିତ୍ତବୃତ୍ତି ଅଭ୍ୟୁଦୟର ଯଥାର୍ଥ ମାଧ୍ୟମ । ଲୋକବଳର ଅଭ୍ୟୁଦୟ ଜନଜାଗରଣ ସଂଗଠନ କରିବାରେ ସଫଳ ହୋଇଥିଲା । ଆଧୁନିକ ଶିକ୍ଷାର ଫଳପ୍ରସୂ ରୂପେ ସାଂସ୍କୃତିକ ଅନୁଷ୍ଠାନ, ମୁଦ୍ରାଯନ୍ତ୍ର, ପତ୍ରପତ୍ରିକା ଗଢ଼ିଉଠିଲା । ଏହି ଅନନ୍ୟ ମାଧ୍ୟମଗୁଡ଼ିକ ଦେଶର ଜନମତ ସଂଗଠିତ ଓ ପ୍ରଚାରିତ କରିବାରେ ଅଭିନବ ଭୂମିକା ସମ୍ପାଦନ କରିଥିଲେ । ଆଧୁନିକ ଶିକ୍ଷା ଜ୍ଞାନର ବାତାୟନକୁ ଉନ୍ମୋଚନ କରି ପାଶ୍ଚାତ୍ୟ ଜ୍ଞାନବିଜ୍ଞାନ ଓ ସାହିତ୍ୟର ପରିବେଷଣ ଓ ତଜ୍ଜନିତ ଏକ ସ୍ୱତନ୍ତ୍ର ଶିକ୍ଷିତ ସମ୍ପ୍ରଦାୟ ସୃଷ୍ଟିରେ ସହାୟକ ହୋଇଥିଲା । ଏହି ଶିକ୍ଷିତ ସମ୍ପ୍ରଦାୟ ଦେଶର ଭାଗ୍ୟ ନିୟନ୍ତ୍ରଣ ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଏକ ଶିକ୍ଷିତ ଶ୍ରେଣୀର ଅଭ୍ୟୁଦୟ ସହିତ ସେମାନେ ଜାତିର ଯଥାର୍ଥ ଦାବି ଉପସ୍ଥାପନ କ୍ଷେତ୍ରରେ ନିଜର ସାମର୍ଥ୍ୟ ପ୍ରଦର୍ଶନ କରିଥିଲେ । ଦାବି ଉପସ୍ଥାପନର ବଳିଷ୍ଠ ମାଧ୍ୟମ ରୂପେ ସାଂସ୍କୃତିକ ଅନୁଷ୍ଠାନ ଗଠନ ଏବଂ ସ୍ମାରକପତ୍ର ପ୍ରଦାନ ବିବେଚିତ ହୋଇଥିଲା । ଆସୋସିଏଶନ, କ୍ଲବ, ସାଂସ୍କୃତିକ ଅନୁଷ୍ଠାନ ଗଠନର ପ୍ରାବଲ୍ୟ ଉନ୍ନବିଂଶ ଶତାବ୍ଦୀରେ ଦେଖାଯାଏ । ଏହି ଅନୁଷ୍ଠାନ ମାଧ୍ୟମରେ ଶିକ୍ଷିତ ଯୁବଗୋଷ୍ଠୀ ଯେଉଁ ଦୁଇଟି ପ୍ରମୁଖ ଦାବି ଉପସ୍ଥାପନ ଓ ସଫଳକାମ ହୋଇଥିଲେ ତାହା ହେଲା (କ) ଓଡ଼ିଶାରେ ରେଳ ରାସ୍ତା ନିର୍ମାଣ ଓ (ଖ) ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ । (୪) ଏହି ପ୍ରସଙ୍ଗରେ ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କିତ ସ୍ମାରକପତ୍ର ଉପରେ ସୂକ୍ଷ୍ମ ବିଶ୍ଳେଷଣ ହିଁ ସଂଶିତ ନିବନ୍ଧର ଲକ୍ଷ୍ୟ ।

ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ, ଭାଷା ଆନ୍ଦୋଳନ ଓ ସର୍ବୋପରି ଓଡ଼ିଆ ଭାଷା ଭିତ୍ତିକ ପ୍ରଦେଶ ଗଠନ ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ନଅଙ୍କ ଦୁର୍ଭିକ୍ଷ ପରେ ବ୍ରିଟିଶ ଶାସକ ଗଣ ଓଡ଼ିଶାର ଦୂରବସ୍ଥାକୁ ଅନୁଭବ କଲେ ଏବଂ ଏହାକୁ ବଙ୍ଗରୁ ବିଚ୍ଛିନ୍ନ କରିବାକୁ ପ୍ରସ୍ତାବ ଦେଲେ । ଏହି ପ୍ରସଙ୍ଗରେ ୧୮୬୮ରେ ସାର୍ ଷ୍ଟାଫର୍ଡ ନର୍ଥକୋଟ ଭାରତ ସରକାରଙ୍କ ସଚିବଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ସେ ନଅଙ୍କ ଦୁର୍ଭିକ୍ଷ ପରିସ୍ଥିତିକୁ ନିୟନ୍ତ୍ରଣ କରିବାରେ ବଙ୍ଗ ସରକାରଙ୍କ ଅପାରଗତାକୁ ଦର୍ଶାଇ ଏହାର ସୀମାକୁ କମାଇବା ଓ ଆସାମ ଓ ଓଡ଼ିଶାକୁ ବଙ୍ଗରୁ ବିଚ୍ଛିନ୍ନ କରିବାର ପ୍ରସ୍ତାବ ଦେଇଥିଲେ । (୫) ଭାରତ ସରକାରଙ୍କ ଆକାଉଣ୍ଟ ଜେନେରାଲ ଜର୍ଜ ଚେସନି ମଧ୍ୟ ଭୌଗୋଳିକ ଅବସ୍ଥିତିର ଦୁରାଗମ୍ୟତା ଦର୍ଶାଇ ଉଲ୍ଲିଖିତ ମନ୍ତବ୍ୟକୁ ସମର୍ଥନ କରିଥିଲେ । (୬)

ଓଡ଼ିଆ ଭାଷା ସୁରକ୍ଷା, ଭାଷାଭିତ୍ତିକ ପ୍ରଦେଶ ଗଠନ ଏକ ପ୍ରଲମ୍ବିତ ଆନ୍ଦୋଳନ । ଏହାର ପଶ୍ଚାତରେ କିଛି ବ୍ରିଟିଶ ଶାସକଙ୍କ ସମର୍ଥନ, ଦେଶୀୟ ଲୋକଙ୍କ ଉଦ୍ୟମ ନିହିତ । ୧୮୪୫ରେ ପ୍ରଥମେ ସିଂହଭୂମର ଲୋକେ ବିଦ୍ୟାଳୟରେ ଓଡ଼ିଆ ଶିକ୍ଷା ଓ ଓଡ଼ିଶା ସହିତ ତାଙ୍କର ବିଶ୍ରଣ ପାଇଁ ସରକାରଙ୍କ ନିକଟରେ ଦାବି କରିଥିଲେ । (୭) ଅନ୍ୟାନ୍ୟ ଅଞ୍ଚଳର ଓଡ଼ିଆମାନେ ନଅଙ୍କ ଦୁର୍ଭିକ୍ଷ ପରେ ଅନୁଭବ କଲେ ବିଚ୍ଛିନ୍ନତା ହିଁ ଓଡ଼ିଆମାନଙ୍କ ସର୍ବଶ୍ରେଷ୍ଠ ଦୁଃଖ । ଭାଷା ଆନ୍ଦୋଳନ ସମୟରେ ଏହି ଅନୁଭବ ଅଧିକ ଦୁର୍ବିସହ ହୋଇଉଠିଥିଲା । ଏଥିପାଇଁ ପତ୍ରପତ୍ରିକା ପୃଷ୍ଠାରେ ପ୍ରତିବାଦ ସହ ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ ଯୋଗୁ ଏହି ଭୂଖଣ୍ଡର ଉନ୍ନତି ସମ୍ଭବ ବୋଲି ଲୋକଚିତ୍ତରେ ଧାରଣା ଜନ୍ମିଥିଲା । ଏହି ଦୁଃଖଦ ଅନୁଭୂତିକୁ ସ୍ୱଭାବ ସୁଲଭ ଢ଼ଙ୍ଗରେ ଉତ୍କଳ ଦୀପିକା 'ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ' ଶୀର୍ଷକରେ ପରିବେଷଣ କରିଥିଲା ।

ତେବେ ଉତ୍କଳ ଭାଷା ଉନ୍ନତି ପ୍ରତି କି ବ୍ୟାଘାତ ଅଛି । ଆମ୍ଭମାନଙ୍କର ବିଶ୍ୱାସ ଏହ ଯେ ବର୍ତ୍ତମାନ ଉତ୍କଳ ଭାଷା 'ତିନି ଥେଁଟିଯା କାକୁଡ଼ି ବାଡ଼ି' ପ୍ରାୟ ତୁଚ୍ଛାକୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନି ଗଭର୍ଣ୍ଣମେଣ୍ଟ ହୋଇ ଅଛନ୍ତି । ଏକଭାଗ ବଙ୍ଗଳା ଗଭର୍ଣ୍ଣମେଣ୍ଟ ହସ୍ତେ ଏକ ଭାଗ ମଧ୍ୟପ୍ରଦେଶର ଗଭର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକ ଭାଗ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ହସ୍ତେ ପଡ଼ିବାରୁ ଏହାର ସର୍ବାଙ୍ଗ ସମାନ୍ ରୂପେ ଗଠନ ହେଉନାହିଁ । ଏକ ଏକ ସ୍ଥାନରେ ଏକ ଏକ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାର ପୁସ୍ତକ ପଠିତ ହୁଅଇ କେଉଁ ନିୟମ ଭଲ ଅବା ମନ୍ଦ ଜାଣିବାର ଉପାୟ ନାହିଁ ସୁତରାଂ ଉତ୍କଳ ଭାଷା ଦୁଇଘର କୁଣିୟା ହୋଇ ଉପବାସ ଶୋଉଅଛି । କେହି ଏହାର ଚର୍ଚ୍ଚାକରିବାକୁ ନାହିଁ ଏ ରପ ଅବସ୍ଥାଅତି ଶୋଚନୀୟ ଓ ଆମ୍ଭମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବାର ଉଚିତ । (୮)

ଦୀପିକାର ସ୍ୱର ସହିତ ସ୍ୱର ମିଳାଇ ସମ୍ବାଦ ବାହିକା, ସମ୍ବଲପୁର ହିତୈଷିଣୀ ପ୍ରମୁଖ ସମ୍ବାଦପତ୍ର ଦେଶ ମିଶ୍ରଣ ସପକ୍ଷରେ ବିଭିନ୍ନ ସମୟରେ ମତ ପ୍ରଦାନ କରିଛନ୍ତି । ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ଉଚ୍ଛେଦ (୧୮୯୪-୯୫) ପ୍ରସଙ୍ଗରେ ସମ୍ବଲପୁର ହିତୈଷିଣୀର ପ୍ରତିବାଦ ବେଶ୍ ଶାଣିତ ଓ ଯୁକ୍ତିପୂର୍ଣ୍ଣ । (୯) ଏହି ପର୍ଯ୍ୟାୟରେ ସମ୍ବଲପୁର ହିତୈଷିଣୀର ଘୋଷଣା ପ୍ରଣିଧାନଯୋଗ୍ୟ 'ଯଦି ଭାଷା ପରିବର୍ତ୍ତନ ନ କଲେ ମଧ୍ୟପ୍ରଦେଶ ଅଧୀନରେ ଏ ଜିଲାର ଶାସନ ବିଚାର କାର୍ଯ୍ୟ ଚଳି ନ ପାରେ ତେବେ ଏ ଜିଲା ମଧ୍ୟପ୍ରଦେଶରୁ ବାହାର କରି ଓଡ଼ିଶା ସହିତ ମିଶାଇ ଦେଲେ ଭାଷା ପରିବର୍ତ୍ତନ ନ କଲେ ମଧ୍ୟ କାର୍ଯ୍ୟ ଚଳିପାରେ ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥିତ ବିଷୟ ହେବା ଉଚିତ ।''(୧୦) 'ସମ୍ବଲପୁର ଭାଷା ସଙ୍କଟ' ଶୀର୍ଷକରେ ପ୍ରୋକ୍ତ ପତ୍ରିକା ପୁଣିଥରେ ଓଡ଼ିଆ ଭାଷା ଅଞ୍ଚଳର ଏକତ୍ରୀକରଣ ପାଇଁ ଦାବି ଉପସ୍ଥାପିତ କରିଛି,''ଆମ୍ଭମାନଙ୍କ ଏପରି ବିଶ୍ୱାସ ଥିବାରୁ କହୁଅଛୁଁ ଯେ ସମ୍ବଲପୁର, ଗଞ୍ଜାମ ଏବଂ ଏକତ୍ରରେ ଏକ ଚିଫ୍ କମିଶନରଙ୍କ ଅଧୀନରେ ରଖିବା ବିଷୟକ ପୂର୍ବ ପ୍ରସ୍ତାବର ସଫଳତା ଚେଷ୍ଟା କଲେ ସେହି ସାଧୁ ସଂକଳ୍ପ ସିଦ୍ଧ ହୋଇପାରେ ।''(୧୧)

କେବଳ ଭାଷା ଯୋଗୁଁ ନୁହେଁ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଦୃଷ୍ଟିକୋଣରୁ ଏହି ସମସ୍ତ ଅଞ୍ଚଳର ଓଡ଼ିଶା ସହିତ ମିଶ୍ରଣକୁ ସମକାଳୀନ ପତ୍ରପତ୍ରିକା ସମସ୍ୱରରେ ନିବେଦନ କରିଥିଲେ । ସମ୍ବଲପୁର ଓ ଗଞ୍ଜାମ ଅଞ୍ଚଳ ଓଡ଼ିଶା ସହିତ ମିଶ୍ରଣଦ୍ୱାରା ବୃହତ୍ତର ଓଡ଼ିଶା ପ୍ରଦେଶ ଗଠନ ଓ ତଦ୍‌ଜନିତ ଓଡ଼ିଆ ଭାଷାର ଉନ୍ନତି ସାଧନ ସମ୍ଭବ ହେବ । ଏହିମତ ପ୍ରଦାନରେ ବାହିକା, ଦୀପିକା, ଉତ୍କଳପୁତ୍ର, ସମ୍ବଲପୁର ହିତୈଷିଣୀ ପ୍ରମୁଖ ସମ୍ବାଦପତ୍ର ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଏକ ବିଶାଳ ଜନ ସଚେତନତା ସୃଷ୍ଟିରେ ସମ୍ବାଦପତ୍ରଗୁଡିକ ସଫଳ ହୋଇଥିଲେ । ଏକତ୍ରୀକରଣ ପାଇଁ ବିଭିନ୍ନ ସ୍ତରରୁ ବିଭିନ୍ନ ପ୍ରେକ୍ଷାପଟରେ ଦାବି ହୋଇଥିଲା । ବିଭିନ୍ନ ବ୍ୟକ୍ତି ବିଶେଷ ଓ ଅନୁଷ୍ଠାନ ତରଫରୁ ସରକାରଙ୍କୁ ସ୍ମାରକପତ୍ର ପ୍ରଦାନ କରାଯାଇଥିଲା ।

ଗଞ୍ଜାମ-ଉତ୍କଳ-ହିତବାଦିନୀ ସଭା ତରଫରୁ ୧୮୬୯ରେ ପ୍ରଥମେ ଦେଶ ମିଶ୍ରଣ ପାଇଁ ଆବେଦନ କରାଯାଇଥିବାର ଜଣାଯାଏ । ଉକ୍ତ ସଭାର ସଭାପତି କାଟିଂଗା ରାଜା ଶ୍ରୀବେଙ୍କଟଶ ଦେଉ ୧୮୭୩ରେ ଉତ୍କଳ ଦୀପିକାରେ ଏକ ପତ୍ର ଲେଖି ଉଲ୍ଲିଖିତ ବିଷୟର ପୁଷ୍ଟି କରନ୍ତି । ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ ବିଲାତ ଆୟବ୍ୟୟ ସଭାରେ ସାକ୍ଷ୍ୟ ଦେବାକୁ ଯାଉଥିବାର ଶୁଣି ତାଙ୍କୁ ପ୍ରାର୍ଥିତ ବିଷୟ ମହାରଣୀଙ୍କଠାରେ ନିବେଦନ କରିବାକୁ ବେଙ୍କଟଶ ଅନୁରୋଧ କରିଛନ୍ତି । ସେ ଲେଖିଥିଲେ- ଯେବେ ଚନ୍ଦ୍ରୋଦୟ ହୁଅନ୍ତି ବନରେ କିମ୍ବା ଭବନରେ ସମାନ ରଶ୍ମି ବିତରଣ କରନ୍ତି ତେବେ ସାରାସାର ବିବେକ ପ୍ରଭୁର ସମୀପରେ ପ୍ରଜାମାନେ ଯଦ୍ୟପି ଆପଣାର ଦୁଃଖ ଆବେଦନ କରିବେ ସେକି ନ ଶୁଣିବେ ଏମନ୍ତ ଅଭିମତରେ ଗତ ସନ ୧୮୬୯ ମସିହାରେ ଗବର୍ଣ୍ଣରଙ୍କ ସମୀପ ଚାରୋଟି ବିଷୟରେ

ଅଙ୍ଗୀକୃତ କରିବା ନିମିତ୍ତ ବିନୟ ଜଣାଣ ପତ୍ରିକା ପ୍ରେରିତ କରିଥିଲେ ଯଥା ୧-ଏ ଜିଲ୍ଲା ରାଜା ଓ ପ୍ରଜା ଶୁଦ୍ଧ ଓଡ଼ିଆ ହୋଇଥିବାରୁ ଓଡ଼ିଆମାନଙ୍କଠାରୁ ଓଡ଼ିଆ ଲିପିରେ ଦରଖାସ୍ତାଦି ମଞ୍ଜୁର କରିବାକୁ ୨- ରିକର୍ଡ ଓଡ଼ିଆରେ ରଖିବାକୁ ୩- ପରୀକ୍ଷା ପ୍ରଥମାବଧି ଯେଉଁପରି ତେଲଙ୍ଗୀ ଭାଷାରେ ଅଙ୍ଗୀକୃତ କରିଅଛନ୍ତି ସେହିପରି ଓଡ଼ିଆରେ ସମ୍ମତ କରିବାକୁ ୪- ପ୍ରତ୍ୟେକ ସ୍କୁଲରେ ଓଡ଼ିଆ କ୍ଲାସ ରଖିବାକୁ ଆବେଦନ କରିଥିଲେ ।''(୧୨) ଏହି ଆବେଦନର ଶେଷ ଦୁଇଟି ପ୍ରାର୍ଥନାକୁ ମଞ୍ଜୁର କରାଯାଇଥିଲା । ଅନ୍ୟ ଦୁଇଟି ପ୍ରାର୍ଥନା ସମ୍ପର୍କରେ ବିଲାତାରେ ଉଦ୍ୟମ କରିବାକୁ ଏହି ପତ୍ରରେ ବେଉ କାଳୀପଦ ବାବୁଙ୍କୁ ଅନୁରୋଧ କରିଛନ୍ତି । ପାଠକଙ୍କ ଅବଗତି ପାଇଁ ପୂର୍ଣ୍ଣାଙ୍ଗ ପତ୍ରଟି ପରିଶିଷ୍ଟ-୧ରେ ପ୍ରଦତ୍ତ କରାଗଲା ।

ଜନବୀମସ ଓଡ଼ିଶାର କମିଶନର ଥିଲାବେଳେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ଓଡ଼ିଆମାନେ ନିବେଦନ କରିଥିଲେ । (୧୩) ବାଲେଶ୍ୱରବାସୀ ଲେଫ୍‌ଟନେଣ୍ଟ ଗଭର୍ଣ୍ଣର ରିଚାର୍ଡ ଟେଂପଲଙ୍କ ଓଡ଼ିଶା ଗସ୍ତ ସମୟରେ ଦେଶ ମିଶ୍ରଣ ଓ ଅନ୍ୟାନ୍ୟ ସମସ୍ୟା ସମ୍ପର୍କରେ ଦାବିପତ୍ର ପ୍ରଦାନ କରିଥିଲେ । ଏହି ପତ୍ରରେ ଉପସ୍ଥାପିତ ବିଷୟ ଓ ଗଭର୍ଣ୍ଣରଙ୍କ ଉତ୍ତର ''ବାଲେଶ୍ୱର ବାସୀଙ୍କର ପ୍ରାର୍ଥନା ପ୍ରତି ଲେଫଟନେଣ୍ଟ ଗଭର୍ଣ୍ଣରଙ୍କ ଉତ୍ତର'' ଶୀର୍ଷକରେ ଦୀପିକା ପୃଷ୍ଠାରେ ପ୍ରକାଶିତ ହୋଇଥିଲା । ଏହି ପତ୍ରରେ ସର୍ବମୋଟ ନଅଟି ପ୍ରାର୍ଥନା କରାଯାଇଥିଲା । ୧- କଲିକତାରୁ ମେଦିନୀପୁର ଓ କୋକନଦା ଦେଇ ମାନ୍ଦ୍ରାଜକୁ ରେଳପଥ ନିର୍ମାଣ ୨- ଗଞ୍ଜାମ ଓ ସମ୍ବଲପୁରକୁ ଓଡ଼ିଶାରେ ମିଶ୍ରଣ ୩- ପ୍ରତ୍ୟେକ ସବଡିଭିଜନରେ ବିଶ୍ୱବିଦ୍ୟାଳୟ ପ୍ରବେଶିକା ପରୀକ୍ଷା ଉପଯୋଗୀ ସରକାରୀ ବିଦ୍ୟାଳୟ ସ୍ଥାପନ ୪- ଗଡଜାତର ଶିକ୍ଷା ବିସ୍ତାର ୫- ଉତ୍କଳୀୟ ବଙ୍ଗାଳୀମାନଙ୍କ ମାତୃଭାଷା ଶିକ୍ଷା ପାଇଁ ବିଦ୍ୟାଳୟ ପ୍ରତିଷ୍ଠା ୬- ବୁଢ଼ାବଳଙ୍ଗ ନଦୀ ମୁହାଁଣ ଗଭୀର କରିବା ୭- ବାଲେଶ୍ୱର ଲବଣ ମାସୁଲ ଊଣା କରିବା ୮- ଓଡ଼ିଶା ଭୂମିର ଚିରସ୍ଥାୟୀ ବନ୍ଦୋବସ୍ତ, ୯- ରାଜସ୍ୱ ଆଦାୟ ନିମିତ୍ତ ପ୍ରଜାଙ୍କ ଉପରେ ନିୟମ ପ୍ରଣୟନ । ଏହି ସମସ୍ତ ନିବେଦନ ମଧ୍ୟରୁ ୧,୩,୫,୬ ଓ ୭ ନମ୍ବର ପ୍ରାର୍ଥନାର ଉତ୍ତର ଦିଆଯାଇଛି । ଏହି ପ୍ରାର୍ଥନାର ମୁଖ୍ୟ ଦାବି ଦେଶ ମିଶ୍ରଣକୁ ଲେଫଟନେଣ୍ଟ ଗବର୍ଣ୍ଣର ଚତୁରତାର ସହିତ ଏଡାଇ ଯାଇଥିଲେ । ଏହି ପର୍ଯ୍ୟାୟରେ ଦୀପିକା ମନ୍ତବ୍ୟ ପ୍ରଣିଧାନଯୋଗ୍ୟ- ''ବାଲେଶ୍ୱର ନିବାସୀଙ୍କର ୯ଟି ପ୍ରାର୍ଥନା ମଧ୍ୟରୁ ୫ଟି ଉତ୍ତର ଦେଇଅଛନ୍ତି ବାକି ଚାରୋଟି ବିଷୟରେ କିଛି କହିନାହାନ୍ତି ମାତ୍ର ଉତ୍ତରର ଆରମ୍ଭରେ ଲେଖାଅଛି କି 'ଏ ଲିପିରେ ଏପରି ଅନେକ ଅନେକ ବିଷୟ ଅଛିକି ଯାହା ମାନ୍ୟବର ମନୋଯୋଗ ପୂର୍ବକ ବିବେଚନା କରିବେ' । ଏଥିରୁ ବୋଧହୁଅଇ କି ଯେସବୁ ବିଷୟର ଉତ୍ତର ଦେଇ ନାହାନ୍ତି ତାହା ମାନ୍ୟବର ମନୋଯୋଗ ପୂର୍ବକ ବିବେଚନା କରୁଅଛନ୍ତି ।''(୧୪) ପରିଶିଷ୍ଟ-୨ରେ ଏହି ଉତ୍ତରଟି ପ୍ରଦତ୍ତ ହେଲା ।

୧୮୭୯ ସେପ୍ଟେମ୍ବର ମାସରେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଟେଂପଲ ସାହେବଙ୍କ କଟକ ଅବସ୍ଥାନ ସମୟେ ଦୁଇଟି ଆବେଦନ ପତ୍ର ପ୍ରଦାନ କରାଯାଇଥିଲା । ଏହି ସ୍ମାରକପତ୍ର ନିଷ୍ଫଳ ହେବା କଥା 'ସରକାରୀ ବ୍ୟୟ ଲାଘବ' ଶୀର୍ଷକ ସମ୍ବାଦରେ ଦୀପିକା ଘୋଷଣା କରିଥିଲା ।

ସମ୍ବଲପୁର ଓଡ଼ିଶାର ଏକ ଅଂଶ ଏବଂ କଟକ ଓ ସମ୍ବଲପୁର ମଧ୍ୟରେ ବାଣିଜ୍ୟ ଇତ୍ୟାଦିରେ ବିଶେଷ ସମ୍ପର୍କ ଓ ପରସ୍ପର ଉପକାର । ତେବେ ଶାସନରେ ସମ୍ବଲପୁର କାହିଁକି ଓଡ଼ିଶାରୁ ବିଚ୍ଛିନ୍ନ ରହିବ ? ସମୁଦାୟ ଉତ୍କଳଦେଶ ଏକ ଶାସନାଧୀନ ହେବାର ବିଧେୟ ଓ ଆବଶ୍ୟକ ବ୍ରହ୍ମପୁର ଓ ଗଞ୍ଜାମ ଓଡ଼ିଶାର ଅନ୍ତର୍ଗତ ହେଲେ ଆହୁରି ଲାଭ ହେବାର ସମ୍ଭାବନା... । ବାଲେଶ୍ୱର ଓ କଟକରୁ ଏ ବିଷୟରେ ଦୁଇଖଣ୍ଡ ଆବେଦନପତ୍ର ଦିଆ ହୋଇଥିଲା ମାତ୍ର ସେସବୁ ନିଷ୍ଫଳ ହେଲା । ବର୍ତ୍ତମାନ ଏହି ସୁଯୋଗରେ ତଦ୍ରୂପ ଆବେଦନ ହେଲେ ସଫଳ ହେବାର ସମ୍ଭାବନା । ଅତଏବ ଓଡ଼ିଶାବାସିମାନେ ଏ ବିଷୟ ବିବେଚନା କରି ଆବେଦନ ଚେଷ୍ଟା କରନ୍ତୁ । ଆମ୍ଭେମାନେ ଭରସା କରୁଁ ଆମ୍ଭମାନଙ୍କ ବାଲେଶ୍ୱରସ୍ଥ ସହଯୋଗୀମାନେ ଏ ପ୍ରସ୍ତାବର ପୋଷାକ୍‌ତା କରିବେ ।(୧୫)

The Oriya Movement ପୁସ୍ତକରେ ୧୮୭୬ରେ ରାଜା ବୈକୁଣ୍ଠ ନାଥ ଦେ ଓ ବିଚିତ୍ରାନନ୍ଦ ସିରସ୍ତାଦାର ସମସ୍ତ ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ ପାଇଁ ସରକାରଙ୍କୁ ସ୍ମାରକପତ୍ର ଦେବା କଥା ଘୋଷଣା କରନ୍ତି ।(୧୬) ଏହି ତଥ୍ୟକୁ ଅନେକ ଐତିହାସିକ ଗ୍ରହଣ କରି ନେଇଥିଲେ ମଧ୍ୟ ସ୍ମାରକପତ୍ର ସମ୍ପର୍କରେ କୌଣସି ତଥ୍ୟ ବା ସ୍ୱରୂପ ଦୃଷ୍ଟିଗୋଚର ହୁଏ ନାହିଁ । ସମକାଳୀନ ପତ୍ରପତ୍ରିକାରେ ମଧ୍ୟ ଏହାର ସୂଚନା ମିଳେ ନାହିଁ ।

ଓଡ଼ିଶାର ରାଜନୈତିକ ଓ ସାମାଜିକ ସମସ୍ୟା ସମୂହର ସମାଧାନ ପାଇଁ ୧୮୮୨ରେ କଟକଠାରେ 'ଉତ୍କଳ ସଭା' ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ଅନେକ ସମାଲୋଚକ 'ଉତ୍କଳ ମଧୁପ' (୧୮୭୮) ପତ୍ରିକାର ପ୍ରକାଶକ 'ଉତ୍କଳ ସଭା'କୁ ଏହି ଉତ୍କଳ ସଭା ସହିତ ସମାନ ଭାବି ଭ୍ରାନ୍ତିର ଶୀକାର ହୁଅନ୍ତି । ବିଭିନ୍ନ କାରଣରୁ ୧୮୮୦ ମସିହା ବେଳକୁ ୧୮୭୮ରେ ଗଠିତ ଉତ୍କଳ ସଭା ଭାଙ୍ଗିଯାଇ ଉତ୍କଳ ମଧୁପ ପ୍ରକାଶନ ବନ୍ଦ ହୋଇଯାଇଥିଲା । (୧୭) ଦ୍ୱିତୀୟ ଉତ୍କଳ ସଭା ୧୮୮୨ରେ ପ୍ରତିଷ୍ଠିତ ହୋଇଥିଲା ଓ ଏହାର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ଥିଲେ ମଧୁସୂଦନ ଦାସ । ଗୌରୀଶଙ୍କର, ନନ୍ଦକିଶୋର ଦାସ ପ୍ରମୁଖ ଏହି ସାଂସ୍କୃତିକ ମଞ୍ଚର ନିୟାମକ ଥିଲେ । ୧୮୮୭ର ପରବର୍ତ୍ତୀ ପର୍ଯ୍ୟାୟରେ ମଧୁବାବୁ ଉତ୍କଳସଭାର ସଭାପତି ରୂପେ ଏହାର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିଥିଲେ । ଉତ୍କଳ ସଭା ଆନୁକୂଲ୍ୟରେ ବଙ୍ଗଳାର ଛୋଟଲାଟ ସାର ଷ୍ଟୁଆର୍ଟ କେଲଭିନଙ୍କୁ ୧୭-୧୧-୧୮୮୮ରେ ଏକ ଅଭିନନ୍ଦନ ପତ୍ର ପ୍ରଦାନ କରାଯାଇଥିଲା । ଏଥିରେ ଓଡ଼ିଶାର ଏକତ୍ରୀକରଣ ପ୍ରସଙ୍ଗକୁ ଦୃଢ଼ ଭାବରେ ଉପସ୍ଥାପନ କରିଥିଲେ ମଧୁସୂଦନ ।

At a time when it is proposed to transfer a portion of the central provine to Bombay presidency, we feel it our duty to solicity your honor's attention to the fact that the tract of the country where the uriyas reside is anomalously placed under the administration of the Madras Bengal and the Central provinces Governments we would therefore ask your honor to place the territorial limits where the Oriya language is spoken under one administration and thus knit together under one administration a large population who speak one language and have the same tradition and customs. (୧୮)

ଏହି ବିରଳ ସ୍ମାରକପତ୍ରର ପୂର୍ଣ୍ଣାଙ୍ଗ ସ୍ୱରୂପ ବିଶ୍ଳେଷଣ ପାଇଁ ପରିଶିଷ୍ଟ -୩ରେ ପତ୍ରସ୍ଥ ହେଲା । ଏହି ପତ୍ର ଉପରେ ସରକାର କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିବାର ଜଣାଯାଏ ନାହିଁ ।

୧୮୫୪ ଖ୍ରୀ:ରେ ସମ୍ବଲପୁର ଛୋଟନାଗପୁର କମିଶନରଙ୍କ ଶାସନାଧୀନ ଥିଲା । ପ୍ରୋକ୍ତ ସମୟରେ ଅଦାଲତର ଭାଷା ଥିଲା ହିନ୍ଦୀ କିନ୍ତୁ ୧୮୬୦ ଖ୍ରୀ:ରେ ସମ୍ବଲପୁର ଓଡ଼ିଶା ଅନ୍ତର୍ଗତ ହେବାରୁ କଚେରୀ ଏବଂ ସରକାରୀ କାର୍ଯ୍ୟ ଓଡ଼ିଆ ଭାଷାରେ ହେଲା । ମାତ୍ର ୧୮୬୨ଖ୍ରୀ.ରେ ସମ୍ବଲପୁର ଜିଲ୍ଲା ପୁଣି ମଧ୍ୟପ୍ରଦେଶର ଶାସନାଧୀନ ହେଲା ଓ ୧୮୯୫ ପର୍ଯ୍ୟନ୍ତ ସରକାରୀ ଭାଷା ରୂପେ ଓଡ଼ିଆ ପ୍ରଚଳିତ ଥିଲା । (୧୯) ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହେବା ଦ୍ୱାରା ସରକାରୀ କାର୍ଯ୍ୟରେ ହିନ୍ଦୀ ଭାଷୀଙ୍କ ପ୍ରଭାବ ଅନୁଭୂତ ହେଲା । ବଦଳି କ୍ଷେତ୍ରରେ ଅସୁବିଧା ସୃଷ୍ଟି ହେଲା । ହିନ୍ଦୀ ଭାଷୀମାନେ ଓଡ଼ିଆ ଅଞ୍ଚଳକୁ ଓଡ଼ିଆମାନେ ହିନ୍ଦୀ ଅଞ୍ଚଳକୁ ବଦଳି ହୋଇଯିବାକୁ କୁଣ୍ଠାବୋଧ କଲେ । ଏହାର ସମାଧାନ ପାଇଁ ୧୯.୧.୧୮୯୫ ମଧ୍ୟପ୍ରଦେଶ ଗେଜେଟରେ ଚିଫ୍ କମିଶନର ଜାନୁୟାରୀ ୧ ତାରିଖ ୧୮୯୬ରୁ ସମ୍ବଲପୁରରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ସରକାରୀ ଭାଷା ରୂପେ ପ୍ରଚଳନ ହେବ ବୋଲି ବିଜ୍ଞାପନ ପ୍ରକାଶ କଲେ । (୨୦) ଏହି ବିଜ୍ଞାପନ ପ୍ରକାଶର ବହୁ ପୂର୍ବରୁ 'ସମ୍ବଲପୁର ହିତୈଷିଣୀ' ଆଶଙ୍କା ପ୍ରକାଶ କରି ସମସ୍ତଙ୍କୁ ସତର୍କ କରି ଦେଇଥିଲା, ''ସମ୍ବଲପୁର ମାତୃଭାଷାର ଉଚ୍ଛେଦ ସାଧନ କରି ହିନ୍ଦୀ ଭାଷା ଚଳାଇବା ସକାଶେ କର୍ତ୍ତୃପକ୍ଷମାନେ ଆଗ୍ରହାନ୍ୱିତ । ଯେହେତୁ ଏଥିରେ ଏକ ମାତ୍ର ଓଡ଼ିଆମାନଙ୍କର କ୍ଷତି ଅସୁବିଧା ଛଡା ଅନ୍ୟମାନଙ୍କର କ୍ଷତି ବା ଅସୁବିଧା ନାହିଁ ।'' (୨୧)ଓଡ଼ିଆ ଭାଷାର ବିଲୋପ ଚେଷ୍ଟା ଶୀର୍ଷକରେ ହିତୈଷିଣୀ ଉଚ୍ଚ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଛି । ସମ୍ବଲପୁରରେ ହିନ୍ଦୀ ଚଳାଇବା କେବେହେଁ ଉଚିତ ନୁହେଁ । ଏହାଦ୍ୱାରା ସରକାରୀ କାର୍ଯ୍ୟରେ ବାଧା ଉପୁଜିବ । ଯେବେ ଓଡ଼ିଆ ପ୍ରଚଳନରେ ଅସୁବିଧା ଅନୁଭୂତ ହୁଏ ତେବେ ଏ ଜିଲ୍ଲାକୁ ମଧ୍ୟପ୍ରଦେଶରେ ନ ରଖି ଓଡ଼ିଶାରେ ସାମିଲ କରାଯାଉ । (୨୨)

ସମ୍ବଲପୁରର ଏହି ଭାଷା ସଙ୍କଟ ସମୟରେ ସମ୍ବଲପୁର ହିତୈଷିଣୀ ହିଁ ଲୋକ ଚେତନା ଜାଗ୍ରତ କରିବାରେ ଅତନ୍ଦ୍ର ପରିଶ୍ରମ କରିଛି । ୧୮୯୪-୯୫ର ହିତୈଷିଣୀ ଅନେକ ପୃଷ୍ଠାରେ ଏହି ଆନ୍ଦୋଳନକୁ ଉପଯୁକ୍ତ ଇନ୍ଧନ ଯୋଗାଇଛି । ହିନ୍ଦୀ ଭାଷାର ପ୍ରଶୟ ଲାଭ, ଭାଷା ପରିବର୍ତ୍ତନ ସମ୍ବନ୍ଧେ ଡେପୁଟୀ କମିଶନର ସାହେବଙ୍କ ମତ, ମାତୃଭାଷାର ବିଲୋପ, ସମ୍ବଲପୁର ଭାଷା ସଙ୍କଟ, ଓଡ଼ିଆ ଭାଷାର ଅନାଦର ଶୀର୍ଷକରେ ହିତୈଷିଣୀ ଦୃଢ଼ମତ ପ୍ରକାଶ କରି ଜନ ସଚେତନତା ସୃଷ୍ଟି କରିବାରେ ସଫଳ ହୋଇଛି । ହିତୈଷିଣୀ ଓଡ଼ିଆ ଭାଷା ପ୍ରଚଳନ ସପକ୍ଷରେ ନିଜସ୍ୱ ମତ କେବଳ ପ୍ରଦାନ କରିନାହିଁ ବରଂ ବୁଦ୍ଧିଜୀବୀ ଗୋଷ୍ଠୀଙ୍କ ପ୍ରତିକ୍ରିୟା ମଧ୍ୟ ପ୍ରକାଶ କରିଛି । ଉଲ୍ଲିଖିତ ପ୍ରସଙ୍ଗରେ ଗଙ୍ଗାଧର ମେହେରଙ୍କ ଭାରତୀ ରୋଦନ(୨୩) ଓ ଉତ୍କଳ ଭାରତୀଙ୍କ ନିବେଦନ(୨୪) ଜଳନ୍ଧର ଦେବଙ୍କ ଉତ୍କଳ ଭାରତୀଙ୍କ କ୍ଷୋଭ(୨୫) ଓ ନିବେଦନ(୨୬) ଭାଗିରଥି ରଥଙ୍କ ଭାଷା ବିଭ୍ରାଟ(୨୭) କବିତା ସହିତ ଅନେକ ଲେଖକଙ୍କ ଛଦ୍ମନାମରେ ପ୍ରକାଶିତ ପତ୍ର, କବିତା, ଆଲୋଚନା ପ୍ରଭୃତି ଏହି ଆନ୍ଦୋଳନକୁ ଗତିଶୀଳ କରିଥିଲା ।

୧୩ ଜୁଲାଇ ୧୮୯୪ରେ ସମ୍ବଲପୁର ମିଶନାରୀ ପୁସ୍ତକାଳୟଠାରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ଏଥିରେ ପଣ୍ଡିତ ଶ୍ରୀକୃଷ୍ଣ ମିଶ୍ର ସଭାପତିତ୍ୱ କରିଥିଲେ ଏବଂ ସୋମନାଥ ବାବୁ ସଭାର ଉଦ୍ଦେଶ୍ୟ ବର୍ଣ୍ଣନା କରିଥିଲେ । ସମ୍ବଲପୁର ଅଞ୍ଚଳର ଅନେକ ବୁଦ୍ଧିଜୀବୀଙ୍କ ଉପସ୍ଥିତିରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ ବିରୁଦ୍ଧରେ ଏକ ସ୍ମାରପତ୍ର ଚିଫ୍ କମିଶନରଙ୍କୁ ଦେବା ପାଇଁ ସିଦ୍ଧାନ୍ତ ହୋଇଥିଲା । ସ୍ମାରକ ପତ୍ରଟି ପଣ୍ଡିତ ଧରଣୀଧର ମିଶ୍ର ପଢ଼ିବା ପରେ ସଭାର ଅନୁମୋଦନ ଲାଭ କରିଥିଲା । ଏହି ସଭାର ସିଦ୍ଧାନ୍ତ (Resolution) ସ୍ମାରକପତ୍ର (୨୪.୭.୧୮୯୪) ସହିତ ସଂଯୁକ୍ତ ହୋଇଥିଲା । ସଭାରେ ଦୁଇଟି ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା ।

1. That the people of Sambalpur have learn with great concern that Hindi Language is going to be introduced as the court language of the District and they therefore earnestly pray that his Honour the chief commissioner will be graciously pleased to stop... introduction and to allow the Urya... to continue as before.

Proposed by Sri Dharanidhar Mishra.
Seconded by sri madhusudan Guru.
and carried by acclamation.

2. That if the prayer embodied in the 1st resolution be not granted the chief commissioner will be pleased to kindly recommend that sambalpur be alienated from central province and be attached to Orissa.

Proposed bu Sri Kripasindhu Mishra
Seconded by Sri Basudeo Guru
and carried by acclamation.(୨୮)

ସମ୍ବଲପୁରବାସୀଙ୍କ ଏହି ସ୍ମାରକପତ୍ର ମୁଖ୍ୟତଃ ପୋଲିସ ବିଭାଗରେ ହିନ୍ଦୀଭାଷା ପ୍ରଚଳନ ବିରୁଦ୍ଧରେ ପ୍ରଦାନ୍ କରାଯାଇଥିଲା । ଆଶଙ୍କା ପ୍ରକାଶ କରାଯାଇଥିଲା ଯେ ଉକ୍ତ ବିଭାଗର ସାମାନ୍ୟ କେତେକ ଚାକିରିଆଙ୍କ ଉଦ୍ଦେଶ୍ୟ ପୂର୍ତ୍ତି ପାଇଁ ଏକ ସଂସ୍କୃତି ସଂପନ୍ନ ଭାଷା ମୂଳରେ କୁଠାରାଘାତ କରାଯାଇଛି । ସମ୍ବଲପୁରବାସୀ ଶିକ୍ଷା ଦିଗରୁ ଓଡ଼ିଶାର ଅନ୍ୟାନ୍ୟ ଜିଲା ଅପେକ୍ଷା ପଶ୍ଚାତ୍‌ପଦ । ସେମାନେ ନିଜର ଗୁଜୁରାଣ ମେଣ୍ଟାଇବା ପାଇଁ ଓଡ଼ିଆ ଭାଷାରେ ଶିକ୍ଷା ଲାଭ କରିଛନ୍ତି । ସାମାନ୍ୟ ଚାକିରି ପାଇଁ ହିନ୍ଦୀ ଶିକ୍ଷା କରିବା କଷ୍ଟପ୍ରଦ । ପୁନଶ୍ଚ ପିତାମାତା ଚାକିରୀ ଆଶାରେ ଶିଶୁମାନଙ୍କୁ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଶିକ୍ଷାଦେବେ ଏବଂ ଓଡ଼ିଆ ସ୍କୁଲ ପରିବର୍ତ୍ତେ ଚତୁର୍ଦ୍ଦିଗରେ ହିନ୍ଦୀ ସ୍କୁଲ ଗଢ଼ି ଉଠିବ ଫଳରେ ଓଡ଼ିଆ ଭାଷା କାଳକ୍ରମେ ନିଶ୍ଚିହ୍ନ ହୋଇଯିବ । ଏହି ବିଷୟ ଗର୍ଭିତ ସ୍ମାରକପତ୍ରଟି ଧରଣୀଧର ମିଶ୍ର ଓ ୩୮୬ ଜଣ ଅନ୍ୟ ସଭ୍ୟଙ୍କ ଦ୍ୱାରା ସ୍ୱାକ୍ଷରିତ ହୋଇଥିଲା । ସେମାନେ ଓଡ଼ିଆ ଭାଷାର ପ୍ରଚଳନ ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଥିଲେ । ଅନ୍ୟଥା ସମ୍ବଲପୁରକୁ କେନ୍ଦ୍ରାଞ୍ଚଳରୁ ବିଚ୍ଛିନ୍ନ କରି ଓଡ଼ିଶା ସହିତ ମିଶ୍ରଣ କରିବା ପାଇଁ ନିବେଦନ କରିଥିଲେ ।

To day order is issued for the use of Hindi Language in the police, tomorrow it will be introduced into the cutcherry, then it will be adopted in the settlement department and lastly Hindi instead of Urya schools will have to be established. People take to learning in order to earn their livelihood. When they will see that they cannot be helped in getting employments by learning urya and that a knowledge in Hindi is requisite there is no reason why the guardians shouldnot prefer to teach their children Hindi from their boyhood. That this will spoil the education itself need not be shown again, and in the course of some years there will be an increase in the number of Hindi schools and a decrease in the number of urya schools and urya language will go to the wall. This is a very hard blow directed upon the petitioners, under which they connot but be crushed. x x x x x x x x x x x

That in consideration of the language imanners and customs of the people here, sambalpur has always received a special treatment hitherto, and if any inconvenience is experienced in connection with the administration of the district for its being the only urya district in the central provinces, it ought to be

alienated from the central provinces and annexed to orissa rumours had been more than twice afloat that on the dismemberment of the central provinces, Sambalpur should be attached to Orissa, but it was never carried into effect. (୨୯)

ପୂର୍ଣ୍ଣାଙ୍ଗ ସ୍ମାରକପତ୍ରଟି ପରିଶିଷ୍ଟ-୪ରେ ସଂଯୁକ୍ତ ହେଲା ।

ଏହି ସ୍ମାରକପତ୍ରଟି ଆର.ଏ.ବି ଚାପମେନ ଡେପୁଟି କମିଶନର ସମ୍ବଲପୁରଙ୍କ ମନ୍ତବ୍ୟ ସହିତ ପତ୍ର ନଂ. ୩୯୧୭ ତା ୪।୯।୧୮୯୪ରେ ଚିଫକମିଶନର କେନ୍ଦ୍ରାଞ୍ଚଳକୁ ପ୍ରେରଣ କରାଯାଇଥିଲା । ଏହି ସ୍ମାରକପତ୍ରର ମୂଳବିଷୟବସ୍ତୁ ହେଲା କେନ୍ଦ୍ର ପ୍ରଦେଶର ପୋଲିସ ଆଇଜିଙ୍କ ପତ୍ର ନଂ. ୩୨୩୬ ତା ୩୧ ମାର୍ଚ୍ଚ ୧୮୯୪ରେ ସମ୍ବଲପୁର ପୋଲିସ ବିଭାଗରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଚଳିବାର ପ୍ରସ୍ତାବ ଦେଇଥିଲେ । କମିଶନର ଛତିଶଗଡଙ୍କ ପତ୍ର ନଂ. ୩୨୦୫ ତା ୨୧।୪।୧୮୯୪ରେ ଏହି ପ୍ରସ୍ତାବକୁ ମଞ୍ଜୁରୀ ଦିଆଯାଇଥିଲା ଏବଂ ରାଜସ୍ୱ ବିଭାଗ ଓ ଅଦାଲତରେ ହିନ୍ଦୀ ପ୍ରଚଳନ ସମ୍ପର୍କରେ ସମ୍ବଲପୁର ଡେପୁଟି କମିଶନରଙ୍କ ମତ ଆହ୍ୱାନ କରାଯାଇଥିଲା । ମଦନମୋହନ ମିଶ୍ର ଏବଂ ଅନ୍ୟାନ୍ୟ ପ୍ରାର୍ଥୀ ସମ୍ବଲପୁରଙ୍କ ୨୪ ଜୁଲାଇ ୧୮୯୪ ସ୍ମାରକପତ୍ରରେ ହିନ୍ଦୀ ପ୍ରଚଳନ ବିରୁଦ୍ଧରେ ଦାବିକୁ ଛତିଶଗଡ ଡିଭିଜନ କମିଶନରଙ୍କ ପତ୍ର ନଂ. ୫୫୯୮ ତା ୧୩।୮।୧୮୯୪ରେ ପ୍ରେରଣ କରାଗଲା ଏବଂ ପ୍ରାର୍ଥୀମାନଙ୍କ ସ୍ମାରକପତ୍ର ଉପରେ ସମୟ ଆସିଲେ ବିଚାର କରାଯିବ ବୋଲି ଜଣାଇ ଦିଆଗଲା । (୩୦) ସଂଶିତ ସ୍ମାରକପତ୍ରଟି ତଳୁ ଉପର ସମସ୍ତ ଦପ୍ତର ଭ୍ରମଣ କରି ଶେଷରେ ନିରାଶାର ସ୍ୱାଦ ଚାଖିଥିଲା ।

ଏହି ସ୍ମାରକପତ୍ରର ପ୍ରଥମ ସ୍ୱାକ୍ଷରକାରୀ ଧରଣୀଧର ମିଶ୍ର ଥିଲେ ମଧ୍ୟ ସରକାରୀ ଫାଇଲରେ ମଦନମୋହନ ମିଶ୍ର ଓ ଅନ୍ୟମାନେ ବୋଲି ସବୁ ସମୟରେ ସୂଚୀତ ହୋଇଛି ଏହି ସ୍ମାରକପତ୍ରକୁ ପ୍ରାର୍ଥୀମାନଙ୍କର ଭାବୋଚ୍ଛ୍ୱାସପୂର୍ଣ୍ଣ ଆବେଗ ପ୍ରଣୋଦିତ ଲେଖା ଭାବରେ ଚିଫ କମିଶନର ଏଡାଇଗଲେ ।

ସମ୍ବଲପୁର ଜିଲ୍ଲାର ଅଦାଲତ ସମୂହରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଭାଷା ୧୮୯୬ ଜାନୁୟାରୀ ପହିଲାରୁ ପ୍ରଚଳିତ ହେବାର ଆଦେଶ ପ୍ରଚାରିତ ହେଲାପରେ ସମ୍ବଲପୁରବାସୀ ମ୍ରିୟମାଣ ହୋଇ ପଡିଥିଲେ । ପଣ୍ଡିତ ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ ଏକ ବିରାଟ ସାଧାରଣ ସଭା ୧୩ ଜୁନ୍ ୧୮୯୫ରେ ସୋମେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ସୋମନାଥ ବାବୁ ସଭାପତିତ୍ୱ କରିଥିଲେ । ଏହି ସଭାରେ ଧରଣୀଧର ମିଶ୍ରଙ୍କ ପ୍ରସ୍ତୁତ ଏକ ବିରାଟ ସ୍ମାରକପତ୍ର ଭାଇସରାୟ ଲର୍ଡଏଲଗିନଙ୍କ ଉଦ୍ଦେଶ୍ୟରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଏହି ଇଂରାଜୀ ସ୍ମାରକପତ୍ରର ଓଡ଼ିଆ ସଂସ୍କରଣକୁ

ପ୍ରତିକମିଟି ପ୍ରତି ଗ୍ରାମରେ ପ୍ରଚାର କରି ଲୋକଙ୍କୁ ବୁଝାଇ ଦିଆଗଲା ଏହି ଆନ୍ଦୋଳନ ପାଇଁ ପ୍ରତି ଅଞ୍ଚଳର ଲୋକେ ମୁକ୍ତ ହସ୍ତରେ ଅନୁଦାନ ପ୍ରଦାନ କଲେ ।(୩୧)

ଏହି ସ୍ମାରକପତ୍ରରେ ଓଡ଼ିଆ ଭାଷାର ପ୍ରାଚୀନତା ପ୍ରଦର୍ଶନ କରାଯାଇଛି । କପ୍ତାନ ବୃକ ସାହେବ ଓଡ଼ିଆ ଅମଲାମାନଙ୍କ 'ମହାପ୍ରସାଦ' ବସିବା କଥାକୁ ଅତିରଞ୍ଜନ କରି କହିଛନ୍ତି ମହାପ୍ରସାଦ ବସିବାଦ୍ୱାରା ସରକାରୀ କାର୍ଯ୍ୟରେ ବ୍ୟାଘାତ ଘଟିଥାଏ । ଏହି ପରି ହାସ୍ୟାସ୍ପଦ ଯୁକ୍ତି ସମୂହକୁ ସ୍ମାରକପତ୍ରରେ ଖଣ୍ଡନ କରାଯାଇ ବୃକ ସାହେବଙ୍କ ପରସ୍ପର ବିରୋଧୀ ମନ୍ତବ୍ୟକୁ ଦର୍ଶାଇ ଦିଆଯାଇଛି । ଆସାମ ପ୍ରଦେଶରେ ଆସାମୀ ଅପେକ୍ଷା ବଙ୍ଗଳା ଭାଷା ଅଧିକ ଲୋକ ବ୍ୟବହାର କରନ୍ତି ଅଥଚ ସେଠାରେ ସରକାର ଆସାମୀ ଭାଷା ପ୍ରଚଳନର ଆଦେଶ ଦେଇଛନ୍ତି । କିନ୍ତୁ ସମ୍ବଲପୁରରେ ଓଡ଼ିୟା ଭାଷୀ ଲୋକ ସମଗ୍ର ଆସାମ ପ୍ରଦେଶର ଆସାମ ଭାଷୀ ଲୋକଙ୍କଠାରୁ ଦୁଇଲକ୍ଷ ଅଧିକ ଅଥଚ ଏଠାରେ ଓଡ଼ିଆ ଭାଷା ଉଚ୍ଛେଦ କରିବା ସଂପୂର୍ଣ୍ଣ ଅନ୍ୟାୟ । ସମ୍ବଲପୁରବାସୀ ଉପରେ ଯଦି ଦୁଇଟି ବିଦେଶୀ ଭାଷା ହିନ୍ଦୀ ଓ ଇଂରେଜୀ ଲଦି ଦିଆଯାଏ ତେବେ ଅଚିରେ ଓଡ଼ିଆ ଭାଷା ଲୋପ ପାଇବ ଯେତେବେଳେ ଓଡ଼ିଶାରେ ବଙ୍ଗ ଭାଷା ପ୍ରଚଳନର ଚକ୍ରାନ୍ତ ଚାଲିଥିଲା ସେତେବେଳେ ସରକାର ଓଡ଼ିଆ ଭାଷାର ଐତିହ୍ୟକୁ ସ୍ୱୀକାର କରି ଓଡ଼ିଶାବାସୀଙ୍କ ପ୍ରତିବାଦ ଗ୍ରହଣ କରି ଓଡ଼ିଆ ଭାଷା ପ୍ରଚଳନର ଆଦେଶ ଦେଇଥିଲେ । ସେହି କ୍ରମରେ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ କରାଯାଉ ।(୩୨) ଓଡ଼ିଶା ସହିତ ସଂଯୋଗ ସମ୍ପର୍କରେ ସ୍ମାରକପତ୍ରର ଶେଷରେ ପ୍ରାର୍ଥନା କରାଯାଇଛି-

ସମ୍ବଲପୁରଠାରୁ କଟକର ଦୂରତ୍ୱ ରାଏପୁରରୁ ଅଧିକ ନୁହେଁ । ପୂର୍ବେ ସମ୍ବଲପୁରରୁ କଟକ ପର୍ଯ୍ୟନ୍ତ ପଥ ବିପଦସଙ୍କୁଳ ଥିଲା ମାତ୍ର ବର୍ତ୍ତମାନ ସେ ସମସ୍ତ ଅଧିକ ପରିମାଣରେ ତିରୋହିତ ହୋଇଅଛି । ଆହୁରି ମଧ୍ୟ ଓଡ଼ିଶ୍ୟାର ସହିତ ଏ ଦେଶ ରେଳପଥ ଦ୍ୱାରା ସଂଯୁକ୍ତ ହେବାର ପ୍ରସ୍ତାବ ଧାର୍ଯ୍ୟ ହୋଇଯାଇଅଛି । ଏପରି ଅବସ୍ଥାରେ ୧୭୦୨୭୩୨ ସଂଖ୍ୟକ ଲୋକଙ୍କୁ ଭାଷା ପରିବର୍ତ୍ତନ ଜନିତ କଷ୍ଟ ନ ଦେଇ ଯେଉଁମାନଙ୍କ ସଙ୍ଗରେ ସେମାନଙ୍କର ସ୍ୱାଭାବିକ ସଂଯୋଗ ସେମାନଙ୍କ ସହିତ ଯୁକ୍ତ କରିବା ପ୍ରାର୍ଥନୀୟ । ଅତ୍ୟନ୍ତ ବିନୀତ ଭାବରେ ଆବେଦନକାରୀମାନେ ପ୍ରାର୍ଥନା କରୁଅଛନ୍ତି ଯେ ଶ୍ରୀଛାମୁ ଅନୁକଂପାପୂର୍ବକ ଚିଫ୍ କମିଶନର ବାହାଦୂରଙ୍କ ଭାଷା ପରିବର୍ତ୍ତନର ଆଦେଶ ରହିତ କରି ପୂର୍ବବତ ଓଡ଼ିଆ ପ୍ରଚଳିତ ହେବାର ଆଦେଶ ଦାନ କରନ୍ତୁ ଅଥବା ସମ୍ବଲପୁର ଏବଂ ତାହାର ଗଡଜାତମାହାଲମାନଙ୍କୁ ଓଡ଼ିଶ୍ୟା ସହିତ ସଂଯୁକ୍ତ କରି ଦେଉନ୍ତୁ ।(୩୩)

ଏହି ସ୍ମାରକପତ୍ର ବହୁ ସଂଖ୍ୟାରେ ବଣ୍ଟନ କରାଯାଇଥିଲା । ତାର ପ୍ରତିଲିପି ସମ୍ବଲପୁର ହିତୈଷିଣୀ (୭/୨-୩) ପୃଷ୍ଠାରୁ ସଂଗ୍ରହ କରି ପରିଶିଷ୍ଟ -୫ ରେ ପାଠକଙ୍କ ଅବଗତି ପାଇଁ ପ୍ରଦତ୍ତ ହେଲା ।

ସମ୍ବଲପୁରବାସୀଙ୍କ ଏହି ଆନ୍ଦୋଳନକୁ ଆନ୍ତରିକ ସମର୍ଥନ ଜଣାଇଥିଲା କଟକର ଓଡ଼ିଶା ଏସୋସିଏସନ(ଉତ୍କଳ ସଭା) । ୨୦ ଜୁନ୍ ୧୮୯୫ରେ ଓଡ଼ିଶା ଏସୋସିଏସନର ସଭାପତିଙ୍କ ସ୍ୱାକ୍ଷର ସମ୍ବଳିତ ୪୫ ଅନୁଚ୍ଛେଦ ବିଶିଷ୍ଟ ଏକ ସ୍ମାରକପତ୍ର ଏଲଗିନଙ୍କୁ ପଠାଯାଇଥିଲା ।(୩୪) ଏହି ସ୍ମାରକପତ୍ରରେ ଓଡ଼ିଆ ଭାଷାର ସାମର୍ଥ୍ୟ, ସଂସ୍କୃତ ସହିତ ନିକଟ ସମ୍ବନ୍ଧ ପ୍ରଦର୍ଶିତ ହୋଇଛି । ବ୍ରିଟିଶ ସରକାରଙ୍କ ନ୍ୟାୟ ଯୋଗୁ ୧୮୬୯ ମସିହାରେ ବଙ୍ଗଳା ଭାଷା ଆକ୍ରମଣରୁ ଓଡ଼ିଆ ଭାଷାର ବିଜୟ ଏବଂ ଗଞ୍ଜାମ ଅଞ୍ଚଳରେ ଓଡ଼ିଆ ଭାଷାର ସରକାରୀ ଭାଷା ରୂପେ ସ୍ୱୀକୃତି ପ୍ରଦାନକୁ ସ୍ମରଣ କରାଯାଇଛି । ସେହି ବ୍ରିଟିଶ ଶାସନାଧୀନ ସମ୍ବଲପୁରରେ ଓଡ଼ିଆ ଭାଷା ଉଚ୍ଛେଦ କରିବା ଅନ୍ୟାୟ ହୋଇଛି । କେନ୍ଦ୍ର ପ୍ରଦେଶର ଚିଫ କମିଶନରଙ୍କ ପଦକ୍ଷେପକୁ ଏହି ସ୍ମାରକପତ୍ରରେ ସମାଲୋଚନା କରି ଓଡ଼ିଆ ପ୍ରଚଳନର ଆଦେଶ ଦେବାକୁ ପ୍ରାର୍ଥନା କରାଯାଇଥିଲା ।(ଦ୍ରଷ୍ଟବ୍ୟ- ପରିଶିଷ୍ଟ-୬)

ସେ ଯାହାହେଉ ଭାରତ ସରକାର ଏହି ସ୍ମାରକପତ୍ର ଉପରେ କୌଣସି ପଦକ୍ଷେପ ଗ୍ରହଣ ନ କରି ବରଂ ଏହାକୁ କେନ୍ଦ୍ର ପ୍ରଦେଶ ଚିଫ୍ କମିଶନରଙ୍କ ମନ୍ତବ୍ୟ ପାଇଁ ପ୍ରେରଣ କରିଥିଲେ । (୩୫)

ଉଲ୍ଲିଖିତ ସ୍ମାରକପତ୍ର ସମୂହ, ସମ୍ବଲପୁର ହିତୈଷିଣୀ ପତ୍ରିକା, ସମ୍ବଲପୁର ବୁଦ୍ଧିଜୀବୀଙ୍କ ଆନ୍ତରିକ ଉଦ୍ୟମ ଓ ସାର ଏଣ୍ଡୁ ଫ୍ରେଜରଙ୍କ ପ୍ରଚେଷ୍ଟା ଫଳରେ ୧୯୦୩ ଜାନୁୟାରୀ ୧ ତାରିଖ ସମ୍ବଲପୁର ଜିଲ୍ଲାର ଅଦାଲତ ସମୂହରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ ହେବାର ଆଦେଶ ପ୍ରଦତ୍ତ ହେଲା । ଏହି ସମ୍ବାଦକୁ ଅତ୍ୟନ୍ତ ଆନନ୍ଦର ସହିତ ସମ୍ବଲପୁର ହିତୈଷିଣୀ ସମ୍ବଲପୁରରେ 'ଓଡ଼ିଆ ଭାଷା' ଶୀର୍ଷକରେ ଘୋଷଣା କରିଥିଲା । (୩୬)

୧୫ ଡିସେମ୍ବର ୧୯୦୨ରେ ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେ ବାହାଦୁର ଉତ୍କଳ ଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଏକ ସ୍ମାରକପତ୍ର ବଡଲାଟ ଲର୍ଡକର୍ଜନଙ୍କୁ ପ୍ରେରଣ କରିଥିଲେ । ଏହି ସ୍ମାରକପତ୍ରରେ ଓଡ଼ିଶାର ପ୍ରାଚୀନତା, ଓଡ଼ିଶାର ପବିତ୍ରତା, ଐତିହାସିକ ଗୁରୁତ୍ୱ, ଓଡ଼ିଶାର ପ୍ରାଚୀନ ସୀମା, ଓଡ଼ିଆ ଭାଷା ପ୍ରଚଳିତ ଭୂମିଖଣ୍ଡ, ଓଡ଼ିଶାରେ ପ୍ରଥମ ବ୍ରିଟିଶ୍ ବନ୍ଦୋବସ୍ତ, ସରକାରଙ୍କ ଅଧୀନରେ ଓଡ଼ିଶାର ଉନ୍ନତି, ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣର ଉଦ୍ଦେଶ୍ୟ ଶୀର୍ଷକରେ ଯୁକ୍ତିପୂର୍ଣ୍ଣ ତଥ୍ୟ ଉପସ୍ଥାପିତ ହୋଇଥିଲା । (୩୭)

ଏହି ସ୍ମାରକପତ୍ରରେ ବୈକୁଣ୍ଠନାଥ ଦେ ଦର୍ଶାଇଛନ୍ତି -

That Uriya is at present the common dialect in the northern half of the carnatic including Ganjam, Berhampur, Chicalole, Gunupur, Parlakimidi, Khalicote etc. Orissa including its 18 dependencies the Garjats, Southern portion of the District of Midnapur, and the eastern portion of the central provinces including Chhatisgar, Raipur, Bilaspur, Sambalpur, Bamara,

Raighar, Kalahandy,Rerhakhol, Saranggur, Sonepur etc. and a part of the chhotnagpur Division...

Their manners, customs and modes of living were almost the same through out. But they have under gone changes to some extent in those portions of the area which are under the direct administration of the British Govt. The whole uriya speaking nation is Governed by the same Mitakshara School of Hindu Law. This also testifics to the fact that the people were at one time under one common administration of the kings of Orissa. (୩୫) ଏହି ସ୍ମାରକପତ୍ର ପରିଶିଷ୍ଟ-୭ରେ ସଂଯୁକ୍ତ ।

ଏହି ପ୍ରାଚୀନ ଐତିହାସିକ ଖଣ୍ଡବିଖଣ୍ଡିତ ଓଡ଼ିଆଭାଷା ଭୂଖଣ୍ଡର ଏକତ୍ରୀକରଣ ଦ୍ୱାରା ହିଁ ଓଡ଼ିଆ ଜାତିର ଉନ୍ନତି ସମ୍ଭବ ଅନ୍ୟଥା ଏହି ଜାତି କାଳ ଗର୍ଭରେ ଲୋପପାଇବ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗଞ୍ଜାମର ଓଡ଼ିଶା ସାହି ମିଶ୍ରଣ ନେଇ ଆଗ୍ରହ ପ୍ରକାଶ ପାଇଲା । ୧୯୦୨ରେ ଲର୍ଡ କର୍ଜନଙ୍କୁ ଗଞ୍ଜାମ ମିଶ୍ରଣ ସମ୍ପର୍କିତ ସ୍ମାରକପତ୍ର ଗଞ୍ଜାମବାସୀଙ୍କ ତରଫରୁ ପ୍ରଦାନ କରାଯାଇଥିଲା । ଏଥିରେ ରାଜା, ଜମିଦାର୍ ଏବଂ ସାଧାରଣ ଲୋକ ଶହ ଶହ ସଂଖ୍ୟାରେ ସ୍ୱାକ୍ଷର କରିଥିଲେ ।(୩୯)

ସେହି ସ୍ମାରକପତ୍ରରେ ଶରୀରରୁ ବିଚ୍ଛିନ୍ନ ଅଙ୍ଗ ପରି ଗଞ୍ଜାମବାସୀଙ୍କ ଅବସ୍ଥା ବର୍ଣ୍ଣନା କରାଯାଇଛି । ଏହି ଅସୁବିଧା ଦୂରୀକରଣ ପାଇଁ କୌଣସି ସାମୟିକ ପଦକ୍ଷେପ ନୁହେଁ ବରଂ ଦୀର୍ଘସ୍ଥାୟୀ ପଦକ୍ଷେପ ଗ୍ରହଣ ପାଇଁ ଭାରତ ସରକାରଙ୍କୁ ଅନୁରୋଧ କରାଯାଇଛି । ବିଭିନ୍ନ ଉପାନ୍ତ ଅଞ୍ଚଳରେ ବିଚ୍ଛିନ୍ନଥିବା ଓଡ଼ିଆଭାଷୀଙ୍କୁ ଏକତ୍ରକରି ପୂର୍ଣ୍ଣାଙ୍ଗ ଉତ୍କଳ ଗଠନ ପାଇଁ ଆବେଦନ କରାଯାଇଥିଲା ।(୪୦) ଗଞ୍ଜାବାସୀଙ୍କ ଏହି ଆବେଦନକୁ ଯଥାର୍ଥ ଏବଂ ଯୁଗୋପଯୋଗୀ ଭାବେ ଅବହିତ କରିଛି ଉତ୍କଳଦୀପିକା । 'ଉତ୍କଳ ଖଣ୍ଡର ରାଜକୀୟ ସଂଯୋଗ' ଶୀର୍ଷକରେ ଦୀପିକା ଘୋଷଣା କରେ

''x x x ଗଞ୍ଜାମ ଜିଲ୍ଲାକୁ ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ଅଧୀନ ଓଡ଼ିଶା ସଙ୍ଗେ ଯୋଗକରି ଏକ ଶାସନାଧୀନରେ ରଖିବା କାରଣ ମହାମାନ୍ୟ ଗବର୍ଣ୍ଣର ଜେନେରାଲ୍‌ଙ୍କଠାରେ ଆବେଦନ କରିଅଛନ୍ତି । ସେମାନଙ୍କ ଗୁହାରୀ ଯଥାର୍ଥ ଏଥିରେ ସନ୍ଦେହ ନାହିଁ ଏବଂ ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ମହାମତି ଲର୍ଡକର୍ଜ୍ଜନ ବାହାଦୁର ଯେମନ୍ତ ସୁବିଚାରପୂର୍ବକ ସମ୍ବଲପୁର ଓଡ଼ିୟାଙ୍କ ଦୁଃଖ ଦୂର କରିଅଛନ୍ତି ତେମନ୍ତ ଗଞ୍ଜାମ ଓଡ଼ିଆଙ୍କର ଦୁର୍ଦ୍ଦଶା ମୋଚନ ଏବଂ ଉନ୍ନତିର ମାର୍ଗ ପ୍ରଶସ୍ତ କରିବାର ସୁବିଚାର କରିବେ । (୪୧)

ଏହି ବିରଳ ସମ୍ବାଦର ଉପଯୋଗିତା ଯୋଗୁ ପରିଶିଷ୍ଟ -୮ରେ ସଂଯୁକ୍ତ ହେଲା । ଗଞ୍ଜାବାସୀଙ୍କ ସ୍ମାରକପତ୍ର ଉପରେ ୨୨.୪.୧୯୦୩ ରେ 'ଉତ୍କଳ ସଭାର ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା ଏହି ସଭାରେ ପାଞ୍ଚଟି ନିର୍ଦ୍ଧାରଣ କରାଯାଇଥିଲା ।

୧) ଗଞ୍ଜାମ ଜିଲ୍ଲାର ଅଧିବାସୀଙ୍କ ଆବେଦନପତ୍ର ପ୍ରତି ସଂପୂର୍ଣ୍ଣ ସହାନୁଭୂତି ।

୨) ଓଡ଼ିଆ ଭାଷୀଙ୍କୁ ଗୋଟିଏ ଶାସନ ଓ ଶିକ୍ଷା ପ୍ରଣାଳୀ ଅଧୀନରେ ରଖିବା ।

୩) ଏହି ସଭାରୁ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଏକ ଆବେଦନପତ୍ର ପଠାଯାଇ ଯେଉଁଥିରେ (କ) ସମ୍ବଲପୁର, ଛୋଟନାଗପୁର, ଗଞ୍ଜାମ, ବିଶାଖାପଟନମ ଏବଂ ମେଦିନୀପୁର ଜିଲ୍ଲାମାନଙ୍କର ଓଡ଼ିଆ ଭାଷୀ ବିଭାଗର ଓଡ଼ିଶା ସହିତ ମିଶ୍ରଣ (ଖ) ଆସାମ ପରି ଓଡ଼ିଶାକୁ ଗୋଟିଏ ଭିନ୍ନ ଚଫ୍ କମିଶନରସିପ୍ ଗଠିତ କରାଯାଇ କଲିକତା ହାଇକୋର୍ଟର ବିଚାରାଧୀନ ଓ କଲିକତା ବିଶ୍ୱବିଦ୍ୟାଳୟ ଶିକ୍ଷାଧୀନ ରଖାଯାଉ ।

୪) ଆବେଦନପତ୍ର ପ୍ରସ୍ତୁତ ପାଇଁ ମଧୁସୂଦନ ଦାସ, ରାମଶଙ୍କର ରାୟ, ପାଦ୍ରି ଜି.ଏଚ୍. ହାଭଏଲ୍ ସାହେବ, ପାଦ୍ରି ଜି.ଏଚ୍ ହୁଆଇଟ ସାହେବ ଓ ଗୋକୁଳାନନ୍ଦ ଚୌଧୁରୀଙ୍କୁ ନେଇ ଏକ ଶାଖା ସମିତି ଗଠିତ ହେଉ ।

୫) ଏହି ଆବେଦନପତ୍ର ଗବର୍ଣ୍ଣର ଜେନେରାଲ୍‌ଙ୍କୁ ପ୍ରଦାନ ପାଇଁ ଉତ୍କଳ ସଭାକୁ ଭାର ଦିଆଯାଉ । (୪୨)

ଏହି ସଭାରେ ଓ କଟକସ୍ଥ ବୁଦ୍ଧିଜୀବୀଙ୍କ ବ୍ୟତୀତ ଅନେକ ଖ୍ରୀଷ୍ଟିୟାନ ସାହେବ ଓ ପଦସ୍ଥ କର୍ମଚାରୀ ଯୋଗ ଦେଇଥିଲେ । ଏହି ଐତିହାସିକ ଦଲିଲିଟି ପରିଶିଷ୍ଟ-୯ରେ ପାଠକଙ୍କ ଅବଗତି ପାଇଁ ଦିଆଗଲା ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ପୃଷ୍ଠ ପୀଠିକାରେ ଅନେକ ବ୍ୟକ୍ତିବିଶେଷ, ଅନୁଷ୍ଠାନ ଓ ଅଞ୍ଚଳର ଉତ୍ସର୍ଗୀତ ଉଦ୍ୟମ ପ୍ରଚ୍ଛନ୍ନ । ୧୯୦୩ ବେଳକୁ ଗଞ୍ଜାମ ଜାତୀୟ ସମିତି ଗଠନ ଓ ପରେ ପରେ ମଧୁବାବୁଙ୍କ ଉଦ୍ୟମରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲା । ଏହି ଜାତୀୟ ଆନ୍ଦୋଳନକୁ ଉଲ୍ଲିଖିତ ସ୍ମାରକପତ୍ର ବ୍ୟତୀତ ଆହୁରି ଅନେକ ଅଜ୍ଞାତ ସ୍ମାରକପତ୍ର ଋଦ୍ଧିମନ୍ତ କରିଥିଲା । ଓଡ଼ିଶା ପ୍ରଦେଶ ଗଠନ ଇତିହାସରେ ସ୍ମାରକପତ୍ରଗୁଡିକର ଭୂମିକା ସର୍ବାଦୌ ସ୍ମରଣୀୟ । ଓଡ଼ିଆମାନଙ୍କର ବାରଂବାର ଆପତ୍ତି ଅଭିଯୋଗ ଆବେଦନ ନିବେଦନ ଓ ଜନଜାଗରଣର ଫଳସ୍ୱରୂପ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ଭବ ହୋଇଥିଲା । ୧୯୦୩ ପୂର୍ବବର୍ତ୍ତୀ ନିର୍ବାଚିତ କିଛି ସ୍ମାରକପତ୍ରର ପୃଷ୍ଠଭୂମି ବିଶ୍ଳେଷଣ ଦ୍ୱାରା ଉନବିଂଶ ଶତାବ୍ଦୀର ଏକ ଅଭୁତପୂର୍ବ ଜନଜାଗରଣର ସ୍ୱରୂପ ଏଠାରେ ସ୍ପଷ୍ଟ ହୋଇଉଠିଛି । ଏହି ଜନଜାଗରଣ ଆହୁରି ତିନି ଦଶନ୍ଧି ପରେ ଆଶାନୁରୂପ ଫଳ ପ୍ରସବ କରିଥିଲା । ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ପରେ ଯେଉଁ ଆନ୍ଦୋଳନ ଉଚିତ ଦିଗ୍‌ଦର୍ଶନ ଲାଭ କରିଥିଲା ତାର ପ୍ରାରମ୍ଭିକ ରୂପ ଥିଲା ଅତୀବ ବୈଚିତ୍ର୍ୟମୟ । ସେହି ବୈଚିତ୍ର୍ୟମୟ ରୂପ ଉଲ୍ଲିଖିତ ସ୍ମାରକପତ୍ର ଅନ୍ତରାଳରେ ସହଜ ଲଭ୍ୟ ।

# ପରିଶିଷ୍ଟ-୧

## କାଟିଂଗାରାଜା ବେଙ୍କଟେଶ ବେଉଙ୍କ ପତ୍ର :

ମହାଶୟ !

ବିନୟପୂର୍ବକ ନିବେଦନ ଏହି ଯେ ଆପଣଙ୍କ ଯେଉଁ ଉତ୍କଳ ଦୀପିକା ନାମ ସିଦ୍ଧ ଏଦ୍ୱାରା ଦେଖାଯିବ ।

ଅଗଷ୍ଟ ମାସ ତା ୨୩ ରିଖ ପତ୍ରିକାରୁ ଆମ୍ଭେମାନେ ଅବଗତ ହେଲୁଁ ସେଥିର ନବମ ସମ୍ବାଦର ଜଣାଯାଏ ଯେ ଶ୍ରୀ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ ବିଲାତକୁ ଯାଇ ଭାରତବର୍ଷର ଆୟ ବ୍ୟୟ ସଭାରେ ସାକ୍ଷ ଦେବେ । ପୁନଶ୍ଚ ସେହି ସମ୍ବାଦରୁ ଜଣାଯାଏ ଯେ, ଉତ୍କଳୀୟମାନଙ୍କର ଅବସ୍ଥାଦି ବିଷୟରେ କେତେ ପର୍ଯ୍ୟନ୍ତ ଆବେଦନ କରିବା ଆବଶ୍ୟକ ଶ୍ରୀଯୁକ୍ତ ବାବୁଙ୍କୁ ଯେବେ ଲଣ୍ଡନ ପ୍ରଦେଶ ଲାଭ ହେବ ତେବେ ଆମ୍ଭମାନଙ୍କ ବିଷୟର ଯେଉଁ ଆବେଦନ ତଦ୍ୱାରା କି କୀର୍ତ୍ତି ନ ଲଭିବେ ଓଡ଼ିଆମାନଙ୍କର ନିବାସ ଯହିଁରେ ସେ ଓଡ଼ିଶା ଓ ଉତ୍କଳ ବୈତରଣୀ ନଦ୍ୟାରଭ୍ୟ ଗୋଦାବରୀ ନିକଟସ୍ଥ ଦଣ୍ଡକାରଣ୍ୟ ଯେଉଁ ପର୍ଯ୍ୟନ୍ତେ ଜୟପୁର ସୀମା ଅଛି ଆଉ ଏଣେ ସମ୍ବଲପୁର ଦକ୍ଷିଣ ପ୍ରଦେଶକୁ ଶିକାକୋଲି ଏ ମଧ୍ୟରେ ଦେଖତ ରାଜାମାନେ କିମ୍ବା ପ୍ରଜାମାନେ କେତେ ପର୍ଯ୍ୟନ୍ତେ ଓଡ଼ିଆ ଦଳ ବସତି କରନ୍ତି ହାୟ ହାୟ ସେମାନଙ୍କର ଦୁଃଖର ବିଷୟ କି କହିବା ଯେ ଓଡ଼ିଆ ତହିଁରେ କି ଅକ୍ଷର ନାହିଁ ଅବା ଅଙ୍କ ନାହିଁ କିବା ଗ୍ରନ୍ଥ ନାହିଁ ଅବା ଭାଷା ନାହିଁ କି କରଚରଣାଦି ଅବୟବମାନଙ୍କୁ ପରମେଶ୍ୱର ଦେଇ ନାହାନ୍ତି । ଏଥିର ଅଭାବ ନ ଥିଲେ ହେଁ ଓଡ଼ିଆମାନେ ଚତୁର୍ଦ୍ଦିଗରେ ଚତୁର୍ବିଧ ଭାଷାୟ ଲୋକମାନଙ୍କ ଆଶ୍ରିତରେ ବଞ୍ଚନ୍ତି । ଅର୍ଥାତ୍ ଐଶାନ୍ୟ ପ୍ରଦେଶରେ ବଙ୍ଗଳା, ଦକ୍ଷିଣ ପ୍ରଦେଶରେ ତେଲଙ୍ଗା, ପଶ୍ଚିମ ପ୍ରଦେଶ ଲଗାଏତ୍ ଉତ୍ତର ପ୍ରଦେଶ ପର୍ଯ୍ୟନ୍ତ ହିନ୍ଦୁସ୍ଥାନ, ତଥାପି କେତେକ ସ୍ଥାନ ମାତୃଭାଷାର ପ୍ରକାଶ୍ୟୋନ୍ନତି ସ୍ପର୍ଶ କରୁଅଛି । ଅଧିକାଂଶରେ ଗଞ୍ଜାମଜିଲା ତେମନ୍ତ ସ୍ୱଭାବ ପୁଷ୍ପ ବାସନା ସୁଦ୍ଧା ପାଇ ନ ପାରିଲା ଏହି ସକାଶାତ୍ ଏ ଦେଶୀୟ କେତେକ ବ୍ୟକ୍ତି ଉତ୍ତମ ରପେ ବିବେଚନା କଲେ ଯଥା, ବନେବା ହର୍ମ୍ମେବୋ ସମକର ନିପାତୋ ହିମକରଃ । 'ଅର୍ଥାତ୍' ଯେବେ ଚନ୍ଦ୍ରୋଦୟ ହୁଅନ୍ତି ବନରେ କିମ୍ବା ଭବନରେ ସମାନ ରଶ୍ମି ବିତରଣ କରନ୍ତି ତେବେ ବାରମ୍ବାର ବିବେକ ପ୍ରଭୁର ସମୀପରେ ପ୍ରଜାମାନେ ଯଦ୍ୟପି ଆପଣାର ଦୁଃଖ ଆବେଦନ କରିବେ ସେ କି ନ ଶୁଣିବେ ଏମନ୍ତ ଅଭିମତରେ ଗତ ସନ୧୮୬୯ ମସିହାରେ ଗବର୍ଣ୍ଣରଙ୍କ ସମୀପକୁ ଚାରୋଟି ବିଷୟରେ ଅଙ୍ଗୀକୃତ କରିବା ନିମିତ୍ତେ ବିନୟ ଜଣାଣ ପତ୍ରିକା ପ୍ରେରିତ କରିଥିଲେ ଯଥା ୧- ଏ ଜିଲ୍ଲା ରଜା ଓ ପ୍ରଜା ଶୁଦ୍ଧ ଓଡ଼ିଆ ହୋଇଥିବାର ଓଡ଼ିଆମାନଙ୍କଠାରୁ ଓଡ଼ିଆ ଲିପିରେ ଦରଖାସ୍ତାଦି ମଞ୍ଜୁର କରିବାକୁ, ୨- ରେକଡ

ଓଡ଼ିଆରେ ରଖିବାକୁ, ୩- ପରୀକ୍ଷା ପ୍ରଥମାବଧି ଯେଉଁପରି ତେଲଙ୍ଗୀ ଭାଷାରେ ଅସ୍ୱୀକୃତ କରିଅଛନ୍ତି ସେହିପରି ଓଡ଼ିଆରେ ସମ୍ମତି କରିବାକୁ, ୪- ପ୍ରତ୍ୟେକ ସ୍କୁଲରେ ଓଡ଼ିଆକ୍ଲାଶ ରଖିବାକୁ ଆବେଦନ କରିଥିଲେ, ସେଥିକି ଜେନରଲ ଟେଷ୍ଟ ପରୀକ୍ଷା ବିଷୟରେ ସ୍କୁଲମାନଙ୍କରେ ଓଡ଼ିଆ କ୍ଲାଶ ରଖିବା ବିଷୟରେ ମାତ୍ର ଅଙ୍ଗୀକୃତ ହୋଇଅଛି ଯେମନ୍ତ ମସ୍ତକର ହିତ କଳେବର ବିଶେଷରେ ଅନ୍ୟ ଦୁଇ ବିଷୟରେ ଶୁଭାଗମ କିଛି ଶୁଣାଯାଇନାହିଁ ଏହାର ସଫଳ ଆବଶ୍ୟକ ତଥାପି ଆମ୍ଭ ସୁଦଶାନୁସାରେ ଆପଣମାନଙ୍କ ଆମୋଦିତରେ ଯେ ଓଡ଼ିଆ ସମସ୍ତ ଏକ ଜିଲା କରିବା ପକ୍ଷକୁ କାରଣ ଅଦ୍ୟାପି ରାଜା ଯେ ଇଂରାଜୀ ତାହାଙ୍କର ଉଦେଶ୍ୟ ଯେ ପ୍ରଜା ସୈଖ୍ୟ ଓ ଧନୋଦାୟ ଫଳ ବିଷୟରେ ଆମ୍ଭେମାନେ ପ୍ରମାଣ ରହିତ ନୋହୁଁ ଅର୍ଥାତ୍ ସାକ୍ଷ ଦେଇପରଁ ଏସକାଶରଁ ଆମ୍ଭେ କରସା କରୁଁ ଯେ ଯଦ୍ୟପି ଉକ୍ତ ମହାଶୟ ଚିରକାଳାବଧି ଉକ୍ରଳ ଦେଶ ନିବାସୀ ହୋଇଅଛନ୍ତି ଏବଂ ଉକ୍ରଳୀୟ ବୋଲି ପରିଚୟ ଦିଅନ୍ତି ତେବେ ଅବଶ୍ୟ ଆମ୍ଭ ଗଞ୍ଜାମଜିଲା ସମସ୍ତ ଉକ୍ରଳୀୟମାନଙ୍କ ନିମିତ୍ତ ଉକ୍ତ ଅବଶିଷ୍ଟ ଦୁଇ ବିଷୟ ଅର୍ଥାତ୍ ସମସ୍ତ କଚେରିର ରିକାର୍ଡ ଓଡ଼ିଆ କରିବା ପାଇଁ ପୁଣି ଓଡ଼ିଆମାନଙ୍କର କାଗଜପତ୍ରାଦି ମାତୃଭାଷାରେ ଗ୍ରହଣ କରିବା ପାଇଁ ଉକ୍ରଳ ଦେଶ ଏକତ୍ର କରି ମାତୃଭାଷାରେ ବ୍ୟବହାର କରିବା ପାଇଁ ଶ୍ରୀ ଶ୍ରୀ ମହାରାଣୀଙ୍କ ଶ୍ରୀ ମନ୍ନହୋନ୍ନତା ସଂସଦରେ ଆବେଦନ କରିବେ ଯଦ୍ୟପି ନ କରନ୍ତି ତେବେ ଉକ୍ରଳହିତୈଷୀ ନୁହନ୍ତି ବୋଲି ଆମ୍ଭେ ସମ୍ପ୍ରତେ କରି ଶ୍ରୀଯୁତ ମହାଶୟଙ୍କର ଯାତ୍ରା ଶୁଭାଗମ ବାଞ୍ଛନୀୟ ।

॥ ଇତି ॥

ତା ୭ରିଖ ସେପ୍ଟେମ୍ବର
ସନ ୧୮୭୩ ସମ୍ବତ୍ସର ବ୍ରହ୍ମପୁର

**କାଟିଂଗା ରାଜା ଶ୍ରୀବେଙ୍କଟେଶ ଦେଉ**
ଉକ୍ରଳହିତବାଦିନୀ ସଭା ସେକ୍ରେଟରୀ

## ପରିଶିଷ୍ଟ-୨

ବାଲେଶ୍ୱରବାସିଙ୍କର ପ୍ରାର୍ଥନାପ୍ରତି ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କର ଉତ୍ତର :

ମାନ୍ୟବର ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବଙ୍କର ଓଡ଼ିଶା ସନ୍ଦର୍ଶନ କାଳରେ ବାଲେଶ୍ୱରବାସୀମାନେ ଯେତେପ୍ରକାର ଅଭାବ ମୋଚନ ନିମିତ୍ତ ତାହାଙ୍କଠାରେ ପ୍ରାର୍ଥୀ ହୋଇଥିଲେ ତହିଁର ଉତ୍ତର ସେମାନେ ପ୍ରାପ୍ତ ହୋଇଅଛନ୍ତି ଓ ଗତ ପ୍ରକାଶିତ ଉକ୍ରଳ ଦର୍ପଣରେ ତାହା ମୁଦ୍ରିତ ହୋଇଅଛି । ଉତ୍ତରଟି କେଟକଠାରୁ ଗତ ନଭେମ୍ବର ମାସ ତା ୨୪ରିଖରେ ପ୍ରେରିତ ହୋଇଥିବାର ଜଣାଯାଏ ମାତ୍ର ଏତେକାଳ କାହିଁକି ଗୋପନ ଥିଲା

ବୋଲାଯାଇ ନ ପାରେ । ଯାହା ହେଉ ପାଠକମାନଙ୍କ ଗୋଚରାର୍ଥେ ଆମ୍ଭେମାନେ ପ୍ରାର୍ଥନା ଓ ଉତ୍ତର ଦୁହିଙ୍କର ସଂକ୍ଷେପ ବିବରଣ ଲେଖୁଅଛୁଁ । ଯଥା

ପ୍ରାର୍ଥନା - ୧- କଲିକତାର ମେଦିନୀପୁର ଓ କୋକନଦା ବାଟେ ମାନ୍ଦ୍ରାଜକୁ ରେଲବାଟ ନିର୍ମାଣ । ୨- ଗଞ୍ଜାମ ଓ ସମ୍ବଲପୁରକୁ ଓଡ଼ିଶା ମଧ୍ୟରେ ଆଣି ଏକ ଶାସନର ଅଧୀନ କରିବା । ୩- ଶିକ୍ଷା ବିଷୟରେ ଓଡ଼ିଶାର ହୀନାବସ୍ଥା ଦୃଷ୍ଟିରେ ଏ ପ୍ରଦେଶ ପାଇଁ କିଛି ବିଶେଷ ଆନୁକୂଲ୍ୟ ପ୍ରକାଶ ପୂର୍ବକ ପ୍ରତ୍ୟେକ ସବ୍‌ଡିବିଜନରେ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷୋପଯୋଗୀ ଏକ ଏକ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ ସ୍ଥାପନ କରିବା । ୪- ଗଡ଼ଜାତରେ ବିଦ୍ୟାଶିକ୍ଷା ବିସ୍ତାର କରିବା କାରଣ କିଛି ବିଶେଷ ବିଧାନ କରିବା । ୫- ଉତ୍କଳୀୟ ବଙ୍ଗାଳୀମାନଙ୍କ ମାତୃଭାଷା ଶିକ୍ଷା ନିମିତ୍ତ ବିଦ୍ୟାଳୟ ସ୍ଥାପନ କରିବା । ୬- ବୁଢ଼ାବଳଙ୍ଗ ନଦୀମୁହାଣରେ ଥିବା ଚଡାସବୁ କାଟି ସର୍ବତ୍ରରେ ୧ ଫୁଟ୍ ପର୍ଯ୍ୟନ୍ତ ଜଳ ରହିବାର ଉପାୟ କରିବା । ୭- ବାଲେଶ୍ୱରରେ ଲବଣର ମାସୁଲ ଊଣା କରିବା । ୮- ଓଡ଼ିଶାରେ ଭୂମିର ବନ୍ଦୋବସ୍ତ ଚିରସ୍ଥାୟୀ କରିବା । ୯- ରାଜସ୍ୱ ଆଦାୟ ନିମିତ୍ତ ଜମିଦାରଙ୍କ ଉପରେ ଯେପରି ସୂର୍ଯ୍ୟାସ୍ତରପ କଠିନ ନିୟମ ଜାରି ଅଛି ପ୍ରଜାଙ୍କ ଉପରେ କର ଆଦାୟ ପାଖରେ ସେଥିପାଇଁ କିଛି ନିୟମ କରିବା ।

ମାନ୍ୟବର ସାହେବଙ୍କ ଉତ୍ତର- ୧- ନାଳ ବାଟେ କଲିକତାଠାରୁ ଓଡ଼ିଶା ପର୍ଯ୍ୟନ୍ତ ଗମନାଗମନର ସୁବିଧା ଗବର୍ଣ୍ଣମେଣ୍ଟ କରି ଦେଉଅଛନ୍ତି ଏଥିପାଇଁ ଓଡ଼ିଶାରେ ରେଳ ହେବାରେ ଆଶା ନାହିଁ କାରଣ ଏକ ପ୍ରଦେଶ ସକାଶେ ଉଭୟ ପ୍ରକାର ସୁବିଧା କରି ଦେବାର ଗବର୍ଣ୍ଣମେଣ୍ଟଙ୍କର ଅନେକ ବ୍ୟୟ ହେବ । ୬- ବୁଢ଼ାବଳଙ୍ଗ ନଦୀର ଚଡା ସବୁ ଭାଙ୍ଗି ଦେବା ସାଧ୍ୟାୟତ୍ତ ନୁହେଁ । ନଦୀ ମୁହଁ ସଳଖ କଲେ ଉପକାର ହେବ ଏକଥା ଯଦି କର୍ତ୍ତୃପକ୍ଷ କହନ୍ତି ତେବେ କାର୍ଯ୍ୟାରମ୍ଭ ହୋଇପାରେ ମାତ୍ର ଏଥିରେ ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କର ସନ୍ଦେହ ଅଛି । ୭- ଲବଣକର ବାଲେଶ୍ୱର ତହିଁରେ ମହାଜନମାନଙ୍କର କ୍ଷତି ହେଉଅଛି ଏପରି ଆଶଙ୍କା ବୃଥା ବାସ୍ତବରେ ଗତସନ୍ ପ୍ରତି ଏସନ୍‌ର ଶତକଡା ଖ ୫୦ଣ୍ଡ ଲେଖାଁଏ ଅଧିକା ପଟ୍‌ଟାଲୁଣ ପୋକ୍ତାନ୍ ସକାଶେ ବାଲେଶ୍ୱରର ଲୋକମାନେ ନେଇଥିବାର ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବ ଆନନ୍ଦିତ ହୋଇଅଛନ୍ତି ସୁତରାଂ ମହାଜନଙ୍କର କ୍ଷତି ନ ହୋଇ ଲାଭ ହେବାର ନିଶ୍ଚୟ ଜଣାଯାଏ । ୩- ଶିକ୍ଷାବିଷୟରେ ଓଡ଼ିଶା ସକାଶେ ଭିନ୍ନ ନିୟମ ହୋଇ ନ ପାରେ ଯେବେ ବଙ୍ଗଳାରେ ସବ୍‌ଡିବିଜନମାନଙ୍କ ପ୍ରବେଶିକା ଶିକ୍ଷା ପର୍ଯ୍ୟନ୍ତ ବିଦ୍ୟାଳୟମାନ ଥିବା ନ ଥିବାର ଡାଇରେକ୍ଟରଙ୍କଠାରୁ ଅନୁସନ୍ଧାନ କରିବେ । ୫- ଉତ୍କଳୀୟ ବଙ୍ଗାଳୀମାନେ ମାତୃଭାଷା ଶିକ୍ଷା ପାଇଁ ଚାନ୍ଦା ସହିତ ପ୍ରସ୍ତୁତ ହେଲେ ଗବର୍ଣ୍ଣମେଣ୍ଟ୍ ସାହାଯ୍ୟ କରିବେ ।

ଏଥିରୁ ଦେଖାଯାଏ ଯେ ବାଲେଶ୍ୱର ନିବାସିଙ୍କର ୯ଟି ପ୍ରାର୍ଥନା ମଧ୍ୟରୁ କେବଳ ୫ଟି ଅର୍ଥାତ ୧,୬,୭,୫ ଓ ୩ ନମ୍ବରର ଉତ୍ତର ଦେଇଅଛନ୍ତି ବାକି ଚାରୋଟି ବିଷୟରେ କିଛି

କହି ନାହାନ୍ତି ମାତ୍ର ଉତ୍ତରର ଆରମ୍ଭରେ ଲେଖାଅଛି କି 'ଏହି ନଥିରେ ଏପରି ଅନେକ ଅନେକ ବିଷୟ ଅଛି କି ଯାହା ମାନ୍ୟବର ମନୋଯୋଗ ପୂର୍ବକ ବିବେଚନା କରିବେ' । ଏଥିରୁ ବୋଧ ହୁଅଇ କି ଯେସବୁ ବିଷୟର ଉତ୍ତର ଦେଇ ନାହାନ୍ତି ତାହା ମାନ୍ୟବର ମନୋଯୋଗପୂର୍ବକ ବିବେଚନା କରିଅଛନ୍ତି । ଭଲା ଏହି ରୂପେ ମନକୁ ସାନ୍ତ୍ୱନା ଦେବାର ହେତୁ ଅଛି ସୁଖର ବିଷୟ ଅଟଇ କିନ୍ତୁ ଯେସ୍ଥଳେ ଯେତେ ବିଷୟର ଉତ୍ତର ଦେଇ ଅଛନ୍ତି ସବୁ ନାସ୍ତି କରିଅଛନ୍ତି ସେସ୍ଥଳେ ତାହାଙ୍କ ବିବେଚନା ଦ୍ୱାରା କୌଣସି କାର୍ଯ୍ୟ ସଫଳ ହେବାର ଆଶା ନାହିଁ । ବରଂ ଅତିଶୀଘ୍ର ଉତ୍ତର ଦେଇ ପଠାଇବାର ଅନୁମାନ ହୋଇପାରେ ଯେ ଉକ୍ତ ଆବେଦନରେ ସେ ଆଉ କିଛି କରିବେ ନାହିଁ । ଯେସବୁ ବିଷୟର ଉତ୍ତର ଦେଇଅଛନ୍ତି ତହିଁରେ ୧,୬ ଓ ୭ ପ୍ରାର୍ଥନାର ଅଯୌକ୍ତିକତା ଦର୍ଶାଇ ଅଛନ୍ତି ଓ ପଞ୍ଚମ ପ୍ରାର୍ଥନାରେ ଯାହା କହିଅଛନ୍ତି ତାହା ମଧ୍ୟ ବଡ଼ ଅସଙ୍ଗତ ନୁହଇ କିନ୍ତୁ ତୃତୀୟ ପ୍ରାର୍ଥନାରେ ଯେ ମାନ୍ୟବର କିଛିମାତ୍ର ବିଚାର ନ କଲେ ଏଥିରେ ଆମ୍ଭେମାନେ ବଡ ଦୁଃଖିତ ହେଲୁଁ । ପ୍ରତ୍ୟେକ ସବ୍‌ଡିବିଜନର ଇଂରାଜୀ ବିଦ୍ୟାଳୟ ନ କରନ୍ତୁ ତହିଁରେ ବଡ ଦୁଃଖ ନାହିଁ କିନ୍ତୁ ଓଡ଼ିଶାର ହୀନାବସ୍ଥାପ୍ରତି ବିଚାର ନ କରି ଯେ ବଙ୍ଗଳା ଓ ଓଡ଼ିଶାପ୍ରତି ଶିକ୍ଷାଦାନ ସମ୍ପର୍କରେ ଏକ ପ୍ରକାର ସାହାଯ୍ୟ ଦେବାକୁ ଦୃଢ଼ ପ୍ରତିଜ୍ଞ ହେଲେ ଏଥିରେ ଆମ୍ଭେମାନେ ବଡ ମନସ୍ତାପ ପାଇଲୁଁ । ମାନ୍ୟବର ଓଡ଼ିଶାରେ ପଦାର୍ପଣ କରି ଏଠାର ଅବସ୍ଥା କି କୌଣସି ରୂପେ ବଙ୍ଗଳାଠାରୁ ମନ୍ଦ ଦେଖିଲେ ନାହିଁ ?

## ପରିଶିଷ୍ଟ-୩

### ଷ୍ଟୁଆର୍ଟ୍ କେଲଭିନ୍‌ଙ୍କୁ ଉତ୍କଳ ସଭାର ଅଭିନନ୍ଦନ ପତ୍ର :

TO

THE HONORABLE SIR STEUART COLVIN BAYLEY,
K.C.S.I. C.I.E. LIEUTENANT GOVERNOR OF BENGAL.
MAY IT PLEASE YOUR HONOR

We, the members of the Orissa Association, beg most respectfully on behalf of ourselves and the community at large to welcome your Honor, with feelings of gratefulness, for having so soon, after assuming the reins of Government, thought of a people than whom perhaps no subjects of Her Majesty stand in greater need of your. Honor's care and attention, and for having

given them the rare opportunity of expressing their feelings of loyalty and devotion to your Honor, and through your Honor to Her Most gracious Majesty our beloved Sovereign and Queen - Empress.

It is specially gratifying to us to greet, as Her Gracious Majesty's representative in this Province, one who has shown so much sympathy for all classes and has at all times studied to reconcile conflicting interests with the welfare and moral and material advancement of the country. On this, your Honor's first visit to Orissa your Honor will find in this Durbar, proof of our loyalty and devotion to your Honor and we would ask your Honor, to give us this privilege of showing our loyalty often during the continuance of your Honor's rule.

We take this opportunity to thank your Honor most sincerely for your Honor's efforts to sustain the scheme of local Self Government inaugurated by His excellency Lord Ripon, and we hope that the scheme will, under your Honor's fostering care, prove a great blessing and we assure your Honor that nothing will be wanting on the part of the people to make themselves worthy of the boon.

Your Honor has laid the people under great obligation by a satisfactory settlement of the Pooree Temple suit, in regard to which the entire Hindu population of India felt so strongly.

We see the hand of providence in your Honor's visit to Orissa in a year when the opposite evils of drought and inundation had, a short time before, combined to threaten the country with a famine.

We are much indebted to the head of the Local administration in Orissa for the readiness with which relief was given where it was most needed, and we believe that the anxious desire and readiness to grant relief on the part of the Local Authorities, and your Honor's sympathies for suffering humanity will avert the distress which the present prospect of the crops forebodes.

We thank your Honor for the relaxation of the forest rules in the Government Estates, where distress recently prevailed and considering the poverty of the people who are benefitted by this relaxation, we would most respectfully ask your Honor for a rescission of the rules temporarily relaxed , seeing that this

will not in any way affect the preservation of the forest or its revenue.

We cannot express in adequate terms our gratitude to the Government for their benevolent and kind wishes towards the people as manifested in the construction of the irrigation works in this province, but we regret to say that this elaborate and costly system, which was introduced with the noble object of ensuring a regular supply of water to the fields of the cultivator is the least appreciated by him. Whether this state of things is due to want of appreciative merit in the cultivator or the primary object of the system is lost sight of by those who are entrusted with the working thereof, requires a more thorough enquiry than has hitherto been made, and your Honor will confer a lasting boon on the people by introducing the necessary improvements which will make the irrigation work a blessing in the eyes of the cultivator class.

The isolated position of Orissa, owing to want of facilities for communication and the absence of foreign capital and foreign enterprise which have contributed so largely to the development of manufacturing industry and have furnished means of livelihood to the labouring class in other parts of India make distress and scarcity to be felt more by the people here they are felt in any other tract within your Honor's rule. When we add to this the fact that the railway, the most important and potent factor in the civilization of the world, has not yet been introduced in Orissa. though it contains a city which, owing to its ancient sanctity, attracts annually more visitors from all parts of india than any other similar city does in twenty years, it is no wonder that Orissa is the most backward in intellectual advancement and in material prosperity. But like a child badly equipped by nature for the battle of life, we respectfully beg to remind your Honor of the claims of Orissa to a greater share of the parental care which the British Government has vouchsafed to its subjects and we sincerely hope that your Honor will give us the Railway and thus open the road to Orissa's meterial prosperity and intellectual advancement, which the canal system has not accomplished here.

While dwelling on the poverty of the people , we cannot refrain from drawing your Honor's attention to the recent transfer of the Salt Department of Orissa from the Bengal to the Madras Government, as a matter which has affected the interests of the laboring classes by depriving many thousands to them of their means of livelihood. We shall not stop to discuss whether it is politic to place the administration of a province under two separate Governments, but the interests of the poor labouring class whose claims for sympathy will, we are sure, meet with a ready recognition at your Honor's hand, render it our sacred duty to point out here how the transfer of the Salt Department has very considerably decreased the manufacture of Salt in Orissa, and this is of no small consequence to a poor people who are threatened with periodical visitation of famines and for whom their country cannot find sufficient employment.

At a time when it is proposed to transfer a portion of the Central Provinces to the Bombay Presidency, we feel it our duty to solicit your Honor's attention to the fact that the tract of the country where the Uriyas reside is anomalously placed under the administration of the Madras, Bengal and the Central Provinces Governments. We would therefore ask your Honor long life and health to rule long over a people to whom your Honor has endeared yourself within the short period of your rule.

We beg & c .

## ପରିଶିଷ୍ଟ-୪

### ସମ୍ବଲପୁରରେ ଓଡିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ ବିରୁଦ୍ଧରେ ସ୍ମାରକପତ୍ର :

His Honor the Chief commissioner of the Central Provinces, Nagpur

The humble petition of the residents of the town and district of Sambalpur most respectfully.

Showeth

That the undersigned have learnt with deep regret that orders have been issued to introduce the Hindi instead of the Uriya language into the Police department here, and that inquiries as to the convenience or otherwise of using the Hindi Language as the court language of the district are now being made.

That a meeting to discuss the question of the Court language of the district was held at the missionary Book room on the 30th July 1894 Pandit Shrikrishna Misra was elected as Chairman. The hall was overcrowded and many had to stand outside on the verandah. This representative body consisted chiefly of Urya and gharua Brahmans and Mahanties. A copy of the resolutions passed in the meeting is herewith annexed.

The petitioners beg to submit the following in support of resolutions I & II.

That this is an Urya district. The petitioners are uryas as a nation and they have as a matter of course. Urya their mother tongue. After being educated in the language in the primary schools many people commence to earn their livelihood with difficulty. Many unjet the petitioners know only how to read and write. which is but just sufficient for them to carry on their humble work.

There is no one in Sambalpur, who can be said to be prosecuting his studies for the sake of mere acquisition knowledge. This is a poor district and all learners have to depend on service.

English is the sovereign language, some knowledge in which being requisite to secure a good living by getting into the public service, it is acquired by the people , but it is notorious that it is difficult for a side by side with people whose mother - tongue is Hindi is not an easy task. One or two may show efficiency in it , but there is no doubt that almost all will fail and will be deprived of their

appointments.This is a matter of no ordinary regret. It may be laid down that the existing official will not be dismissed for their inefficiency, but if their promotion be stopped on account of it or new men be not taken into service without having any knowledge of Hindi, will not that be a great injustice to the people here ?

The people of this district have not shown such aptitude for acquiring languadges so as to presume them to be fit to learn two foreign languages. Every where the mother tongue and the crown languages are prevalent, but the petitioners have never heard or seen the fact of any people being compelled to learn a 3rd foreign language.

That on the lapse of the district to the British rule Urdu, and some years later a Hindi were the court languages, but, it was found expedient to get them superceded by urya being the language for the sensations about 1859 and xxxx it has remained the Court language out interruption.

That about 1862 the question whether Hindi or Urya should be the language of the district was again taken steps and in spite of the contrary view taken by Major Impey, the then Deputy commissioner the local government decided in favour of the Urya language.

That a large number of Urya School, was established in the district and thousands of men received education there in. When there are vacancies in any different knowing men are always available, however small the pay may be. Almost all the appointments used to be filled up by local men hitherto but if Hindi be introduced the people will be either depress - of their posts or debarred from getting into service.

That the petitioners do not see all reason for a change of the language. If it is for the sake of a few police officers, who are transferred from here one district to other districts and vice versa, the course adopted does not justify itself, in as much as it will effect the downfall of the language of the nation.

Today order is issued for the use of the Hindi language in the Police, tomorrow it will be introduced into the Cutcherry, then it will be adopted in the settlement department and lastly Hindi instead of Urya schools will have to be established. People take to learning in order to earn their livelihood. When they will see that they cannot be helped in getting employees by learning Urya and that a knowledge in Hindi is requisite, there is no reason why the guardians should not prefer to teach their children Hindi from their boyhood. That this will spoil the education itself need not be shown in and in the course of some years there will be an increase in the number of Hindi schools and a decrease in the number of Urya schools and Urya language will go to the wall. This is a very hard blow directed upon the petitioners, under which they cannot but be crushed.

The object of introducing Hindi as the Court language of the district is not clear. If it be for the convenience of the officials, who might be transfered from one district to another, the petitioners beg to point out that experience has shown that some two or three ministerial officials had been transferred here from the Bilaspur district and they had tried their best but found it extremely difficult to work in Urya and hence had to their revert to posts. The officials who might be transferred from here to any Hindi district will face the same fate. In cuttack and other districts the practice of transferring ministerial officers in respect of small pay does not seem to be prevelent and it is always difficult on the part of insufficiently paid officials to meet expenses incurred in the journeys from and to the native place, where they may have ocasions to celebrate the ceremonies of their children or to see their relatives seriously sick or attend to funeral ceremonies of relatives; or if it be for the convenience of a few judicial officers, who are or will be sent here it is their duty to learn the language and to understand the people, who appear before them. Both the causes alluded to above

କାରଣ ଉଚିତ ସାହାଯ୍ୟ କରୁଅଛନ୍ତି ଏଥିରେ ଏମନ୍ତ ସୁଫଳ ଫଳିଅଛି ଯେ ବଙ୍ଗୀୟ ଶାସନାଧୀନ ଓଡ଼ିଆମାନେ ଭିନ୍ନ ଜାତି ବୋଲି ଗବର୍ଣ୍ଣମେଣ୍ଟଙ୍କର ଦୟାରୁ ବଞ୍ଚିତ ହେବାର ପୂର୍ବେ ଯେପରି ମନେ କରୁଥିଲେ ବର୍ତ୍ତମାନ ତାହା କରୁ ନାହାନ୍ତି ବରଂ ଗବର୍ଣ୍ଣମେଣ୍ଟଙ୍କର ଦୟା ଓ ସୁବିଚାରର ଲାଭଦ୍ୱାରା କ୍ରମଶଃ ଉନ୍ନତ ଅବସ୍ଥାକୁ ପ୍ରାପ୍ତ ହେବାର ଦେଖି ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜାର ଓଡ଼ିୟାମାନେ ବଙ୍ଗ ଗବର୍ଣ୍ଣମେଣ୍ଟଙ୍କର ଅଧୀନରେ ଆସିବା କାରଣ ଗବର୍ଣ୍ଣମେଣ୍ଟରେ ପ୍ରାର୍ଥନା କରୁଅଛନ୍ତି । ବ ୫।୬ ର୍ଷ ପୂର୍ବେ ମଧ୍ୟପ୍ରଦେଶର କଚେରିମାନଙ୍କରୁ ଓଡ଼ିୟା ଭାଷା ଅନ୍ୟାୟ ଭାବେ ଉଠିଯିବାରୁ ଓଡ଼ିୟାମାନଙ୍କର ଯେଉଁ ଆତଙ୍କ ଉପସ୍ଥିତ ହୋଇଥିଲା ଓ ଯେତେ କଷ୍ଟ ଭୋଗ କରିଥିଲେ ମହାମତି ମାନ୍ୟବର ଫ୍ରେଜରସାହେବ ଏବଂ ମହାମାନ୍ୟ ଗଭର୍ଣ୍ଣର ଜେନେରାଲ ଲର୍ଡ କର୍ଜନଙ୍କ ସୁବିଚାରରେ ତାହା ବିଦୂରିତ ହୋଇଅଛି । ସୁତରାଂ ସେମାନେ ଅନେକ ପରିମାଣରେ ଆଶ୍ୱସ୍ତ ହୋଇଅଛନ୍ତି । ତଥାଚ ମୂଳ ଓଡ଼ିଶାବାସୀ ଅର୍ଥାତ୍ ବଙ୍ଗୀୟ ଶାସନାଧୀନ ଓଡ଼ିୟାଙ୍କ ସଙ୍ଗେ ସେମାନଙ୍କର ରାଜକୀୟ ଯୋଗ ହେଲେ ଅଧିକତର ସୁଖରେ ରହିବାର ଆଶା କରନ୍ତି । ମାନ୍ଦ୍ରାଜ ଅନ୍ତର୍ଗତ ଓଡ଼ିୟା ଅର୍ଥାତ୍ ଗଞ୍ଜାମ ଜିଲ୍ଲାର ଓଡ଼ିୟାଙ୍କର ଭାବନା ସର୍ବାପେକ୍ଷା ଅଧିକ । ଗଞ୍ଜାମଜିଲ୍ଲା ପ୍ରକୃତରେ ଓଡ଼ିୟାଦେଶ ଏବଂ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଏହା ବିଲକ୍ଷଣ ଅବଗତ ହୋଇ ସେଠାରେ କଚେରିମାନଙ୍କରେ ଓଡ଼ିୟା ଭାଷା ପ୍ରଚଳିତ ହେବାର ଆଦେଶ ଦେଇଥିଲେହେଁ ଉଚ୍ଚ କର୍ମଚାରୀମାନେ ପ୍ରାୟ ସମସ୍ତେ ତେଲଙ୍ଗା ହେବାରୁ ସେମାନଙ୍କର ଅହରହ ବାଧାଦ୍ୱାରା କାର୍ଯ୍ୟତଃ ସେ ଆଦେଶ ପ୍ରତିପାଳିତ ହେଉ ନାହିଁ ଏବଂ ନାନା ଅସୁବିଧା ହେତୁ ଓଡ଼ିୟାମାନେ କୌଣସି ମତେ ତେଲଙ୍ଗାଙ୍କ ସରି ହୋଇ ନ ପାରିବାରୁ ବିଶେଷ କଷ୍ଟରେ ଅଛନ୍ତି । ସେମାନଙ୍କର କଷ୍ଟ ନିତାନ୍ତ ବଳିପଡିବାରୁ ସମ୍ପ୍ରତି ସେଠାର ରାଜା, ଜମିଦାର ଓ ଜନସାଧାରଣ ଗଞ୍ଜାମଜିଲ୍ଲାକୁ ବଙ୍ଗୀୟ ଗବର୍ଣ୍ଣମେଣ୍ଟ ଅଧୀନ ଓଡ଼ିଶା ସଙ୍ଗେ ଯୋଗ କରି ଏକ ଶାସନାଧୀନରେ ରଖିବା କାରଣ ମହାମାନ୍ୟ ଗବର୍ଣ୍ଣର ଜେନେରାଲଙ୍କ ଠାରେ ଆବେଦନ କରିଅଛନ୍ତି । ସେମାନଙ୍କର ଗୁହାରୀ ଯଥାର୍ଥ ଏଥିରେ ସନ୍ଦେହ ନାହିଁ ଏବଂ ଆମ୍ଭେମାନେ ଏକାନ୍ତ ଆଶାକରୁ କି ମହାମତି ଲର୍ଡ କର୍ଜନ ବାହାଦୂର ଯେମନ୍ତ ସୁବିଚାର ପୂର୍ବକ ସମ୍ବଲପୁର ଓଡ଼ିୟାଙ୍କ ଦୁଃଖ ଦୂର କରିଅଛନ୍ତି ତେମନ୍ତ ଗଞ୍ଜାମ ଓଡ଼ିୟାଙ୍କର ଦୁର୍ଦ୍ଦଶା ମୋଚନ ଏବଂ ଉନ୍ନତିର ମାର୍ଗ ପ୍ରଶସ୍ତ କରିବାର ସୁବିଚାର କରିବେ । ସେମାନଙ୍କର ଦୁଃଖ ଦୂର କରିବାର ଦୁଇଟି ଉପାୟ ଅଛି ଅର୍ଥାତ୍ ଗୋଟିଏ ଏହି କି ମୂଳ ଓଡ଼ିଶାପ୍ରତି ବଙ୍ଗୀୟ ଗବର୍ଣ୍ଣମେଣ୍ଟ ଯେଉଁ ସୁବ୍ୟବସ୍ଥା କରିଅଛନ୍ତି ଗଞ୍ଜାମ ଓଡ଼ିୟାଙ୍କ ପ୍ରତି ସେହିପରି ବ୍ୟବସ୍ଥା କରିବା କାରଣରୁ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ଦୃଢରୂପେ ଅନୁରୋଧ କରିବା ଏବଂ ସମ୍ବଲପୁର ସହିତ ବଙ୍ଗ ଅଥବା ଅନ୍ୟ କୌଣସି ଏକ ଗବର୍ଣ୍ଣମେଣ୍ଟ ଓ ବିଶ୍ୱବିଦ୍ୟାଳୟର ଅଧୀନରେ ରଖିବା । ପ୍ରଥମ ଲିଖିତ ଉପାୟଟି ସମାନ ଓ ତାହା ପ୍ରତିପାଳନର ତ୍ରୁଟି ଲୋକମାନେ ଧୀର ଓ

ବିନୀତଭାବରେ ପୁନଃ ପୁନଃ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇଲେ ସେମାନଙ୍କର ଦୁଃଖ ଦୂର ହେବାର ଆଶା ହୁଅଇ । ଅନ୍ୟ ଉପାୟଟି ଅଧିକ ବିବେଚନା ସାପେକ୍ଷ । ମୋ ପ୍ରସଙ୍ଗରେ ଆମ୍ଭମାନଙ୍କର ବକ୍ତବ୍ୟ ବାରାନ୍ତରେ ପ୍ରକାଶ କରିବୁ ।

## ପରିଶିଷ୍ଟ -୯

### ଉତ୍କଳର ସମ୍ମିଳନ :

ଗଞ୍ଜାମବାସିଙ୍କର ମହାମାନ୍ୟ ଗବର୍ଣ୍ଣର ଜେନେରାଲ ବାହାଦୂରଙ୍କ ସମୀପକୁ ପ୍ରେରିତ ହୋଇଥିବା ଆବେଦନ ପତ୍ର ସମ୍ବନ୍ଧରେ ଏଠା ଉତ୍କଳ ସଭାର ଯତ୍ନରେ ଗତ ବୁଧବାର ସନ୍ଧ୍ୟା ସମୟରେ ଯେଉଁ ସାଧାରଣ ସଭା ହେବାର ଥିଲା ବୋଲି ଗତ ସପ୍ତାହରେ ପାଠକମାନଙ୍କୁ ଜଣାଇ ଥିଲୁ ତାହା ନିରୂପିତ ସମୟରେ ଅତି ସୁନ୍ଦରରୂପେ ହୋଇଥିବାର ଆନନ୍ଦ ସହିତ ଜଣାଉଅଛୁଁ । ସଭା ସ୍ଥଳରେ ଏ ନଗରବାସୀ ଜଣାଣ ମେମ, ଶ୍ରୀଯୁକ୍ତ ହାବେଲ ଓ ଗ୍ରଣ୍ଡି ପାଦ୍ରି ଏବଂ ଶ୍ରୀଯୁକ୍ତ ହୁଆଇଟ ସାହେବମାନେ, କନିକାର ରାଜା, ଜମିଦାର, ଉକିଲ, ଡେପୁଟି ପ୍ରଭୃତି ସରକାରୀ କର୍ମଚାରୀ ଏବଂ ଅନ୍ୟାନ୍ୟ ଶ୍ରେଣୀର ଅନେକ ଭଦ୍ରଲୋକ ଓ କଲେଜର ଛାତ୍ର ମିଶି ପ୍ରାୟ ଜ୨୫୦ଣ ସମବେତ ହୋଇଥିଲେ । ଆହୁରି କେତେଲୋକ ଘର ଓ ବାରନ୍ଦାରେ ସ୍ଥାନ ନ ପାଇ ବାହୁଡି ଯିବାକୁ ବାଧ ହୋଇଥିଲେ । ବାବୁ ଗୌରୀଶଙ୍କର ରାୟଙ୍କର ପ୍ରସ୍ତାବ ଏବଂ ବାବୁ ନିମାଇଚରଣ ମିତ୍ରଙ୍କର ଅନୁମୋଦନକ୍ରମେ ବାବୁ ମଧୁସୂଦନ ଦାସ ସଭାପତି ମନୋନୀତ ହେଲାରୁ ପ୍ରଥମେ ଉତ୍କଳ ସମ୍ମିଳନ ବିଷୟକ ନବ ରଚିତ ଗୋଟିଏ ସଙ୍ଗୀତ ହାରମୋନିୟମ ଯନ୍ତ୍ର ସହକାରେ ତିନିଜଣ ସମ ସ୍ୱରରେ ଗାୟନ କଲେ । ତହୁଁ ସଭାପତି ମହାଶୟ ତାହାଙ୍କର ସ୍ୱାଭାବିକ ରସାଳ ଗଭୀର ଚିନ୍ତାଯୁକ୍ତ ଓଡିୟା ଭାଷାରେ ଗୋଟିଏ ସୁନ୍ଦର ବକ୍ତୃତାଦ୍ୱାରା ସଭାର ଉଦ୍ଦେଶ୍ୟ ବୁଝାଇଦେଲେ । ସେ ଅତ୍ୟନ୍ତ ବିନୟ ଭାବରେ କହିଲେ କି ଉତ୍କଳରେ ଭାଇ ଶବ୍ଦଟି ବିଶେଷତଃ ବଡ ଭାଇଠାରେ ପ୍ରୟୋଗ ହୋଇଥାଏ । ସେ ଏ ସଭାସ୍ଥ ଲୋକଙ୍କୁ ଭାଇ ବୋଲି ସମ୍ବୋଧନ କରି ସେମାନଙ୍କୁ ବଡ ଓ ନିଜକୁ ଛୋଟ ମନେ କରୁଅଛନ୍ତି । ଆଉ ଯେମନ୍ତ ଏକ ମାତାର ସ୍ତନ୍ୟପାନରେ ପ୍ରତିପାଳିତ ପୁତ୍ରମାନଙ୍କୁ ଭାଇ କହନ୍ତି ତେମନ୍ତ ଯେଉଁମାନେ ଉତ୍କଳ ମାତାର ସ୍ତନ୍ୟ ପାନଦ୍ୱାରା ଦୀର୍ଘକାଳ ବା ଅଳ୍ପକାଳ ଶରୀର ପୋଷଣ କରୁଅଛନ୍ତି ସେମାନେ ଭାଇ ଅଟନ୍ତି ଏବଂ ଉତ୍କଳ ମାତାର ସେବା କରିବା ଏବଂ ଶୁଭ ମନାସିବା ସେମାନଙ୍କର କର୍ତ୍ତବ୍ୟ ଅଟେ । ସମସ୍ତ ଉତ୍କଳକୁ ଏକ ଶାସନାଧୀନ କରିବା କଥା ନୂତନ ନୁହେଁ କିମ୍ବା ଗଞ୍ଜାମବାସୀଙ୍କ ଆବେଦନପତ୍ରରୁ ବର୍ତ୍ତମାନ ଉଦ୍ଭବ ହୋଇନାହିଁ । ସନ ୧୮୪୧ ସାଲରୁ ସମୟ ସମୟରେ ଏଥିର ଚର୍ଚ୍ଚା ହୋଉଅଛି । ତହିଁ ପୂର୍ବେ ଗଞ୍ଜାମ

ଓଡିଶାର ଅନ୍ତର୍ଗତ ଥିଲା ଏବଂ ସନ ୧୮୬୧ ସାଲ ପର୍ଯ୍ୟନ୍ତ ସମ୍ୱଲପୁର ଓଡିଶା କମିଶନରଙ୍କ ଅଧୀନରେ ଥିଲା । ସନ ୧୮୮୮ ସାଲରେ ଉତ୍କଳ ସଭା ସମସ୍ତ ଓଡିୟାଭାଷିଙ୍କୁ ଏକ ଶାସନାଧୀନ କରିବାର ପ୍ରସ୍ତାବ କରିଥିଲେ ଏବଂ ସନ ୧୮୯୫ ସାଲରେ ଓଡିଶାର କମିଶନର ଶ୍ରୀଯୁକ୍ତ କୁକ୍ ସାହେବ ସମ୍ୱଲପୁରକୁ ଓଡିଶାଭୁକ୍ତ କରିବା କାରଣ ଗବର୍ଣ୍ଣମେଣ୍ଟକୁ ଲେଖିଥିଲେ । ଏ ଶତାବ୍ଦର ଆରମ୍ଭରେ ସମ୍ୱଲପୁରବାସୀମାନେ ସେହିପରି ପ୍ରାର୍ଥନା କରିଥିଲେ । ସମ୍ପ୍ରତି ଓଡିଶା ମଧ୍ୟପ୍ରଦେଶରୁ ବାହାରିଯିବା କଥା ଏକ ଏକ ସମ୍ୱାଦପତ୍ରରେ ବାହାରିଅଛି । ଅତଏବ ବିଷୟଟି ଅତ୍ୟନ୍ତ ଗୁରୁତର ଏବଂ ଓଡିଶାର ଭବିଷ୍ୟତ ଶାସନ ଏଥି ଉପରେ ନିର୍ଭର କରୁଥିବାରୁ ଅତ୍ୟନ୍ତ ଧୀରତା ଓ ବିଚକ୍ଷଣତା ସହିତ ଅଦ୍ୟ ତହିଁର ମୀମାଂସା କରିବାକୁ ସଭ୍ୟବୃନ୍ଦଙ୍କୁ ଅନୁରୋଧ କରି ବକ୍ତୃତା ଶେଷ କଲେ । ତଦନନ୍ତର ନିମ୍ନଲିଖିତ ନିର୍ଦ୍ଧାରଣମାନ ବିଧିମତେ ପ୍ରସ୍ତାବିତ ଅନୁମୋଦିତ ଓ ସମର୍ଥିତ ହୋଇ ଧାର୍ଯ୍ୟ ହେଲା ।

୧. ଗଞ୍ଜାମଜିଲ୍ଲାର ଉତ୍କଳବାସୀ ଅଧିବାସୀମାନେ ମହାମାନ୍ୟ ଗବର୍ଣ୍ଣର ଜେନେରାଲଙ୍କ ସମୀପକୁ ସେମାନଙ୍କର ଦୁଃଖ ଜଣାଇ ଯେଉଁ ଆବେଦନପତ୍ର ପଠାଇଅଛନ୍ତ ତହିଁରେ ଏ ସଭାର ସମ୍ପୂର୍ଣ୍ଣ ଓ ଗଭୀର ସହାନୁଭୂତି ଥିବା ବିଷୟ ଲିପିବଦ୍ଧ କରିବା ଏ ସଭାର କର୍ତ୍ତବ୍ୟ, ଏବଂ ମହାମାନ୍ୟ ଗବର୍ଣ୍ଣର ଜେନେରାଲ ସମ୍ୱଲପୁର ନିବାସୀ ଓଡିୟାମାନଙ୍କୁ ସେମାନଙ୍କର ଭାଷାର ପୁନଃ ପ୍ରଚଳନ ଦ୍ୱାରା ଯେରୂପ ଅବିଳମ୍ୱେ ଅନୁଗୃହୀତ କରିଅଛନ୍ତି ତହିଁରୁ ଗଞ୍ଜାମନିବାସୀ ଓଡ଼ିୟାମାନଙ୍କର ଗୁରୁତର ଗୁହାରି ସମ୍ୱଳିତ ଆବେଦନପତ୍ର ମହାମାନ୍ୟ ଗବର୍ଣ୍ଣରଙ୍କର ଦିବ୍ୟ ଅବଧାନକୁ ଆସିବାର ଆଶା ଏ ସଭା ସମ୍ପୂର୍ଣ୍ଣ ପୋଷଣ କରନ୍ତି ।

ପ୍ରସ୍ତାବକ- ଶ୍ରୀଯୁକ୍ତ ଜି.ଏଚ୍. ହୁଆଇଟ ସାହେବ, ଅନୁମୋଦକ ଶ୍ରୀଯୁକ୍ତ ପାଦ୍ରୀସେମ ସାହୁ, ସମର୍ଥନକାରୀ ବାବୁ ଶରତଚନ୍ଦ୍ର ମୁଖାର୍ଜି, ବି.ଏ, ବି.ଏଲ୍ ଏବଂ ମୁନସି ସୈୟଦ୍ ନୁରୁଲ ହକ୍ ।

୨. ଓଡିୟାଭାଷୀ ଲୋକେ ଭିନ୍ନ ଭିନ୍ନ ଶାସନାଧୀନରେ ରହିବାରୁ ତହିଁ ପ୍ରଭାବରେ (କି ଯେଉଁ ପ୍ରଭାବ ଉପରେ ଭାରତର ଜାତିମାନଙ୍କର ଶିକ୍ଷା ଓ ସଭ୍ୟତା ବିଶେଷଭାବେ ନିର୍ଭର କରେ) ସନ୍ତୋଷଜନକ କିମ୍ୱା କ୍ରମିକ ଉନ୍ନତି କରିପାରୁ ନଥିବା ହେତୁ ବିବେଚନା କରି ଓଡିୟାଭାଷୀ ଲୋକମାନଙ୍କୁ ଗୋଟିଏ ଶାସନ ଓ ଶିକ୍ଷା ପ୍ରଣାଳୀର ଅଧିନ ରଖିବାର ଏକାନ୍ତ ଆବଶ୍ୟକତା ଏହି ସଭା ପୂର୍ଣ୍ଣରୂପେ ହୃଦୟଙ୍ଗମ କରୁଅଛନ୍ତି ଏ କଥା ଲିପିବଦ୍ଧ କରାଯାଉ । କାରଣ ସଭାର ବିବେଚନାରେ ଏହାଇ ଉକ୍ତ ଜାତିର ଉନ୍ନତିର ବଳବତ୍ର ଉପାୟ ଅଟେ ।

ପ୍ରସ୍ତାବକ- ଶ୍ରୀଯୁକ୍ତ ପାଦ୍ରି, ଜି.ଏଚ୍, ହାଉଏଲ୍ ସାହେବ, ବି.ଏ. ବି.ଡି ଅନୁମୋଦକ- ଶ୍ରୀଯୁକ୍ତ ବାବୁ ବିଶ୍ୱନାଥ କର, ସମର୍ଥନକାରୀ- ବାବୁ ଅଭିରାମ ଭଞ୍ଜ, ଏମ୍. ଏ.ବି.ଏଲ୍ ଏବଂ ବାବୁ ହରିଚରଣ ବାନୁର୍ଜି, ବି.ଏ. ବି.ଏଲ୍ ।

୩. ଏ ସଭା ମହାମାନ୍ୟ ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରାଲଙ୍କ ନିକଟକୁ ଖଣ୍ଡିଏ ଆବେଦନପତ୍ର ପଠାନ୍ତୁ ଏବଂ ଉକ୍ତ ଆବେଦନପତ୍ରରେ, ୧. ସମ୍ବଲପୁର, ଛୋଟନାଗପୁର, ଗଞ୍ଜାମ, ବିଶାଖପଟ୍ଟମ ଏବଂ ମେଦିନୀପୁର ଜିଲ୍ଲା ମାନଙ୍କର ଓଡିୟାଭାଷୀ ବିଭାଗମାନଙ୍କୁ ଓଡିଶା ପ୍ରଦେଶ ସଙ୍ଗେ ମିଳିତ କରାଯାଉ, ୨.-ଆସାମ ପରି ଓଡିଶାକୁ ଗୋଟିଏ ବିଭାଗ ଚିଫ୍ କମିଶନରସିପ୍ ଗଠିତ କରାଯାଉ ଏବଂ ତାହା କଲିକତା ହାଇକୋଟର ବିଚାରାଧୀନ ଓ କଲିକତା ବିଶ୍ୱବିଦ୍ୟାଳୟର ଶିକ୍ଷାଧୀନ ରଖାଯାଉ । ଗବର୍ଣ୍ଣମେଣ୍ଟଙ୍କ ବିଚାରରେ ଏ ଦୁଇଟି ମଧ୍ୟରୁ ଯେଉଁଟି ଜାତୀୟ ଉନ୍ନତିର ଆନୁକୂଲ୍ୟ ହେବ ସେହି ଗୋଟିକ ଗ୍ରାହ୍ୟ ହେଉ ।

ପ୍ରସ୍ତାବକ- ବାବୁ ଗୋକୁଳାନନ୍ଦ ଚଉଧୁରୀ, ବି.ଏ.ବି.ଏଲ୍. ଅନୁମୋଦକ -ବାବୁ ରାମଶଙ୍କର ରାୟ, ସମର୍ଥନକାରୀ ବାବୁ ମାୟାଧର ଦାସ, ବି.ଏ.ବି.ଏଲ୍.

୪. ଆବେଦନପତ୍ର ପ୍ରସ୍ତୁତ କରିବା ନିମନ୍ତେ ତଳଲିଖିତ ଭଦ୍ରଲୋକମାନଙ୍କଦ୍ୱାରା ଗୋଟିଏ ଶାଖା ସମିତି ଗଠିତ ହେଉ ।

ଶ୍ରୀ ବାବୁ ମଧୁସୂଦନ ଦାସ, ଶ୍ରୀ ବାବୁ ରାମଶଙ୍କର ରାୟ, ଶ୍ରୀଯୁକ୍ତ ପାଦ୍ରି ଜି.ଏଚ୍. ହାଉଏଲ୍ ସାହେବ, ଶ୍ରୀଯୁକ୍ତ ଢି.ଏଚ୍ ହୁଆଇଟ୍ ସାହେବ, ଶ୍ରୀ ବାବୁ ଗୋକୁଳାନନ୍ଦ ଚୌଧୁରୀ ।

ପ୍ରସ୍ତାବକ- ବାବୁ ଗୋପାଳ ଚନ୍ଦ୍ର ପ୍ରହରାଜ, ବି.ଏ.ବି.ଏଲ୍., ଅନୁମୋଦକ ଚୌଧୁରୀ ବ୍ରଜସୁନ୍ଦର ଦାସ, ବି.ଏ. ସମର୍ଥନକାରୀ -ମୌଲଭି ରଫିଉଦିନ ମହମ୍ମଦ ।

୫. ଏହି ଆବେଦନପତ୍ର ମହାମାନ୍ୟ ଗବର୍ଣ୍ଣର ଜେନେରାଲଙ୍କ ଛାମୁରେ ପ୍ରଦାନ କରିବା ସଂକ୍ରାନ୍ତରେ ଯାହା ଯାହା କରିବାର ଆବଶ୍ୟକ ସେ ସମସ୍ତ କରିବା କାରଣ ଉତ୍କଳ ସଭାକୁ ଭାର ଦିଆଯାଉ ।

ପ୍ରସ୍ତାବକ- ବାବୁ ବନବେହାରି ପାଲିତ, ବି.ଏ.ବି.ଏଲ୍, ଅନୁମୋଦକ- ବାବୁ ମଦନ ମୋହନ ପଟ୍ଟନାୟକ, ସମର୍ଥନକାରୀ -ମୁନସି ମହମ୍ମଦ ଅକବର ।

କେବଳ ତୃତୀୟ ନିର୍ଦ୍ଧାରଣ ସମ୍ବନ୍ଧରେ କିଞ୍ଚିତ ମତଭେଦ ଘଟିଥିଲା । ବାବୁ ଜାନକୀନାଥ ବସୁ ଆପତ୍ତି ଉତ୍ଥାପନ କଲେ କି ତହିଁର ଅବାନ୍ତର (୨) ପ୍ରାର୍ଥନା ଏକାବେଳେ ଉଠାଇ ଦିଆଯାଉ । ତାହା ସପକ୍ଷରେ ସେ ଯେଉଁ ହେତୁମାନ ଦର୍ଶାଇଲେ ତହିଁର ସାରମର୍ମ ଏହି ଯେ, ଉତ୍କଳ ଖଣ୍ଡ ବଙ୍ଗଦେଶରୁ ବିଚ୍ୟୁତ ହୋଇ ମଧ୍ୟପ୍ରଦେଶର ଅନ୍ତର୍ଗତ ହେବ ଏ ସମ୍ବନ୍ଧରେ ସେ କୌଣସି ବିଶ୍ୱାସଯୋଗ୍ୟ ପ୍ରମାଣ ପାଇ ନାହାଁନ୍ତି ବରଂ ମାନ୍ୟବର ଛୋଟଲାଟ ମହୋଦୟଙ୍କ ବ୍ୟବସ୍ଥାପକ ସଭାରେ ଏହି ପ୍ରଶ୍ନ ଉତ୍ଥାପିତ ହେଲାରୁ ଗବର୍ଣ୍ଣମେଣ୍ଟ ଯେଉଁ ଉତ୍ତର ପ୍ରଦାନ କଲେ ସେଥିଲେ ଆମ୍ଭମାନଙ୍କର ଆଶଙ୍କିତ ହେବାର କୌଣସି କାରଣ ନାହିଁ । ପାଇଓନିୟର ସମ୍ବାଦପତ୍ରରେ ଏ ସମ୍ବନ୍ଧରେ ଯାହା ବାହାରିଅଛି ତାହା କେବଳ

କଳ୍ପନା, ସୁତରାଂ ତହିଁର କଳ୍ପନା ବର୍ତ୍ତମାନ ନିଷ୍ପ୍ରୟୋଜନ । ଜଣେ ରୁଗ୍‌ଣ ଛୋଟଲାଟ ବଙ୍ଗ ଦେଶରେ ଏଡେ ବଡ ଶାସନ ଭାର ଗ୍ରହଣ କରି ପାରିବେ ନାହିଁ, ଏହା କୌଣସି କାର୍ଯ୍ୟର କଥା ନୁହେଁ, କାରଣ ଆମ୍ଭେମାନେ ସମସ୍ତେ ଜାଣୁ ଯେ ସାର ଚାର୍ଲସ ଇଲିୟଟଙ୍କ ପରି ଆଉ ଜଣେ କେହି ଛୋଟଲାଟ ହେଲେ ଓଡିଶାର ଦୁଇ ଏତିକି ବଙ୍ଗଦେଶରେ ସାମିଲ ହେଲେ ସୁଦ୍ଧା ସେ ଉକ୍ତ ରାଜ୍ୟର ଶାସନ ଭାର ଗ୍ରହଣ କରିବାକୁ ପଶ୍ଚାତ୍‌ପଦ ହେବେ ନାହିଁ । ବକ୍ତା ମହାଶୟ ସ୍ଥାନୀୟ କର୍ମଚାରୀଙ୍କ ମତ ଯେତେଦୂର ଜାଣି ପାରିଅଛନ୍ତି ସେଥିରୁ ତାଙ୍କର ଏହି ବିଶ୍ୱାସ ଯେ ଗଞ୍ଜାମ ଓ ସମ୍ବଲପୁର ଓଡିଶା ଭୁକ୍ତ ହେଲେ ଓଡିଶା ଶାସନ ସେପରି କିଛି ଦୁରୂହ ବ୍ୟାପାର ହେବନାହିଁ । ଏପରି ସ୍ଥଳରେ ପ୍ରାୟ ଏକଶତ ବର୍ଷ ହେଲା ଓଡିଶା ନିର୍ବିବାଦରେ ବଙ୍ଗଦେଶର ଅନ୍ତର୍ଗତ ହୋଇ ଆସୁଥିବା ସ୍ଥଳେ ବର୍ତ୍ତମାନ ତାହାର ପୃଥକ ଶାସନ ବିଷୟକ ପ୍ରାର୍ଥନା ଆଦୌ ଯୁକ୍ତିସଙ୍ଗତ ନୁହେ ବରଂ ଗବର୍ଣ୍ଣମେଣ୍ଟଙ୍କୁ ଏପରି ପ୍ରାର୍ଥନାକଲେ ସେ ବୁଝିବେ ଯେ ଓଡିଶାବାସୀଏ ପ୍ରକୃତରେ ବଙ୍ଗଦେଶରୁ ପୃଥକ ହେବାକୁ ଚାହାନ୍ତି । ଜାନକୀବାବୁଙ୍କ ଆପତ୍ତି ବିରୁଦ୍ଧରେ ଶ୍ରୀଯୁକ୍ତ ବାବୁ ମଧୁସୂଦନ ଦାସ ଯେଉଁ ବକ୍ତୃତା କଲେ, ତାହାର ଭାବ ଏହିଯେ ଆସାମ ସମୟରେ ବଙ୍ଗଳା ପ୍ରଦେଶ ଅନ୍ତର୍ଗତ ଥିଲା । ବର୍ତ୍ତମାନ ଆସାମ ତହିଁରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ । ଚାଟଗାଁ ଆଜିଯାଏ ବଙ୍ଗଳା ଗବର୍ଣ୍ଣମେ[ଙ୍କ ଅଧୀନ । କିନ୍ତୁ ବର୍ତ୍ତମାନ ତାହାକୁ ସୁଦ୍ଧା ବଙ୍ଗରୁ ବିଚ୍ୟୁତ କରିବାର ସୂଚନା ଦେଖା ଯାଉଅଛି । ଏପରି ସ୍ଥଳରେ ପାଇଓନିୟର ପ୍ରଚାରିତ 'ଓଡିଶା ମଧ୍ୟପ୍ରଦେଶର ଅନ୍ତର୍ଗତ ହେବା' କଥା ନିତାନ୍ତ ଅମୂଳକ ନୁହେ । ଆମ୍ଭମାନଙ୍କର ଏ ବିଷୟରେ ନିତାନ୍ତ ଆଶଙ୍କା ହେବାରୁ ବର୍ତ୍ତମାନ ଆମ୍ଭମାନଙ୍କର ଏପରି ପ୍ରାର୍ଥନା କୌଣସିମତେ ଅସଙ୍ଗତ ନୁହେ ଯେ, ନିତାନ୍ତ ପକ୍ଷେ ଓଡିଶା ଯେବେ ବଙ୍ଗଦେଶରୁ ବିଚ୍ଛିନ୍ନ ହୁଏ ତେବେ ଏହାର ଏକ ପୃଥକ ଶାସନ କରାଯାଉ । ଛୋଟଲାଟ ନିୟୋଗ କ୍ଷମତା ଆମ୍ଭର କିମ୍ବା ଜାନକୀବାବୁଙ୍କର ଅଥବା ଏହି ସଭାର ନାହିଁ । ସୁତରାଂ ଏ ସମ୍ବନ୍ଧରେ ଜାନକୀବାବୁଙ୍କର ମତ ଆମ୍ଭେମାନେ ଗ୍ରହଣ କରି ନ ପାରୁଁ । ପରେ ଜାନକୀବାବୁଙ୍କର ଆପତ୍ତି ଶ୍ରୀଯୁକ୍ତ ବାବୁ ସୁରେଶ ଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ଦ୍ୱାରା ସମର୍ଥିତ ହେଲାରୁ ସଭାପତିଙ୍କ ଆଦେଶକ୍ରମେ ଏଥି ସମ୍ବନ୍ଧରେ ସଭାର ମତାମତ ନିଆଗଲା । ପାଞ୍ଚ ସାତ ଜଣ ମାତ୍ର ଜାନକୀବାବୁଙ୍କ ଆପତ୍ତି ସପକ୍ଷରେ ମତ ପ୍ରଦାନ କରିଥିଲେ, ତଦ୍‌ଭିନ୍ନ ପ୍ରାୟ ସମସ୍ତେ ଏହା ବିରୁଦ୍ଧରେ ମତ ପ୍ରଦାନ କଲାରୁ ତାହା ଅଗ୍ରାହ୍ୟ ହୋଇ ଉତ୍‌ଥାପିତ ପ୍ରସ୍ତାବ ସଭା କର୍ତ୍ତୃକ ଗୃହୀତ ହେଲା ।

**ଉପାଦାନ ପଞ୍ଜିକା :**

୧) Amos sutton: Orissa and its evangelization ଉଦ୍ଧୃତ – ମିଶ୍ର, ଶ୍ରୀନିବାସ : ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ ୧୯୯୫ (୧୯୬୮) : ପୃ-୩୧

୨) Mohanty, Nivedita: Oriya Nationalism quest for a united Orissa, 1982 Manohar publication New Delhi. PP-17-18

୩) ମିଶ୍ର, ଗୋପାଳ ଚନ୍ଦ୍ର : ଓଡ଼ିଶାର ବିକାଶରେ ପତ୍ରପତ୍ରିକାର ପ୍ରଭାବ ୧୯୭୯: ପୃଂ-୨୧, ଗ୍ରନ୍ଥ ପ୍ରକାଶନୀ, କଟକ

୪) ସାମନ୍ତରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ -୧୯୮୩ (୧୯୬୪)- ପୃ-୨୧, ଗ୍ରନ୍ଥ ପ୍ରକାଶନୀ, କଟକ ।

୫) Risley circular of 3 December 1903, No-3678 Para-2

୬) George chesney, Indian Polity, pp-118, London. Quated Patra, S.C., Formation of the province of Orissa, 1979, Punthi Pustak, Calcutta.

୭) ତତ୍ରୈବ - ପୃ- ୧୨୩

୮) ଉତ୍କଳ ଦୀପିକା ୪/୧୧, ୧୩.୩.୧୮୬୯ ।

୯) ନନ୍ଦ, ଫଣୀନ୍ଦ୍ରଭୂଷଣ, ସମ୍ବଲପୁର ହିତୈଷିଣୀ : ଏକ ଅଧ୍ୟୟନ ୨୦୦୨, ପୃ-୬୯, ଅପୂର୍ବା- ଭୁବନେଶ୍ୱର

୧୦) ସମ୍ବଲପୁର ହିତୈଷିଣୀ ୬/୩୪, ୨୩-୧-୧୮୯୫ ।

୧୧) ତତୈବ ୬/୩୮, ୨୦-୨-୧୮୯୫ ।

୧୨) ଉତ୍କଳ ଦୀପିକା ୮/୪୧, ୧୮-୧୦-୧୮୭୩ ପୃ-୧୬୪ ।

୧୩) ସମ୍ବାଦବାହିକା - ୧୬-୧୦-୧୮୭୩ ।

୧୪) ଉତ୍କଳ ଦୀପିକା - ୨୭-୨-୧୮୭୫ ପୃ-୩୬)

୧୫) ଉତ୍କଳ ଦୀପିକା - ୪-୧୦-୧୮୭୯ ପୃ-୧୫୯

୧୬) Two Bachelors of Arts : The Oriya Movement 1996(1919) . PP-32, Bharat Bharati, Cuttack.

୧୭) ଦାଶ, ଦେବେନ୍ଦ୍ର କୁମାର (ସଂ) ୨୦୦୫: ଉତ୍କଳ ସମ୍ମିଳନୀ (୧୯୦୩-୧୯୩୬) ପ୍ରଥମ ଭାଗ : ପୃ-ଣ, ପ୍ରଗତି ଉତ୍କଳ ସଂଘ, ରାଉରକେଲା ।

୧୮) ଉତ୍କଳ ଦୀପିକା ୨୩।୪୫, ୨୪-୧୧-୧୮୮୮, ପୃ- ୩୫୯

୧୯) ଓଡ଼ିଶାର ବିକାଶରେ ପତ୍ରପତ୍ରିକାର ପ୍ରଭାବ । ପୃ-୩୧

୨୦) ସମ୍ବଲପୁର ହିତୈଷିଣୀ ୬/୩୫, ୩୦।୧।୧୮୯୫

୨୧) ତତ୍ରୈବ ୬/୩୪, ୨୩-୧-୧୮୯୫

୨୨) ତତ୍ରୈବ ୬/୧୨,୨୨-୮-୧୮୯୪

୨୩) ତତ୍ରୈବ, ୬-୧୦-୧୮୯୪

୨୪) ତତ୍ରୈବ,୬-୩-୧୮୯୫

୨୫) ତତ୍ରୈବ,୬-୨-୧୮୯୫

୨୬) ତତ୍ରୈବ,୧୩-୨-୧୮୯୫

୨୭) ତତ୍ରୈବ,୧୩-୨-୧୮୯୫

୨୮) Central Provinces secretariate (General) - 1894 No - 3917 dt 4-9-1894: ପରିଶିଷ୍ଟ - ୪ ରେ ସଂଯୁକ୍ତ

୨୯) ତତ୍ରୈବ

୩୦) Letter No - 5599 dt. 13th August - 184 forwarded to the Deputy Commissioner Sambalpur from commissioner Chhatisgarh Division.

୩୧) ଉତ୍କଳଦୀପିକା ୬-୭-୧୮୯୫

୩୨) ସମ୍ବଲପୁର ହିତୈଷିଣୀ ୭/୨-୩, ୧୨-୧୯-ଜୁନ୍-୧୮୯୫ ।

୩୩) ତତ୍ରୈବ ।

୩୪) ଉତ୍କଳ ଦୀପିକା ୨୨-୬-୧୮୯୫

୩୫) Mishra, P.K. The political History of Orissa (1900-1936) , 1979, Oriental Publishers & Distributors, New Delhi, PP-27

୩୬) ସମ୍ବଲପୁର ହିତୈଷିଣୀ ୧୪।୫, ୩୦-୭-୧୯୦୨

୩୭) ରାୟ, ଦୁର୍ଗାଚରଣ, ରାଧାନାଥ - ଜୀବନୀ, ୧୯୯୮ (୧୯୪୧) ପୃ- ୪୪୧-୪୪୭, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।

୩୮) ତତ୍ରୈବ - ପୃ- ୪୪୪-୪୪୫ ।

୩୯) ତତ୍ରୈବ- ପୃ- ୧୩୦ ।

୪୧) ଉତ୍କଳ ଦୀପିକା - ୨୪-୧-୧୯୦୩ ।

୪୨) ତତ୍ରୈବ - ୨୫-୪-୧୯୦୩ ।

# ଊନବିଂଶ ଶତାବ୍ଦୀର ପତ୍ରିକା ଓ ଓଡିଆ ଅସ୍ମିତା

ପତ୍ରପତ୍ରିକା ଆଧୁନିକ ସମାଜର ବାର୍ତ୍ତାବହ, ସଂସ୍କୃତିର ଓ ପରମ୍ପରାର ବାହକ ଏବଂ ଜନମତର ପ୍ରଖ୍ୟାପକ । ଯେଉଁ ସଂସ୍କୃତି ମୌଖିକ ପରମ୍ପରା ଭାବରେ ସଂଚରିତ ହେଉଥିଲା ତାହା ପତ୍ରପତ୍ରିକା ମାଧ୍ୟମରେ ପରିବ୍ୟାପ୍ତ ଓ ଲିଖିତ ରୂପ ନେଇ ଯୁଗଯୁଗ ପାଇଁ ସଂରକ୍ଷିତ ହୋଇ ରହିଲା । ମୌଖିକ ପରମ୍ପରା ସ୍ୱଳ୍ପ ଗତିସଂପନ୍ନ ଓ ଲୋକାନୁସାରୀ ଥିଲାବେଳେ ଲିଖିତ ପରମ୍ପରା ଗତିଶୀଳ ଏବଂ ପରିବ୍ୟାପ୍ତ ଜନସଚେତନତାର ବାହକ ହେଲା । ମଣିଷର ଅସ୍ମିତା ପ୍ରତିଷ୍ଠା ସହ ତେଣୁ ପତ୍ରପତ୍ରିକାର ସମ୍ପର୍କ ଘଟିଛି । ବ୍ୟକ୍ତି ତଥା ଜାତି ଚେତନାର ଦୃଢ଼ୀଭୂତ ପ୍ରତିଭୂ ରୂପେ ପତ୍ରପତ୍ରିକା ବିଶ୍ୱସମୁଦାୟରେ ମୁଖ୍ୟତଃ ଊନବିଂଶ ଶତାବ୍ଦୀରେ ପ୍ରତିଷ୍ଠା ଲାଭ କଲା ।

ଜର୍ମାନର ଜୋହାନ୍ ଗୁଟେନବର୍ଗ ୧୪୪୦ ମସିହାରେ ମୁଦ୍ରାଯନ୍ତ୍ରର ଉଦ୍ଭାବନ କରି ୟୁରୋପର ସାଂସ୍କୃତିକ ବାତାବରଣକୁ ଋଦ୍ଧିମନ୍ତ କରିଥିଲେ । ୟୁରୋପର ନବଜାଗରଣ (ରେନାସାଁ)ରେ ଏହି ଯନ୍ତ୍ର ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଏହି ପ୍ରସଙ୍ଗରେ ୧୩ ।୧୧। ୧୮୮୯ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ନିମ୍ନ ସମ୍ବାଦ ପ୍ରାସଙ୍ଗିକ:

ବର୍ତ୍ତମାନ ଏ ଦେଶକୁ ଛାପାକଳ ଆସିବାରୁ ପୁସ୍ତକ ପ୍ରଚାରର ଅଧିକତର ସୁବିଧା ହୋଇଅଛି ଏବଂ ପୂର୍ବକାଳୀନ ମହାତ୍ମାମାନଙ୍କ ଅମୃତମୟ କଣ୍ଠ ବିନିଃସୃତ କାବ୍ୟ ପୁରାଣାଦି ପୁସ୍ତକମାନ ତାଳପତ୍ର ଲେଖାରେ ଥିବାରୁ ଦିନ ଦିନ ବିଲୋପୋନ୍ମୁଖୀ ହେଉଥିଲା । ଲୋକମାନେ ତହିଁର ସାର ଗ୍ରହଣ କରି ନ ପାରିବାରୁ ଅନାଦୃତ ହେଉଥିଲା । ଏବେ ସେ ବିଲୋପ ଆଶଙ୍କା ଏକ ପ୍ରକାର ବିଦୂରୀତ ହୋଇଅଛି । ଲୋକମାନଙ୍କର ତତ୍‌ପତି ରଚି ବର୍ଦ୍ଧିତ ହୋଇଅଛି । ଏହି ହେତୁରୁ ଅନେକ ପ୍ରାଚୀନ ଶାସ୍ତ୍ର ପରିଶୋଧିତ ହୋଇ ପ୍ରକାଶିତ ହୋଇଅଛି ମାତ୍ର ଉତ୍କଳର ପୁସ୍ତକ ପ୍ରଚାର ବିଷୟ ଆଲୋଚନା କଲେ ଦୁଃଖିତ ହେବାକୁ ହୁଏ । ବଙ୍ଗଳା ପ୍ରଦେଶର ଖଣ୍ଡେ କ୍ୟାଟେଲଗ ତୁଲ୍ୟ ପରିମାଣ ବିଶିଷ୍ଟ ଖଣ୍ଡେ ଉପଯୋଗୀ ପୁସ୍ତକ ଉତ୍କଳାକ୍ଷରରେ ମିଳିବା ଅସମ୍ଭବ । ତାହା ପୁଣି ବିକ୍ରୟ ହେବା କଷ୍ଟକର । ସ୍ୱଦେଶୋନ୍ନତି କାର୍ଯ୍ୟରେ ଲୋକମାନଙ୍କର ଏପରି ଅରଚି ଅଶୋଭନୀୟ ଅଟଇ ।

ସର୍ବଦା ନାନାବିଧ ପୁସ୍ତକ ଆଲୋଚନା କଲେ ମନର ଏକାଗ୍ରତା ଜନ୍ମି ମନୁଷ୍ୟ ବହୁଦର୍ଶିତା ଲାଭ କରିପାରଇ । କିନ୍ତୁ ପୁସ୍ତକ ପ୍ରକାଶିତ ନ ହେଲେ ମନୁଷ୍ୟମାନେ ଉପରୋକ୍ତ ଉପକାରମାନ ପ୍ରାପ୍ତ ହୋଇ ସଂସାରର ମହା ମହା ବିଦ୍ୱଜ୍ଜନଙ୍କ ବୁଦ୍ଧିର ସାରତ୍ୱ ଲାଭ କରି ନ ପାରନ୍ତେ । ସୁତରାଂ ପୁସ୍ତକ ପ୍ରଚାର ଦ୍ୱାରା ଆମ୍ଭମାନଙ୍କର ପ୍ରଭୂତ ଉପକାର ସାଧିତ ହେଉଅଛି ଏହି ଉପକାର ଜନକ କାର୍ଯ୍ୟରେ ସମସ୍ତଙ୍କର ପୂର୍ଣ୍ଣ ସହାନୁଭୂତି ଦର୍ଶାଇବା ଉଚିତ କାର୍ଯ୍ୟ ଅଟଇ ।

ମିସ୍‌ନାରୀ ପାଦ୍ରୀମାନଙ୍କ ଧର୍ମପ୍ରଚାରର ଉଦ୍ଦେଶ୍ୟ ଯୋଗୁ ୧୮୩୭ ମସିହାରେ ଓଡ଼ିଶାର କଟକଠାରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ହୋଇଥିଲା ଓ ଏହା ଓଡ଼ିଶା ମିଶନ୍ ପ୍ରେସ୍ ନାମରେ ସୁପରିଚିତ । ପାଦ୍ରୀମାନଙ୍କର ଉଦ୍ଦେଶ୍ୟମୂଳକ ଚେତନା ଆନ୍ଦୋଳନ ପରବର୍ତ୍ତୀ ପର୍ଯ୍ୟାୟରେ ନିଭୃତରେ ଓଡ଼ିଆ ଅସ୍ମିତା ପ୍ରତିଷ୍ଠାର ମୁଖ୍ୟ ଅବଲମ୍ବନ ହୋଇଥିଲା । ଉନବିଂଶ ଶତାବ୍ଦୀରେ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଉଦ୍ୟମରେ ଅନେକ ମୁଦ୍ରାଯନ୍ତ୍ର କଟକ, ବାଲେଶ୍ୱର, ପୁରୀ, ବ୍ରହ୍ମପୁର, ଦେବଗଡ଼, ପାରଳାଖେମୁଣ୍ଡି ଓ ଅନ୍ୟାନ୍ୟ ଅନେକ ସହରରେ ପ୍ରତିଷ୍ଠିତ ହୋଇଥିଲା । ଏହି ପ୍ରସଙ୍ଗରେ ଓଡ଼ିଶା ମିଶନ ପ୍ରେସ୍ ପରବର୍ତ୍ତୀ ପର୍ଯ୍ୟାୟରେ ଗୌରୀଶଙ୍କର ରାୟଙ୍କ ଦ୍ୱାରା ୧୮୬୫ରେ କଟକ ପ୍ରିଣ୍ଟିଂ କମ୍ପାନୀ, ୧୮୬୮ରେ ବାଲେଶ୍ୱରଠାରେ ଫକୀରମୋହନ ସେନାପତି ଓ ଅନ୍ୟମାନଙ୍କ ଦ୍ୱାରା ଉତ୍କଳ ପ୍ରିଣ୍ଟିଂ କମ୍ପାନୀ, ୧୮୭୩ ବାଲେଶ୍ୱରଠାରେ ବୈକୁଣ୍ଠନାଥ ଦେଙ୍କ ପ୍ରଚେଷ୍ଟାରେ ବାଲେଶ୍ୱର ଦେ'ଜ୍ ପ୍ରେସ୍ , ୧୮୭୩ କଟକଠାରେ କାଳିପଦ ବନ୍ଦୋପାଧ୍ୟାୟଙ୍କ ଉତ୍କଳ ହିତୈଷିଣୀ ପ୍ରେସ, ୧୮୭୪ ପୁରୀଠାରେ ଗୋପାଳଚନ୍ଦ୍ର ଚାଟାର୍ଜୀଙ୍କ ଭକ୍ତିପ୍ରଦାୟିନୀ ଯନ୍ତ୍ରାଳୟ, ୧୮୭୬ ବ୍ରହ୍ମପୁରଠାରେ ଶ୍ରୀ ମାନ୍ଦାପଲ୍ଲୀଙ୍କ ଶ୍ରୀମାରତାମୃତ ପ୍ରେସ୍, ୧୮୭୯ ମସିହାରେ ମୟୂରଭଞ୍ଜ ପ୍ରେସ, ୧୮୮୫ କଟକଠାରେ ଜଗନ୍ନାଥ ରାଓଙ୍କ ଦ୍ୱାରା ଭିକ୍ଟୋରିଆ ପ୍ରେସ୍, ୧୮୮୫ କଟକରେ ବାସୁଦେବ ସୁଢ଼ଳଦେବଙ୍କ ଉଦ୍ୟମରେ ସୁଢ଼ଳ ପ୍ରେସ୍, ୧୮୮୬ ଦେବଗଡଠାରେ ସାର ବାସୁଦେବ ସୁଢ଼ଳଦେବଙ୍କ ଜଗନ୍ନାଥ ବଲ୍ଲଭ ପ୍ରେସ, ୧୯୯୩ରେ ଅରୁଣୋଦୟ ପ୍ରେସ୍, ରାୟ ପ୍ରେସ୍ ୧୮୯୪(ସୀତାନାଥ୍ୟାରାୟ), ୧୮୯୪ ପାରଳାଖେମୁଣ୍ଡିଠାରେ ରାଜ ବା ଗଣପତି ପ୍ରେସ୍, ୧୮୯୯ ବ୍ରହ୍ମପୁରଠାରେ ଗୁନ୍ନିୟା ଶାସ୍ତ୍ରୀଙ୍କ ସାରସ୍ୱତ ପ୍ରେସ୍, ୧୮୯୮ ଦର୍ପଣୀଠାରେ ଦର୍ପଣ ପ୍ରେସ୍, ୧୮୯୯ ବାଲେଶ୍ୱରଠାରେ ବିନୋଦ ପ୍ରେସ ପ୍ରତିଷ୍ଠିତ ହୋଇଥିଲା । ଏହି ପ୍ରେସ୍ ପ୍ରତିଷ୍ଠା ସହିତ ବିଭିନ୍ନ ଅଞ୍ଚଳରେ ଜନସଚେତନତା ପରିବ୍ୟାପ୍ତ ହୋଇଥିଲା ଏବଂ ଅନେକ ପତ୍ରିପତ୍ରିକା ଲୋକଲୋଚନକୁ ଆସିଥିଲା ।

ଅସ୍ମିତା (ମୁଁ), ଜାତୀୟତା (ମୋ ଜାତି) ଓ ବିଶ୍ୱଦୃଷ୍ଟି (ବିଶ୍ୱ ସହିତ ସମ୍ପୃକ୍ତି)ର ସନ୍ତୁଳନ ହିଁ ପ୍ରତିଟି ଉଚ୍ଚାଙ୍ଗ ପତ୍ରପତ୍ରିକାର ମୂଳଲକ୍ଷ୍ୟ । ଜନଚେତନାର ବିଶ୍ୱଚେତନା ସହିତ ସଂଘର୍ଷ, ଦେଶୀୟ ଭାଷାର ଶାସ୍ତ୍ରୀୟ ଭାଷା ସହିତ ସଂଘର୍ଷ, କ୍ଷମତାର ଭାଷା ସହିତ ଲୋକଭାଷାର

ସଂଘର୍ଷରୁ ଏକ ମଧ୍ୟମ ପନ୍ଥାର ଅବଗାହନ କରିଥିଲା ପତ୍ରପତ୍ରିକା । ତେଣୁ ପତ୍ରପତ୍ରିକା ସମୂହ ଜନଚେତନାର ବିଭିନ୍ନ ରୂପାଙ୍ଗିକକୁ ନେଇ ବିକଶିତ ଓ ପ୍ରତିଷ୍ଠିତ । ଏହି ରୂପାଙ୍ଗିକଗୁଡ଼ିକ ଧର୍ମ, ସାହିତ୍ୟ, ବ୍ୟବସାୟ, କୃଷି, ଚିକିତ୍ସା, ବିଜ୍ଞାନ, ଖେଳ, ନାରୀ ସମସ୍ୟାକୁ ନେଇ ଋଦ୍ଧିମନ୍ତ ହୋଇଛି । ଏହି ସଂଘର୍ଷମୂଳକ ପ୍ରକ୍ରିୟା ସାଧାରଣ ଜନଜୀବନକୁ ଗତିଶୀଳ ଓ କର୍ମପ୍ରବଣ କରିଛି । ଦୈନିକ, ସାପ୍ତାହିକ, ପାକ୍ଷିକ, ମାସିକ, ଦ୍ୱିମାସିକ, ତ୍ରିମାସିକ ଓ ବାର୍ଷିକ ରୂପରେ ପତ୍ରପତ୍ରିକା ସମୂହ ଲୋକଙ୍କ ପାଖରେ ପହଞ୍ଚିଛି । ମୌଖିକ ସାହିତ୍ୟ ମୁଦ୍ରିତ ରୂପ ଗ୍ରହଣ କରିଛି । ସାହିତ୍ୟର ସାମାଜିକୀକରଣ ହୋଇ ତାହା ପହଞ୍ଚିଛି ଲୋକଙ୍କ ପାଖରେ । ବିଭିନ୍ନ ଘଟଣା, ବିତର୍କ ଓ ସମସ୍ୟାକୁ ନେଇ ପତ୍ରପତ୍ରିକା ନିଜର ନିରପେକ୍ଷ ମତ ମାଧ୍ୟମରେ ଲୋକ ସମୁଦାୟର ଚେତନାକୁ ସ୍ପର୍ଶ କରିଛି । ଓଡ଼ିଆ ପତ୍ରପତ୍ରିକାର ବିବର୍ତ୍ତନକୁ ଲକ୍ଷ୍ୟ କଲେ ଦେଖାଯାଏ ୧୮୪୯ରେ ସି. ଲେସିଙ୍କ ଦ୍ୱାରା ପ୍ରକାଶିତ ଜ୍ଞାନାରଣଠାରୁ ଆଜିପର୍ଯ୍ୟନ୍ତ ଅସଂଖ୍ୟ ପତ୍ରପତ୍ରିକା ପ୍ରକାଶ ପାଇଛି । ଏମାନଙ୍କୁ ପ୍ରସଙ୍ଗଭିତ୍ତିକ ବା ଆଭିମୁଖ୍ୟଭିତ୍ତିକ ଆଲୋଚନା କଲାବେଳେ ଅନେକ ସମସ୍ୟା ସୃଷ୍ଟି ହେବାର ସମ୍ଭାବନାକୁ ଏଡାଇ ଦିଆଯାଇ ନ ପାରେ । ଏଣୁ କାଳାନୁକ୍ରମରେ ପତ୍ରପତ୍ରିକାର ବିବର୍ତ୍ତନ ସେମାନଙ୍କର ଆଭିମୁଖ୍ୟ ଓ ଅବଦାନକୁ ଆଲୋଚନା କରିବା ସହିତ ବିଭିନ୍ନ ରୂପାଙ୍ଗିକକୁ ନେଇ ଗଢ଼ି ଉଠିଥିବା ପ୍ରମୁଖ ପତ୍ରପତ୍ରିକା ଉପରେ ବିଶେଷ ଦୃଷ୍ଟି ଦିଆଯାଇଛି । ଆଲୋଚନାର ସୁବିଧା ଦୃଷ୍ଟିରୁ ଊନବିଂଶ ଶତାବ୍ଦୀର ଓଡ଼ିଆ ପତ୍ରପତ୍ରିକାର ବିବର୍ତ୍ତନକୁ ପ୍ରସଙ୍ଗଭିତ୍ତିକ ପତ୍ରପତ୍ରିକାର ଉନ୍ମେଷ, ବିକାଶଧାରା କ୍ରମରେ ଆଲୋଚନା କରାଯାଇପାରେ । ଏହି ପ୍ରସଙ୍ଗରେ ଧର୍ମ ଓ ସମ୍ବାଦପତ୍ର, ସାହିତ୍ୟ, ଚିକିତ୍ସା, ବ୍ୟବସାୟ ଓ ନାରୀ ସମ୍ପାଦିତ କ୍ରମରେ ଓଡ଼ିଆ ପତ୍ରପତ୍ରିକାକୁ ଆଲୋଚନା କରାଯାଇଛି ।

### ୧) ଧର୍ମ ଓ ସମ୍ବାଦ ଭିତ୍ତିକ ପତ୍ରପତ୍ରିକା :

ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର ଓ ଲୋକଙ୍କ ମଧ୍ୟରେ ସଚେତନତା ଜାଗ୍ରତ ପାଇଁ ମିଶନାରୀମାନଙ୍କ ଉଦ୍ୟମରେ ପ୍ରାରମ୍ଭିକ ପର୍ଯ୍ୟାୟରେ ତିନୋଟି ପତ୍ରିକା ପ୍ରକାଶ ପାଇଥିଲା । ସି.ଲେସୀଙ୍କ ସମ୍ପାଦନାରେ ୧୮୪୯ରେ 'ଜ୍ଞାନାରଣ', ଡବ୍ଲ୍ୟୁ ସି. ଲେସୀଙ୍କ ସମ୍ପାଦନାରେ ୧୮୫୬ରେ 'ପ୍ରବୋଧ ଚନ୍ଦ୍ରିକା' ଏବଂ ଖ୍ରୀଷ୍ଟିଆନ୍ ଭର୍ଣ୍ଣାକୁଲାର ଲିଟ୍ରେଚର ସୋସାଇଟି ଦ୍ୱାରା ୧୮୬୧ରେ 'ଅରୁଣୋଦୟ' ପତ୍ରିକା ପ୍ରକାଶ ପାଇଥିଲା । ଧର୍ମମୂଳକ ଆଲୋଚନା ସହିତ ସାମୟିକ ସମ୍ବାଦ ଏହି ସମସ୍ତ ପତ୍ରିକାରେ ପ୍ରକାଶ ପାଇଥିଲା । ଓଡ଼ିଆ ଲୋକଙ୍କୁ ପତ୍ରିକା ମାଧ୍ୟମରେ ଜ୍ଞାନାଲୋକ ପରିବେଷଣ ଲେସୀ ସାହେବଙ୍କର ଲକ୍ଷ୍ୟ ଥିଲା । ଏହି ଲକ୍ଷ୍ୟ ପୂରଣ ପାଇଁ ସେ ବଙ୍ଗ ସରକାରଙ୍କୁ ଓଡ଼ିଆ ପତ୍ରିକା ପ୍ରକାଶନ ପାଇଁ ଆର୍ଥିକ ସାହାଯ୍ୟ ମାଗିଥିଲେ ଏବଂ ସେହି ଆର୍ଥିକ ସାହାଯ୍ୟ ବଳରେ ପ୍ରବୋଧ ଚନ୍ଦ୍ରିକା ପ୍ରକାଶ ପାଇଥିଲା ।

ପ୍ରବୋଧ ଚନ୍ଦ୍ରିକା ପ୍ରଥମ ସଂଖ୍ୟାର ସମ୍ପାଦକୀୟ (ଏ ପ୍ରବନ୍ଧ ଚନ୍ଦ୍ରିକା ବିଷୟକ) ଲେସି ସାହେବ ଘୋଷଣା କରନ୍ତି - ଏ ପ୍ରବୋଧ ଚନ୍ଦ୍ରିକା ପ୍ରତ୍ୟେକ ଦେଶୀୟ ମାସ ଆରମ୍ଭରେ ପ୍ରକାଶିତ ହେବ । ପ୍ରତ୍ୟେକ ଖଣ୍ଡରେ କୋଡ଼ିଏ କି ପଚିଶ ପୃଷ୍ଠା ଛାପା ହେବ । ପ୍ରଥମରେ ଦେଶୀୟ ମହାବିଜ୍ଞ ପୁରାତନ କୌଣସି ପଣ୍ଡିତ କର୍ତ୍ତୃକ ରଚିତ ଆଉ ଉତ୍ତମ ଶିକ୍ଷାଦାୟକ ଗ୍ରନ୍ଥ ନତୁବା ବଙ୍ଗଦେଶୀୟ ବିଦ୍ୱଜ୍ଜନଗଣ କର୍ତ୍ତୃକ ନାନା ସମୟରେ ଯେଉଁ ଉତ୍ତମ ଉତ୍ତମ ପୁସ୍ତକ ପ୍ରକାଶ ହୋଇଅଛି କିମ୍ବା ଆଗାମୀରେ ହେବ ତନ୍ମଧ୍ୟରୁ କୌଣସି କୌଣସି ପୁସ୍ତକ ଆଦ୍ୟପ୍ରାନ୍ତ କ୍ରମେ କ୍ରମେ ଏ ପ୍ରବୋଧ ଚନ୍ଦ୍ରିକାରେ ପ୍ରକାଶ କରାଇବାର ମାନସ ଅଛି । ତଦ୍ଭାଦ ଅନନ୍ୟ ମନୋରଞ୍ଜକ ଆଉ ନୀତିଶିକ୍ଷାଦାୟକ ବୃତ୍ତାନ୍ତ କିମ୍ବା ବିଶିଷ୍ଟ ମହାତ୍ମାମାନଙ୍କ ଜୀବନ ବିବରଣ ଅଥବା ଶିଳ୍ପ ଇତ୍ୟାଦି ବିଦ୍ୟା ସମ୍ବନ୍ଧୀୟ ପ୍ରସଙ୍ଗ ପ୍ରକାଶ କରାଯିବ । ଶେଷରେ ଏ ଜିଲା ମଧ୍ୟରେ ଯେତେବେଳେ ଯେଉଂ ଘଟଣା ହେବାର ଶୁଣାଯାଏ ଏବଂ ଦେଶ ବିଦେଶରୁ ଯେଉଁ ନାନା ମହଦାଶ୍ଚର୍ଯ୍ୟ ସମ୍ବାଦ ମିଳେ ତହିଁର ସାରାଂଶ କଲିକତାଠାରୁ ପ୍ରାପ୍ତ କେତେକ ଇଂରେଜୀ ଓ ବଙ୍ଗଳା ଖବରକାଗଜରୁ ଅନୁବାଦିତ ହୋଇ ଏ ପ୍ରବୋଧ ଚନ୍ଦ୍ରିକାରେ ପ୍ରକାଶ ପାଇବ । ପୁନର୍ବାର ପ୍ରତ୍ୟେକ ଖଣ୍ଡରେ ମାସିକ ପାଞ୍ଜି ଦେବାର ମାନସ ଅଛି ।

ଅତଏବ କେଉଂ ସ୍ଥାନରେ କି ଆଶ୍ଚର୍ଯ୍ୟ କର୍ମ ହେଉଅଛି ତାହା ଶ୍ରବଣରେ ଆଉ ସୁଗଳ୍ପ ପାଠରେ ସମସ୍ତଙ୍କ ଅନ୍ତକରଣରେ ଯେଉଂ କ୍ଷଣକାଳିନ ଆହ୍ଲାଦ ଓ ହର୍ଷ ଜନ୍ମଇ ତଦ୍‌ଭିନ୍ନ ଅନେକ ନିତାନ୍ତ ଆବଶ୍ୟକ ଆଉ ଚିରଶ୍ରେୟଦାୟକ ଜ୍ଞାନ ଏ କ୍ଷୁଦ୍ର ପତ୍ରିକା ଗ୍ରହଣରେ ଏ ଦେଶୀୟ ଲୋକେ ପ୍ରାପ୍ତ ହୋଇପାରିବେ ବୋଲି ଦୃଢ଼ ପ୍ରତ୍ୟୟ ହେଉଅଛି । କୌଣସି ବିଶେଷ ଧର୍ମର ପ୍ରଚାର ଏ ପୁସ୍ତକର ଅଭିପ୍ରାୟ ନୁହଁଇ । ଏ ସକାଶେ ତାହା ଆପଣା ଆପଣା ଗୃହରେ ଗ୍ରହଣ କରି ପାଠ କଲେ କାହାରି ଇଷ୍ଟଧର୍ମ ହାନି ହେବ ଏ ପ୍ରକାର ଶଙ୍କା କେହି ନ କରିବେ ।

ଏହି ପତ୍ରିକାଗୁଡ଼ିକର କ୍ଷୀଣ ଉଦ୍ୟମ ଜନମାନସକୁ ଉଦ୍‌ବେଳିତ କରିବାରେ ସଂପୂର୍ଣ୍ଣ ଭାବରେ ଅକ୍ଷମ ଥିଲା । ଓଡ଼ିଆ ଜନମାନସର ପ୍ରକୃତ ମୁଖପତ୍ର ରୂପେ ୧୮୬୬ ମସିହା ଅଗଷ୍ଟ ମାସ ୧୧ ତାରିଖ ଶନିବାର ଦିନ ପ୍ରକାଶ ପାଇଥିଲା ପ୍ରଥମ ଓଡ଼ିଆ ସମ୍ବାଦ ସାପ୍ତାହିକୀ ଉତ୍କଳ ଦୀପିକା । ଏହାରି ଅନ୍ତରାଳରେ ଗୌରୀଶଙ୍କର ରାୟଙ୍କ ନେତୃତ୍ୱ ବିଦ୍ୟମାନ ଥିଲେ ମଧ୍ୟ ସମକାଳିନ ଶିକ୍ଷିତ ଓ ସଚେତନ ଓଡ଼ିଆଙ୍କ ମୁଖପତ୍ର ରୂପେ ଏହା ଚିରଦେଦୀପ୍ୟମାନ । ୧୮୬୪ରେ କଟକ ଦରୋଗାବଜାରରେ ଲକ୍ଷ୍ମୀନାରାୟଣ ରାୟଚୌଧୁରୀ, ଗୋପୀମୋହନ ସିଂ, ଜଗନମୋହନ ରାୟ, ବନମାଳୀ ସିଂ ଓ ଅନ୍ୟ ବହୁ ଧନାଢ୍ୟ ବ୍ୟକ୍ତିଙ୍କ ଉଦ୍ୟମରେ କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠିତ ହୋଇଥିଲା । ଏହି ଶିକ୍ଷିତ ଶ୍ରେଣୀ ଗୌରୀଶଙ୍କରଙ୍କୁ କମ୍ପାନୀର ସମ୍ପାଦକ ରୂପେ ବାଛିଥିଲେ । ୧୯୩୪ରେ

କମ୍ପାନୀ ଭାଙ୍ଗିଯାଇଥିଲା ଏବଂ ତତ୍‌ସହିତ ଉତ୍କଳ ଦୀପିକାର ମଧ୍ୟ ବିଲୟ ଘଟିଥିଲା । ଉତ୍କଳ ଦୀପିକା ପ୍ରଥମ ବର୍ଷ ୩୦ଶ ସଂଖ୍ୟା ପର୍ଯ୍ୟନ୍ତ ପଥର ଅକ୍ଷରରେ ମୁଦ୍ରିତ ହେଉଥିଲା । ୩୧ଶ ସଂଖ୍ୟା ୩.୮.୧୮୬୭ଠାରୁ ସୀସା ଅକ୍ଷରରେ ଛପାଗଲା ।

ଉତ୍କଳ ଦୀପିକା ଅନ୍ତରାଳରେ ଦୀର୍ଘ ୭୦ ବର୍ଷ ଅବଧିର ଓଡ଼ିଆ ଭାଷା ସାହିତ୍ୟ, ଧର୍ମ ସଂସ୍କୃତି, ଇତିହାସ, ବିଦେଶୀ ପ୍ରଶାସନିକ ବ୍ୟବସ୍ଥାରେ ଓଡ଼ିଆଙ୍କ ସ୍ଥିତି, ଅଭିଜାତ୍ୟ, ନବ୍ୟ ଶିକ୍ଷିତ ବର୍ଗଙ୍କ ସୁବିଧାବାଦୀ ମାନସିକତା ଓ ଭାରତ ଏବଂ ପୃଥିବୀ ସହିତ ଓଡ଼ିଆମାନଙ୍କୁ ପରିଚିତ କରାଇବାର ନିଷ୍ଠାପର ଉଦ୍ୟମ ପ୍ରକାଶ ପାଇଛି । ଓଡ଼ିଆ ଜନସମାଜର ଯଥାର୍ଥ ପ୍ରତିନିଧି ରୂପେ ଦୀପିକା ଲୋକଙ୍କ ସମସ୍ୟାକୁ ସରକାରଙ୍କ ପାଖରେ ନିବେଦନ କରିଛି ଏବଂ ସମାଧାନ ଦିଗରେ ଉଦ୍ୟମ ଜାରି ରଖିଛି । ପ୍ରାରମ୍ଭିକ ପର୍ଯ୍ୟାୟରେ ବଙ୍ଗାଳୀମାନଙ୍କ ଦ୍ୱାରା ଓଡ଼ିଆ ଭାଷା ଓ ଲିପିକୁ କବଳିତ କରିବା ଚକ୍ରାନ୍ତକୁ ଦୀପିକା ଦୃଢ଼ ହସ୍ତରେ ଦମନ କରିଛି । ଗ୍ରାମ୍ୟତା ଓ କଥିତ ଭାଷାର ଊର୍ଦ୍ଧ୍ୱରେ ଏକ ଶୁଦ୍ଧ ଓଡ଼ିଆ ଭାଷା ଗଠନ ଦିଗରେ ଦୀପିକା ପଦକ୍ଷେପ ଗ୍ରହଣ କରିଛି । ବ୍ରାହ୍ମ ଧର୍ମର ଔପଚାରିକତା ଓ ଔଦ୍ଧତ୍ୟ, କୁମ୍ଭିପଟିଆ (ଅଲେଖ ଧର୍ମ)ମାନଙ୍କର ଏକେଶ୍ୱରବାଦ ଓ ଗ୍ରାମ୍ୟ ଜୀବନ ଚର୍ଚ୍ଚା, ବ୍ରାହ୍ମଣ୍ୟବାଦର ଅହଙ୍କାର, ସମାଜ ବ୍ୟବସ୍ଥାରେ ବାଲ୍ୟ ବିବାହ, ବୃଦ୍ଧ ବିବାହ, କନ୍ୟାସୁନା ଆଦି କୁସଂସ୍କାରକୁ ବିରୋଧ କରାଯାଇଛି । ଅନ୍ୟପକ୍ଷରେ ଧର୍ମ ବିଶ୍ୱାସକୈନ୍ଦ୍ରିକ ଗ୍ରାମ୍ୟଗୀତି, ରସରୀତି ସୁଆଙ୍ଗ, ଅଶ୍ଳୀଳ ଅଭିନୟକଳା ଓ ମଧ୍ୟଯୁଗୀୟ କାବ୍ୟବର୍ଣ୍ଣିତ ଆଦିରସକୁ ଦୀପିକା ମର୍ଯ୍ୟାଦା ଦେଇଛି । ଓଡ଼ିଆ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ, ଯୋଗାଯୋଗ ବ୍ୟବସ୍ଥାର ସମୃଦ୍ଧି, ଶିକ୍ଷାର ପ୍ରସାର ମାଧ୍ୟମରେ ଓଡ଼ିଶାର ନବନିର୍ମାଣ ଓ ବିକାଶ ସମ୍ଭବ ବୋଲି ଦୀପିକା ମତପ୍ରକାଶ କରେ । ଇଂରେଜମାନଙ୍କୁ ସମୃଦ୍ଧ ଜାତି ରୂପେ ଦୃଷ୍ଟାନ୍ତ ଦେଇଛି ଦୀପିକା ଏବଂ ସେ ବିଶ୍ୱାସ କରେ ଇଂରେଜମାନଙ୍କ ଅନୁକରଣ ମାଧ୍ୟମରେ ଓଡ଼ିଆମାନଙ୍କର ବିକାଶ ସୁନିଶ୍ଚିତ । ଏହି ପ୍ରସଙ୍ଗର ବାରମ୍ବାର ଉଲ୍ଲେଖ ବ୍ରିଟିଶ ପ୍ରଶସ୍ତିର ଦୃଷ୍ଟାନ୍ତ ନୁହେଁ ବରଂ ଓଡ଼ିଆ ଜାତିର ମୁକ୍ତିବୋଧ ଓ ଅଧିକାର ପ୍ରତିଷ୍ଠାଜନିତ ଅଭିପ୍ସାର ପରିପ୍ରକାଶ । ଦୀପିକା ସମ୍ବାଦ ପରିବେଷଣରେ ଯେଉଁ ଶୈଳୀ ପ୍ରକାଶ କରିଛି ତାହା ତଥ୍ୟଗର୍ଭିତ, ଯୁକ୍ତିନିଷ୍ଠ ଓ ବ୍ୟାଖ୍ୟାନଧର୍ମୀ । ବର୍ଣ୍ଣନା ଓ କାବ୍ୟିକତାର ପଲ୍ଲବନ ଏଠାରେ ଅନୁପସ୍ଥିତ । ଅନେକ ସ୍ଥଳରେ ବ୍ୟଞ୍ଜନାଧର୍ମୀ ପରିବେଷଣ ସମ୍ବାଦଗୁଡ଼ିକୁ ରୁଚିପୂର୍ଣ୍ଣ ଲୋକପ୍ରିୟ କରିଥାଏ । ବ୍ୟାଖ୍ୟାନଧର୍ମୀ ଓ ତୀକ୍ଷ୍ଣ ଗଦ୍ୟଶୈଳୀର ପ୍ରବର୍ତ୍ତକ ରୂପେ ଦୀପିକାକୁ ଗ୍ରହଣ କରାଯାଇପାରେ । ସତ୍ୟନିଷ୍ଠତା ଦୀପିକାର ସମ୍ବାଦଗୁଡ଼ିକୁ ଐତିହାସିକ ମର୍ଯ୍ୟାଦା ପ୍ରଦାନ କରିଛି । ନିଜ ଆଦର୍ଶ ପ୍ରତି ବିଶ୍ୱସ୍ତ ଗୌରୀଶଙ୍କର ଓଡ଼ିଆ ଜନଜୀବନକୁ ଊର୍ଦ୍ଧ୍ୱକୁ ଟୋଳି ଧରିବାର ଆଭିମୁଖ୍ୟରେ ଦୀପିକାକୁ ରୂଢ଼, ବାସ୍ତବବାଦୀ ଓ ସତ୍ୟନିଷ୍ଠ ସମ୍ବାଦପତ୍ର ରୂପେ ଗଢ଼ିତୋଳିଥିଲେ । ଓଡ଼ିଶାର ନବଜାଗରଣର ପ୍ରାରମ୍ଭିକ ଶଙ୍ଖ ରୂପେ ଉତ୍କଳ ଦୀପିକା

ନିଜକୁ ପ୍ରତିଷ୍ଠିତ କରିପାରିଛି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପରିପ୍ରେକ୍ଷୀରେ ଉତ୍କଳ ଦୀପିକା ସଂଗ୍ରାମୀ ଭୂମିକା ଗ୍ରହଣ କରିଥିଲା । ଉତ୍କଳ ସମ୍ମିଳନୀ କାର୍ଯ୍ୟକ୍ରମକୁ ବହୁପ୍ରସାରୀ କରିବାରେ ଉତ୍କଳ ଦୀପିକାର ଭୂମିକା ଚିରସ୍ମରଣୀୟ । ଇଂରେଜ ପ୍ରଶାସନକୁ ଯେଉଁ ସମସ୍ତ ସ୍ମାରକପତ୍ର ପ୍ରଦାନ କରାଯାଉଥିଲା, ତାହା ଉତ୍କଳ ଦୀପିକା ପୃଷ୍ଠାରେ ପ୍ରକାଶ ପାଇ ଅପୂର୍ବ ଜନ ଆନ୍ଦୋଳନର ରୂପ ନେଉଥିଲା । ଏ ପ୍ରସଙ୍ଗରେ ଦୀପିକାରେ ପ୍ରକାଶିତ ସ୍ମରଣଯୋଗ୍ୟ କାଟିଙ୍ଗା ରାଜା ଭେଙ୍କେଟେଶ୍ ବେଉଙ୍କ ପତ୍ର କରାଗଲା । ଯାହାକି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କିତ ପ୍ରଥମ ସ୍ମାରକପତ୍ର । (ଦ୍ରଷ୍ଟବ୍ୟ - ପରିଶିଷ୍ଟ - ୧ ସ୍ମାରକପତ୍ର ଅନ୍ତରାଳରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ୱର ଓ ସ୍ୱାକ୍ଷର)

୧୮୬୮ ଜୁଲାଇ ମାସରେ ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା ମାସିକ ପତ୍ରିକା ବାଲେଶ୍ୱରଠାରେ ପ୍ରକାଶ ପାଇଥିଲା । ଏହି ସମ୍ବାଦପତ୍ରର ବୋଧଦାୟିନୀ ଭାଗ ସାହିତ୍ୟକୁ ଆଧାର କରିଥିବାର ସୂଚନା ମିଳିଥିଲେ ମଧ୍ୟ ବୋଧଦାୟିନୀର ସ୍ପଷ୍ଟ ରୂପ ଦେଖାଯାଏ ନାହିଁ । ଯଦିଓ ବୋଧଦାୟିନୀରେ ଫକୀରମୋହନ ନିଜର 'ଲଛମନିଆ' ଗପକୁ ପ୍ରକାଶ କରିଥିବା ଆତ୍ମଜୀବନ ଚରିତରେ ଘୋଷଣା କରିଛନ୍ତି ତଥାପି ପତ୍ରିକାର ଦୁଷ୍ପ୍ରାପ୍ୟତା ଯୋଗୁ ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ମତ ଦିଆଯାଇ ନ ପାରେ । ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା ଶୀର୍ଷକରେ ପ୍ରକାଶିତ ଏହି ପତ୍ରିକା ୩ ବର୍ଷ ପରେ ପାକ୍ଷିକ ରୂପେ ଲୋକଲୋଚନକୁ ଆସେ । ୧୮୭୨ ମସିହା ଜୁନ୍ ମାସ ବେଳକୁ କେବଳ ବାଲେଶ୍ୱର ସମ୍ବାଦବାହିକା ନାମରେ ପତ୍ରିକାଟି ପ୍ରକାଶିତ ହୁଏ । ନଭେମ୍ବର୧୮୭୩ରୁ ଜୁଲାଇ ୧୮୭୪ ପର୍ଯ୍ୟନ୍ତ ପତ୍ରିକାଟି ବନ୍ଦ ରହି ସେହି ବର୍ଷ ଅଗଷ୍ଟ ମାସରୁ ପୁନଶ୍ଚ ସାପ୍ତାହିକ ରୂପେ ଆତ୍ମପ୍ରକାଶ କରେ । ବାଲେଶ୍ୱର ସମ୍ବାଦବାହିକା ୧।୮।୧୮୭୪ ସଂଖ୍ୟାରେ 'ସମ୍ବାଦବାହିକାର ପୁନର୍ଜନ୍ମ' ଓ 'ସମ୍ବାଦବାହିକାର ଆୟୁଗଣନା' ଶୀର୍ଷକରେ ଏହି ପତ୍ରିକାର ପ୍ରକାଶନ ସମ୍ପର୍କରେ ସବିଶେଷ ବିବରଣୀ ଜଣାପଡେ ।

## ସମ୍ବାଦବାହିକାର ଆୟୁଗଣନା :

ସମ୍ବାଦବାହିକା, ପ୍ରଥମେ "ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା ମାସିକ ପତ୍ରିକା" ଏହି ନାମ ଧାରଣ କରି ୧୮୬ ମସିହା ଜୁଲାଇ ମାସରେ ପ୍ରକାଶିତ ହୋଇଥିଲା । ତିନି ବରଷ ଅତୀତ ହୁଅନ୍ତେ ଏହା ପାକ୍ଷିକ ରୂପେ ପ୍ରକାଶିତ ହେଲା । ପରେ ୧୮୭୨ ମସିହା ଜୁନ୍‌ମାସ ଆରମ୍ଭରୁ କେବଳ "ବାଲେଶ୍ୱର ସମ୍ବାଦବାହିକା" ଏହି ନାମରେ ପ୍ରକାଶିତ ହୋଇ ୧୮୭୩ ମସିହା ଅକ୍ଟୋବର ମାସ ଶେଷ ପର୍ଯ୍ୟନ୍ତ ଚଳିଥିଲା; ସୁତରାଂ ସମ୍ବାଦବାହିକାର ବୟସ ପାଞ୍ଚବରଷ ଓ ଚାରିମାସ ହୋଇଥିଲା ବୋଲିବାକୁ ହେବ ତହିଁଉତ୍ତାରେ ପୂର୍ବୋକ୍ତ ବିଘ୍ନ ଘଟିବାରୁ ଷଷ୍ଠ ବର୍ଷ ଅତୀତ ହୋଇଗଲା । ବର୍ତ୍ତମାନ

ସମ୍ବାଦବାହିକାର ସପ୍ତମ ବୟସ ଆରମ୍ଭ; ଏଣୁ ସପ୍ତମଭାଗ ବୋଲି ପତ୍ରିକା ମୂଳରେ ଅଙ୍କିତ କରାଗଲା ।

ଏହି ପତ୍ରିକା ନିଜର ଆଭିମୁଖ୍ୟ ରୂପେ ନିମ୍ନୋକ୍ତ ଶ୍ଳୋକଟିକୁ ମୁଦ୍ରିତ କରିଥିଲା ।

"ଅବନି ମଦନି ପାଳାଃ ପାନ୍ତୁ ବୃଷ୍ଟିଂ ବିଧତ୍ତାଂ
ଜଗତୀ ଜଳଧାରାଳୀ ଶସ୍ୟ ପୂର୍ଣ୍ଣାସ୍ତୁ ଭୂମିଃ ।"

ଅର୍ଥାତ୍, ପୃଥିବୀ ସୁଖ ଶାନ୍ତି ଅବଶ୍ୟ ଆବଶ୍ୟକ, ମାତ୍ର ଏହି ଆବଶ୍ୟକତା ପୂରଣରେ ସମ୍ବାଦପତ୍ରର ଭୂମିକା ରହିଛି । ଗୋବିନ୍ଦଚନ୍ଦ୍ର, ସତ୍ୟର ଉଦ୍‌ଘାଟନ ଓ ବିଚାରର ଚର୍ଚ୍ଚା ଓ ପ୍ରତିଷ୍ଠାକୁ ସମ୍ବାଦପତ୍ରର ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି । ସମାଜର ସାମାଜିକ, ସାଂସ୍କୃତିକ, ଅର୍ଥନୀତିକ ଅବସ୍ଥା ଚିତ୍ରଣ ସହିତ, ଦୁଃଖୀ ପ୍ରଜାଙ୍କ ଗୁହାରି ରାଜପୁରୁଷଙ୍କ ପାଖରେ ପହଞ୍ଚାଇବା ପାଇଁ ସେ ସଶ୍ରଦ୍ଧ ଉଦ୍ୟମ କରି ଚାଲିଛନ୍ତି । ଏହି ଆଭିମୁଖ୍ୟ ବ୍ୟତିରେକେ ବୃହତ୍ତର ଓଡ଼ିଶା, ଭାରତ ଓ ବିଶ୍ୱର ସମ୍ବାଦ ସହିତ ସ୍ଥାନୀୟ ସମ୍ବାଦ ଏହି ପତ୍ରିକାର ମୁଖ୍ୟ ଆକର୍ଷଣ ଥିଲା । ବ୍ରିଟିଶ ପ୍ରଶାସକ ତଥା ବିଭିନ୍ନ ରାଜା ଓ ସାମନ୍ତମାନଙ୍କ ଜନସ୍ୱାର୍ଥ ବିରୋଧୀ ଓ ଦୁର୍ନୀତିଗ୍ରସ୍ତ ଜୀବନଶୈଳୀକୁ ବାହିକା ଦୃଢ଼ ଭାବରେ ପ୍ରକାଶ କରିଛି ।

୧୮୬୯ରେ ଦ୍ୱିଭାଷୀ (ଓଡ଼ିଆ ଓ ଇଂରାଜୀ) ପାକ୍ଷିକ ସମ୍ବାଦପତ୍ର ଉତ୍କଳ ହିତୈଷିଣୀ କାଳିପଦ ବନ୍ଦୋପାଧ୍ୟାୟଙ୍କ ସମ୍ପାଦନାରେ କଟକଠାରୁ ପ୍ରକାଶ ପାଏ । ଉତ୍କଳ ହିତୈଷିଣୀ ନାମ ଗ୍ରହଣ କରିଥିଲେ ମଧ୍ୟ ଏହା ମୁଖ୍ୟତଃ ବଙ୍ଗଳା ଭାଷାର ପ୍ରଚାର ଓ ପ୍ରସାର ଏବଂ ଓଡ଼ିଆମାନେ ବଙ୍ଗଳା ଭାଷାକୁ ନିଜର ଆଦର୍ଶ ରୂପେ ଗ୍ରହଣ କରିବାକୁ ମନ୍ତବ୍ୟ ଦେଇଛି । ଏହି ଆଭିମୁଖ୍ୟକୁ ସୁଦୂର ପ୍ରସାରୀ କରିଛନ୍ତି କଟକ ଆର୍ଗସ ଓ କଟକ ଷ୍ଟାର ପତ୍ରିକା । କଟକ ଆର୍ଗସ ଓଡ଼ିଶାରେ ୧୮୬୯ରେ ପ୍ରକାଶିତ ପ୍ରଥମ ଇଂରାଜୀ ପତ୍ରିକା । କଟକ ଷ୍ଟାରର ସମ୍ପାଦକ ଉମାଚରଣ ହାଲଦାର କାଳିପଦଙ୍କ ମନ୍ତବ୍ୟକୁ ସମର୍ଥନ ଜଣାଇ ଉଲ୍ଲେଖ କରନ୍ତି ବଙ୍ଗ ଅକ୍ଷରରେ ଉତ୍କଳ ଭାଷା ଲେଖିବା ଏକ ଉଚିତ ପରାମର୍ଶ । ଓଡ଼ିଶାରେ ବଙ୍ଗଳାଭାଷା ପ୍ରଚଳନରେ ଉତ୍କଳ ହିତୈଷିଣୀ, କଟକ ଷ୍ଟାର ପ୍ରମୁଖ ସମ୍ବାଦପତ୍ର ଯେଉଁ ଷଡଯନ୍ତ୍ର କରୁଥିଲେ ତାକୁ ଉତ୍କଳ ଦୀପିକା ଦୃଢ଼ ହସ୍ତରେ ଖଣ୍ଡନ କରିଥିଲା । ପ୍ରତ୍ନତାତ୍ତ୍ୱିକ ରାଜେନ୍ଦ୍ରଲାଲ ମିତ୍ର କଟକ ଡିବେଟିଂ କ୍ଲବରେ ୧୮୬୮ ଡିସେମ୍ବର ମାସରେ ଏକ ବକ୍ତୃତା ଦେଇ ଓଡ଼ିଶାରେ ବଙ୍ଗଭାଷା ପ୍ରଚଳନ ପ୍ରତି ଗୁରୁତ୍ୱ ପ୍ରଦାନ କରିଥିଲେ । ରାଜେନ୍ଦ୍ର ଲାଲ ମିତ୍ରଙ୍କ ମତରେ "ଉତ୍କଳର ଯଥାର୍ଥ ହୀତାକାଂକ୍ଷୀ ଯେ ହେବ ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗ ଭାଷା ପ୍ରଚଳନ କରିବାର ଚେଷ୍ଟା କରିବ କାରଣ ତାହାଙ୍କ ମତରେ ଯେତେକାଳ ଉତ୍କଳ ଭାଷା ଉଠି ପାରିନାହିଁ ସେତେକାଳ ଏ ଦେଶରେ ଉନ୍ନତି ହେବା ଅସମ୍ଭବ ।"

ରାଜେନ୍ଦ୍ରଲାଲଙ୍କ ମତାନୁଶରଣରେ ଓଡ଼ିଶାରୁ ଓଡ଼ିଆ ଭାଷା ଉଠାଇ ଓଡ଼ିଶାର ତଥାକଥିତ 'ହିତ' କରିବା ଲକ୍ଷ୍ୟରେ ହିଁ ଉତ୍କଳ ହିତୈଷିଣୀ ଓ କଟକ ଷ୍ଟାର ପତ୍ରିକା ସଂଗ୍ରାମ ଚଳାଇଥିଲେ । ହାଲଦାରଙ୍କୁ ନିଜର ଶାଣିତ ବକ୍ତବ୍ୟ ଦ୍ୱାରା ସମାଲୋଚନା କରିବାକୁ ଦୀପିକା ଆଗେଇ ଆସିଥିଲା । ବଙ୍ଗ ଅକ୍ଷର ବଡ ଶୋଭାବନ 'ଯୁକ୍ତିକୁ ଦୀପିକା କଳାତ୍ମକ ଭାବେ ବ୍ୟଙ୍ଗ କରିଛି । ଓଡ଼ିଆ ଅକ୍ଷର ଗୋଲାକାର, ବଙ୍ଗଳା ତ୍ରିକୋଣ ବା ଅର୍ଦ୍ଧଗୋଲ ଏହା ତାହାଙ୍କୁ ଗଜମୁକ୍ତା ହାରରେ ହୀରକ ଖଚିତ ପଦକ ପ୍ରାୟ ବଡ ଜାଜ୍ଜ୍ୱଲ୍ୟମାନ ଦିଶିଲା । ଅଥବା ବାବୁଙ୍କର ବୈଷ୍ଣବୀ ଭାବ ହୋଇଥିବ ଯେ ତ୍ରିଭଙ୍ଗ ରୂପ ଦେଖି, ଗୋପ କହ୍ନାଇର କଥା ଅକସ୍ମାତ୍ ମନରେ ଚେତିଲାରୁ ପ୍ରେମରେ ପୂର୍ଣ୍ଣ ହେଲେ । ଯେବେ ଏ ରୂପ କିଛି ନ ହୋଇଥିବ, ତେବେ ବାବୁ କାହିଁକି ଏ ଦୁଇ ଅକ୍ଷରକୁ ଦେଖୁ ଦେଖୁ ବଙ୍ଗଳାକୁ ସୁନ୍ଦର ମନରେ କରି ହଠାତ୍ ଚମକି ପଡି କହିଲେ କି ଯେବେ ବଙ୍ଗଳା ଅକ୍ଷର ଏଡେ ସୁନ୍ଦର, ତେବେ ଓଡ଼ିଆ ଭାଷା ଏଥିରେ କାହିଁକି ଲେଖା ନ ହେବ । ବାବୁ ଯେ ଚମକିଥିବେ ଏଥିରେ ସନ୍ଦେହ ନାହିଁ । କାରଣ ଆମ୍ଭେମାନେ ତ ଶୁଣିଲାକ୍ଷଣି ଚମତ୍କାର ହେଲୁଁ (୧୦ ଜୁଲାଇ ୧୮୬୯ ଉତ୍କଳଦୀପିକା) । କଟକ ଷ୍ଟାଣ୍ଡାର୍ଡ (୧୮୬୯), କଟକ କ୍ରନିକାଲ (୧୮୭୧), ବିଦେଶୀ (୧୮୭୩), ସ୍ୱଦେଶୀ (୧୮୭୬), ହିନ୍ଦୁ ପେଟ୍ରିଅଟ୍ (୧୮୭୭), ବାର୍ତ୍ତାଲହରୀ (୧୮୭୭), କୋହିନୂର (୧୮୮୦), ପ୍ରଜାବନ୍ଧୁ (୧୮୮୬) ପ୍ରଭୃତି ସମ୍ବାଦପତ୍ର ସ୍ୱଳ୍ପଜୀବୀ ଥିଲେ । ଏଗୁଡ଼ିକ ମୁଖ୍ୟତଃ ଧର୍ମ, ଆଧ୍ୟାତ୍ମିକବାଦ ଓ ସମ୍ବାଦ ପରିବେଷଣ ମଧ୍ୟରେ ସୀମିତ ରହିଥିଲେ । ୧୮୭୩ରେ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସମ୍ପାଦନାରେ 'ଉତ୍କଳ ପୁତ୍ର' ପ୍ରକାଶ ପାଏ । ଏହା ପ୍ରଥମେ ହାତଲେଖା ମାସିକ ରୂପେ ଏବଂ ପରେ ପାକ୍ଷିକ ମୁଦ୍ରିତ ରୂପେ ପ୍ରକାଶ ପାଇଥିଲା । ଏହି ପତ୍ରିକାରେ ପ୍ୟାରୀମୋହନଙ୍କ ସ୍ପଷ୍ଟବାଦିତା ଏବଂ ଶୁଦ୍ଧ ଓଡ଼ିଆ ଭାଷା ପ୍ରୟୋଗ ପାଠକମାନଙ୍କୁ ଆକର୍ଷିତ କରେ । ଗଡଜାତର ଅବସ୍ଥା, ଓଡ଼ିଶାର ଜମିଦାର, ଓଡ଼ିଶାର ଅବନତି ଓ ଉନ୍ନତିର କାରଣ ସମ୍ପର୍କରେ ବହୁ ରଚନା ଉତ୍କଳପୁତ୍ରରେ ପ୍ରକାଶିତ । ଓଡ଼ିଆ ପତ୍ରପତ୍ରିକା ଇତିହାସରେ ନିର୍ଭିକ ସାମ୍ବାଦିକତାର ପ୍ରଥମ ଦୃଷ୍ଟାନ୍ତ ରୂପେ ଉତ୍କଳ ପୁତ୍ରକୁ ଗ୍ରହଣ କରାଯାଇପାରେ ।

୧୮୭୯ ମସିହା ମୟୁରଭଞ୍ଜ ମହାରାଜାଙ୍କ ଉଦ୍ୟମରେ ବାରିପଦାରୁ 'ମୟୂରଭଞ୍ଜ ପାକ୍ଷିକ ପତ୍ରିକା' ପ୍ରକାଶ ଲଭେ । ଏହାର ସମ୍ପାଦନା ଶ୍ରୀ ହରିପ୍ରସାଦ ଦାଶ କରିଥିଲେ । ଏହି ପତ୍ରିକାଟିରେ ମୟୂରଭଞ୍ଜ ରାଜାଙ୍କ ବିଭିନ୍ନ ସମ୍ବାଦ ସହିତ ମୟୂରଭଞ୍ଜର ରାଜନୈତିକ ଓ ସାଂସ୍କୃତିକ ସମ୍ବାଦ ସହିତ ଓଡ଼ିଶା ତଥା ଓଡ଼ିଶା ବାହାର ସମ୍ବାଦ ମଧ୍ୟ ପ୍ରକାଶ ପାଉଥିଲା । ସମ୍ବାଦାବଳୀ ଶୀର୍ଷକରେ ବିଭିନ୍ନ ଅଞ୍ଚଳର ସମ୍ବାଦ ଏହି ପତ୍ରିକାରେ ପ୍ରକାଶ ପାଉଥିଲା । ମୟୂରଭଞ୍ଜ ପାକ୍ଷିକ ପତ୍ରିକାର ପୃଷ୍ଠପିଠିକାରେ ପରବର୍ତ୍ତୀ ପର୍ଯ୍ୟାୟରେ 'ବ୍ୟବସାୟୀ', 'ଉତ୍କଳପ୍ରଭା', 'ମୟୂରଭଞ୍ଜ ଗେଜେଟ', 'ଭଞ୍ଜ ପ୍ରଦୀପ', 'ମୟୂରଭଞ୍ଜ କ୍ରନିକିଲ୍' ପ୍ରଭୃତ ପତ୍ରପତ୍ରିକା ପ୍ରକାଶ ପାଇଥିଲା ।

ପୁରୀରୁ ପ୍ରକାଶିତ ପୁରୁଷୋତ୍ତମ ଚନ୍ଦ୍ରିକା (୧୮୮୦) ଓ ପୁରୁଷୋତ୍ତମ ପତ୍ରିକା (୧୮୮୨) ଏହି ପତ୍ରିକା ଦୁଇଟିରେ ବିଭିନ୍ନ ଘଟଣାର ବର୍ଣ୍ଣନା ସହିତ ସେଗୁଡିକର କାରଣ ଓ ସମାଧାନର ଉପାୟ ପ୍ରସଙ୍ଗରେ ସମ୍ପାଦକଙ୍କ ନିର୍ଭିକ ଓ ସଂସ୍କାରଧର୍ମୀ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । ବ୍ରାହ୍ମଣ୍ୟବାଦ, ପୌରୋହିତ୍ୟବାଦ ଓ ଜଗନ୍ନାଥ ମନ୍ଦିର କୈନ୍ଦ୍ରିକ ପ୍ରସଙ୍ଗ ଓ ପୁରୀ ଅଧିବାସୀମାନଙ୍କ ଅପାରଗତାକୁ ଏହି ପତ୍ରିକା ନିଷ୍ଠୁର ଭାବରେ ସମାଲୋଚନା କରିଛି । ଉତ୍କଳୀୟମାନଙ୍କ ମନରେ ଦେଶପ୍ରେମ ଜାଗ୍ରତ କରିବା ପାଇଁ ଏବଂ ଧର୍ମ ମାଧ୍ୟମରେ ମାନବବାଦୀ ଦୃଷ୍ଟିକୋଣ ପ୍ରଚାର କରିବା ଏହି ପତ୍ରିକାର ଆଭିମୁଖ୍ୟ ଥିଲା । ଧର୍ମ ସହିତ ବିଜ୍ଞାନକୁ ମଧ ସମ୍ପାଦକ ସମୁଚିତ ଗୁରୁତ୍ୱ ଦେଇଛନ୍ତି । ଡାରଉଇନ୍ ବିବର୍ତ୍ତନବାଦ ସମ୍ପର୍କରେ ଏହି ପତ୍ରିକା ଆଲୋକପାତ କରେ ।

୧୮୮୪ ବାଲେଶ୍ୱର ଦେ ପ୍ରେସ୍‌ରୁ ଧୂମକେତୁ ପତ୍ରିକା ଦ୍ୱାରିକାନାଥ ଦାଶ ଏବଂ ଶିବନାରାୟଣ ନାୟକଙ୍କ ସମ୍ପାଦନାରେ ମାସିକ ରୂପେ ପ୍ରକାଶ ପାଏ । ଏହି ପତ୍ରିକା ଦୀପିକାର ସମର୍ଥନରେ ସମ୍ବାଦବାହିକାକୁ ବିରୋଧ କରିବାର ଆଭିମୁଖ୍ୟ ନେଇ ସୃଷ୍ଟି ହୋଇଥିବା ଜଣାପଡେ । ସେହି ସମୟରେ ଶିକ୍ଷା ବିଭାଗର କାର୍ଯ୍ୟାବଳୀ, ପାଠ୍ୟପୁସ୍ତକ ନିର୍ବାଚନର ଦୁର୍ନୀତି ଓ ଶିକ୍ଷା ବ୍ୟବସ୍ଥାର ଦୋଷତ୍ରୁଟି ସମ୍ପର୍କରେ ଅନେକ ଗମ୍ଭୀର ସମ୍ବାଦ ଧୂମକେତୁ ପରିବେଷଣ କରିଛି । ଏଥିରେ ରହସ୍ୟ ଶୀର୍ଷକରେ ଅନେକ ହାସ୍ୟମୂଳକ ଓ ସମାଲୋଚନାଧର୍ମୀ ରଚନା ଦେଖିବାକୁ ମିଳେ । ଧୂମକେତୁକୁ ଓଡ଼ିଶାର ସମାଲୋଚନାମୂଳକ ଓ ବ୍ୟଙ୍ଗାତ୍ମକ ପତ୍ରିକାର ନାନ୍ଦୀକାର ଭାବେ ଅଭିହିତ କରାଯାଇଥାଏ ।

୧୯ ନଭେମ୍ବର ୧୮୮୩ରେ ମାସିକ ପତ୍ରିକା 'ସେବକ' କଟକ ପ୍ରିଣ୍ଟିଂ କମ୍ପାନୀରୁ ମୁଦ୍ରିତ ହେଉଥିଲା । ବ୍ରାହ୍ମଧର୍ମ ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟ ନେଇ ପତ୍ରିକାଟି କଟକସ୍ଥ ସେବକସଭା ଆନୁକୂଲ୍ୟରେ ପ୍ରକାଶ ପାଇଛି । ଏହାର ଶୀର୍ଷକରେ ନିମ୍ନ ଶ୍ଲୋକଟି ମୁଦ୍ରିତ ହେଉଥିଲା ।

ଏକ୍ ଏବଂ ସୁହୃଦ୍ଧର୍ମୋ ନିଧନେପ୍ୟନୁଯାତି ଯଃ
ଶରୀରେଣ ସମଂନାଶଂ ସର୍ବମନ୍ୟଦ୍ଧି ଗଚ୍ଛତି ।

ଏଥିରେ ବ୍ରାହ୍ମ ଧର୍ମ ବିଚାରଧାରା ଓ ଦର୍ଶନକୁ ମୁଖ୍ୟ ସ୍ଥାନ ଦିଆଯାଇଛି । ପତ୍ରିକାର ୨ୟ ବର୍ଷ ୨ ସଂଖ୍ୟାଠାରୁ ଇଂରାଜୀରେ ଲେଖାଯାଉଥିଲା - To the sacred memory of Keshab Chandra Sen Born 19th November 1838 Died 8th January 1884 । ସେବକର ସମ୍ପାଦନା କାର୍ଯ୍ୟ ଭାବଗ୍ରାହୀ ଦାସ ନିର୍ବାହ କରୁଥିଲେ । ଉତ୍କଳସଭାର ଏହି ମୁଖପତ୍ର ବ୍ରାହ୍ମ ପ୍ରଚାର ସର୍ବସ୍ୱ ହୋଇ ନିଜର ସାମାଜିକ ଆଭିମୁଖ୍ୟକୁ ସୀମିତ କରି ଦେଇଥିଲା । ଅନ୍ୟପକ୍ଷରେ ଉତ୍କଳସଭା ଆନୁକୂଲ୍ୟରେ 'ସଂସ୍କାରକ'

୧୮୮୩ ମସିହା ସେପ୍ଟେମ୍ବରରେ କଟକ ସୁଢ଼ଳ ପ୍ରେସ୍‌ରୁ ତଥା ମିଶନ ପ୍ରେସ୍‌ରୁ ବିଭିନ୍ନ ସମୟରେ ପ୍ରକାଶ ପାଇଥିଲା । ୧୮୮୬ ବେଳକୁ ସେବକ ଓ ସଂସ୍କାରକ ସମ୍ମିଳିତ ହୋଇ ପ୍ରକାଶ ପାଉଥିଲା ଏବଂ ସ୍ୱତନ୍ତ୍ର ଭାବରେ ମଧ୍ୟ ପ୍ରକାଶ ଲଭୁଥିଲା । ଏହାର ସମ୍ପାଦନା ଭାର ଚତୁର୍ଭୁଜ ପଟ୍ଟନାୟକ, ଭାବଗ୍ରାହୀ ଦାସ, ବିଶ୍ୱନାଥ କର ପ୍ରମୁଖ ଗ୍ରହଣ କରିଥିଲେ । ଏଥିରେ ଗଡଜାତ ସମୂହ, ଓଡ଼ିଶା, ଭାରତ ଓ ପୃଥିବୀର ସମ୍ବାଦ ପ୍ରକାଶ ପାଉଥିଲା । ପ୍ରତିଟି ସମ୍ବାଦ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ମୁଦ୍ରିତ ହେଉଥିଲା । ଏଥିସହିତ ପୁସ୍ତକ ସମାଲୋଚନା, ଛୋଟ କବିତା, ସାରସ୍ୱତ ଓ ଆଧ୍ୟାତ୍ମିକ ବିତର୍କ ସଂସ୍କାରକ ପୃଷ୍ଠା ମଣ୍ଡନ କରୁଥିଲା । ବିଦ୍ୟାରତ୍ନ, ଭୋଳାନାଥ ସାମନ୍ତରାୟ, ଚନ୍ଦ୍ରମୋହନ ମହାରଣା ପ୍ରମୁଖଙ୍କ ସାହିତ୍ୟିକ ରଚନା ସଂସ୍କାରକରେ ନିୟମିତ ପ୍ରକାଶ ଲଭୁଥିଲା । ଦୀପିକା ଓ ବାହିକାକୁ ପ୍ରତିବାଦ କରି ସଂସ୍କାରକ ବିବାଦୀୟ ହୋଇପଡିଥିଲା । ଫଳରେ ବାମଣ୍ଡା ରାଜା ସୁଢ଼ଳଦେବ ନିଜର ଆର୍ଥିକ ସହାୟତା ପରିହାର କରିବା ଯୋଗୁ ପତ୍ରିକାଟିର ବିଲୟ ଘଟିଥିଲା । ୧୮୮୬ ଓ ୧୮୮୭ ମସିହାର 'ସଂସ୍କାରକ' ପୃଷ୍ଠା ଓଡ଼ିଶାର ଅନେକ ସାଂସ୍କୃତିକ ଓ ସାରସ୍ୱତ ସମ୍ପଦରେ ଭରପୁର । 'ସଂସ୍କାରକ' ଓ 'ସେବକ' ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ସମ୍ବାଦ, ପ୍ରବନ୍ଧ, କବିତା, ସମାଲୋଚନା ପ୍ରକାଶ କରି ଏକ ନୂତନ ରୁଚିର ଅୟମାରମ୍ଭ କରିଥିଲା ।

୧୮୮୭ ମସିହାରେ ଲଳିତମୋହନ ଚକ୍ରବର୍ତ୍ତୀଙ୍କ ସମ୍ପାଦନାରେ କଟକରୁ ସାମ୍ୟବାଦୀ ପତ୍ରିକା ପ୍ରକାଶ ପାଏ । ଜାତୀୟ ଜୀବନ ଓ ଜାତୀୟ ସାହିତ୍ୟ ସାମ୍ପ୍ରଦାୟିକତା ଓ ଆଧ୍ୟାତ୍ମିକତା, ମନୋବିଜ୍ଞାନ ଓ ଶରୀର ବିଜ୍ଞାନ ସମ୍ପର୍କରେ ଅନେକ ନୂତନ ସମ୍ବାଦ ଏହି ପତ୍ରିକା ପରିବେଷଣ କରିଥିଲା । ବ୍ରାହ୍ମ ଧର୍ମର କର୍ମକାଣ୍ଡକୁ ସାମ୍ୟବାଦୀ ନିଷ୍ଠୁର ଭାବେ ସମାଲୋଚନା କରିଛି । ଅନେକ ଉପଦେଶାତ୍ମକ ପୌରାଣିକ କାହାଣୀ ଓ ଅନୂଦିତ ରଚନା ଏହି ପତ୍ରିକାରେ ପ୍ରକାଶ ପାଇଥିଲା । ଏହାର ଭାଷା ସାଧୁ ଓ ଗ୍ରାମ୍ୟ ଭାଷାର ସମନ୍ୱୟ ଅଭିବ୍ୟକ୍ତି, ସ୍ପଷ୍ଟ ଓ ନିର୍ଭିକ । ସମକାଳୀନ ଓଡ଼ିଶାର ଅନେକ ଆଧ୍ୟାତ୍ମିକ ବିତର୍କର ସୂତ୍ରଧର ଲଳିତମୋହନ ଚକ୍ରବର୍ତ୍ତୀ । ଭଗବାନ ଦୟାମୟ କି ନା, ଈଶ୍ୱର ସର୍ବବ୍ୟାପୀ କି ଏମିତି ଅନେକ ବିତର୍କର ସୂଚନା ଏହି ପତ୍ରିକାରେ ରହିଛି ।

ଓଡ଼ିଶାର ଅନ୍ୟ ଦୁଇଟି ବିଶିଷ୍ଟ ସମ୍ବାଦପତ୍ର ୧୮୮୭ ମସିହାରେ ପ୍ରକାଶପାଏ । ସେଗୁଡିକ ହେଲା ଭୂପତିନାଥ ବସୁଙ୍କ ସମ୍ପାଦନାରେ ୨୩ ଜାନୁୟାରୀ ୧୮୮୭ ମସିହାରେ କଟକ ଭିକ୍ଟୋରିଆ ପ୍ରେସ୍‌ରୁ ସାପ୍ତାହିକ 'ନବସମ୍ବାଦ' ଓ ସେହି ବର୍ଷ ଅକ୍ଟୋବର ୨୬ ତାରିଖରେ କାଳିପ୍ରସାଦ ଦାସଙ୍କ ସମ୍ପାଦନାରେ ବାଲେଶ୍ୱର ଦେ ପ୍ରେସ୍‌ରୁ 'ଓଡ଼ିଆ' ସାପ୍ତାହିକ ସମ୍ବାଦପତ୍ର । 'ନବ ସମ୍ବାଦ' ନିଜର ଆଭିମୁଖ୍ୟ ସମ୍ପର୍କରେ ଘୋଷଣା କରି କୁହେ - ଧର୍ମନୀତି, ରାଜନୀତି, ସମାଜନୀତି, ସାହିତ୍ୟ, ଦର୍ଶନ, ବିଜ୍ଞାନ ବିଷୟକ ସାପ୍ତାହିକୀ ।

ପ୍ରଥମ ସଂଖ୍ୟାରେ ଏହାର ଉଦ୍‌ଘୋଷଣା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ – ''ସୁଷୁପ୍ତ ଉତ୍କଳର ଗଭୀର ନିଦ୍ରା ଭଙ୍ଗ କରି ନିବିଡ ଅନ୍ଧକାରକୁ ଭେଦକରି ଲକ୍ଷ ଲକ୍ଷ ନରନାରୀଙ୍କ ନୟନକୁ ଚକିତ କରି ନବୀନ ଭାବରେ ନବ ତେଜରେ 'ନବସମ୍ବାଦ' ପୃଥିବୀରେ ପ୍ରଚାରିତ ହେଲା । ଆଜିଠାରୁ ଉତ୍କଳର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ଧୀରେ ଧୀରେ ଭୀଷଣ ସଂଘର୍ଷର ସୂତ୍ରପାତ ହେଲା । ଏଥିରୁ ଅସତ୍ୟର ସହ ସତ୍ୟର, ପାପର ସହିତ ପୂଣ୍ୟର ଏବଂ ସ୍ୱାର୍ଥର ସହିତ ବୈରାଗ୍ୟର ତୁମୁଳ ଯୁଦ୍ଧ ଆରମ୍ଭ ହେବ । ଜୟ ଶଙ୍ଖ ବାଜିବ ଏବଂ ଊନବିଂଶ ଶତାବ୍ଦୀର ମୋହାନ୍ଧ ଯୁବକମାନଙ୍କୁ ସତ୍‌ପଥକୁ ଫେରିବା ପାଇଁ ଆହ୍ୱାନ ଦିଆଯାଇଛି ।'' ଏହି ପତ୍ରିକା ବ୍ରାହ୍ମ ଧର୍ମର ଆଦର୍ଶକୁ ନିଜର ଆଦର୍ଶ ରୂପେ ଗ୍ରହଣ କରିଥିଲା । ସମାଜ ସଂସ୍କାର କ୍ଷେତ୍ରରେ ଏହାର ଉଦ୍ୟମ ଚିରପ୍ରଶଂସନୀୟ । ଏହି ପତ୍ରିକା ବାମଣ୍ଡା ରାଜା ସୁଦ୍ଧଳଦେବଙ୍କ ଆର୍ଥିକ ସହାୟତାରେ ପ୍ରକାଶ ପାଉଥିଲା ।

ଓଡ଼ିଆ ସମ୍ବାଦପତ୍ର ନିଜର ଆଭିମୁଖ୍ୟ ରୂପେ The Oriya- A weekly journal, mainly devoted to the welfare of Jagannath Religions ଲିପିବଦ୍ଧ କରିଥିଲା । ଏହି ପତ୍ରିକା ଓଡ଼ିଆ ଅସ୍ମିତାର ଅନ୍ୟତମ ପ୍ରତିଭୂ ରୂପେ ପ୍ରକାଶ ପାଇଛି । ତିନିମାସର ପ୍ରକାଶନ ପରେ ଏହା 'ନବ ସମ୍ବାଦ' ସହିତ ମିଶି 'ଓଡ଼ିଆ ଓ ନବସମ୍ବାଦ' ରୂପେ ଦୀର୍ଘଦିନ ଧରି ପ୍ରକାଶ ପାଇଥିଲା । 'ଓଡ଼ିଆ ଓ ନବସମ୍ବାଦ'ର ଶୀର୍ଷକ ପତ୍ର ପୃଷ୍ଠାରେ A weekly Journal Devoted to Politics, Literature, Science & Art and to the welfare of Jagannath Pilgrims ଲିପିବଦ୍ଧ ହେଉଥିଲା । 'ଓଡ଼ିଆ ଓ ନବସମ୍ବାଦ'ର ସମ୍ପାଦନା ଦ୍ୱାରିକାନାଥ ଦାସ ଗ୍ରହଣ କରିଥିଲେ ଏବଂ ଏହା ବାଲେଶ୍ୱରର ଉତ୍କଳ ନବ ପ୍ରେସ୍‌ରୁ ମୁଦ୍ରିତ ହେଉଥିଲା । ଏହି ପତ୍ରିକା ସତ୍ୟ ଓ ତଥ୍ୟନିଷ୍ଠ ସମ୍ବାଦକୁ ଅଗ୍ରାଧିକାର ଦେଉଥିଲା । ଏହା ସାମ୍ବାଦିକତାକୁ ମହାବ୍ରତ ଓ ସାମ୍ବାଦିକକୁ ମହାମନ୍ତ୍ର ସହ ତୁଳନା କରିଥିଲା । ଏହି ପତ୍ରିକାଟି ଦୀର୍ଘଦିନ ପ୍ରକାଶ ଲଭି ଓଡ଼ିଆ ଜନଜୀବନକୁ ଉଚିତ୍ ଦିଗ୍‌ଦର୍ଶନ ଦେଇ ପାରିଥିଲା ।

'ଦୀପକ' ସାପ୍ତାହିକ ସମ୍ବାଦପତ୍ର ୪ ମେ ୧୮୮୯ରେ ମୋହନ ନାୟକଙ୍କ ସମ୍ପାଦନାରେ ଭିକ୍ଟୋରିଆ ପ୍ରେସ୍ କଟକରୁ ପ୍ରକାଶ ପାଇଥିଲା । ଏହା ସତ୍ୟ ଓ ଦେଶହିତୈଷୀତାକୁ ନିଜର ଆଦର୍ଶ ରୂପେ ଗ୍ରହଣ କରିଥିଲା । ଏଥିରେ ଓଡ଼ିଶା ସହିତ ଭାରତ ଓ ପୃଥିବୀର ଅନ୍ୟାନ୍ୟ ପ୍ରାନ୍ତର ସମ୍ବାଦ ପରିବେଷିତ ହେଉଥିଲା ।

ଊନବିଂଶ ଶତାବ୍ଦୀର ଅନ୍ୟତମ ବିଶିଷ୍ଟ ସମ୍ବାଦପତ୍ର 'ସମ୍ବଲପୁର ହିତୈଷିଣୀ' ମେ' ୩୦, ୧୮୮୯ରେ ବାମଣ୍ଡା ରାଜା ସାର୍ ବାସୁଦେବ ସୁଦ୍ଧଳଦେବଙ୍କ ପ୍ରୋତ୍ସାହନ ଓ ଆର୍ଥିକ ସହାୟତାରେ ଦେବଗଡ଼ ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । ଏହି ସାପ୍ତାହିକ ସମ୍ବାଦପତ୍ରଟି ୧୯୨୩ ପର୍ଯ୍ୟନ୍ତ ପ୍ରକାଶ ଲଭିଥିଲା । ନୀଳମଣି ବିଦ୍ୟାରତ୍ନଙ୍କ

ବ୍ୟତିରେକେ ବ୍ରଜବନ୍ଧୁ ମିଶ୍ର, ଦୀନବନ୍ଧୁ ଗଡନାୟକ ପ୍ରମୁଖ ଏହାର ସମ୍ପାଦନା କାର୍ଯ୍ୟ ନିର୍ବାହ କରିଥିଲେ । ଏଥିରେ ଗଡଜାତ, ଓଡ଼ିଶା, ଭାରତ ତଥା ଆନ୍ତର୍ଜାତିକ ସମ୍ବାଦ ପରିବେଶିତ ହେଉଥିଲା । ସମ୍ବଲପୁର ହିତୈଷିଣୀ ଯଦିଓ ସମ୍ବାଦପତ୍ର ଥିଲା ତଥାପି ଏହାର ଅର୍ଦ୍ଧାଧିକ ସ୍ଥାନ ଗଳ୍ପ, କବିତା, ପ୍ରବନ୍ଧ, ସାହିତ୍ୟ ସମାଲୋଚନା, ସାହିତ୍ୟିକ ଓ ଆଧ୍ୟାତ୍ମିକ ବିତର୍କ ପାଇଁ ବିନିଯୋଗ ହେଉଥିଲା । ୧୮୯୫ରେ ସମ୍ବଲପୁରରୁ ଓଡ଼ିଆ ଭାଷାର ଉଚ୍ଛେଦ ବିରୁଦ୍ଧରେ ଏହା ନିର୍ଭିକ ପ୍ରତିବାଦ କରି ସେହି ଅଞ୍ଚଳରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଦିଗରେ ସଫଳ କାମ ହୋଇଥିଲା । ବିଭିନ୍ନ ସଂସ୍କାରମୂଳକ ସମ୍ବାଦ ପରିବେଷଣ କରି ଏହା ସମାଜ ଜୀବନକୁ ସୁସ୍ଥ, ସମୃଦ୍ଧ କରିବାରେ ସହାୟକ ବି ଥିଲା । ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥାର ସଂସ୍କାର, ବିଶୁଦ୍ଧ ପାଠ୍ୟପୁସ୍ତକ ପ୍ରଚଳନ, ଓଡ଼ିଶାରେ ରେଳପଥ ଆନୟନ ଏବଂ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିଗରେ 'ସମ୍ବଲପୁର ହିତୈଷିଣୀ' କ୍ରାନ୍ତିକାରୀ ଭୂମିକା ଗ୍ରହଣ କରିଥିଲା । କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଓ ରାଜେନ୍ଦ୍ରଲାଲ ମିତ୍ରଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଓଡ଼ିଆ ଭାଷା ଉଚ୍ଛେଦ ଉଦ୍ୟମକୁ 'ଉତ୍କଳ ଦୀପିକା' ଦୃଢ଼ ଭାବରେ ସମାଲୋଚନା କରିଥିଲା । ଏହି ଆନ୍ଦୋଳନକୁ ବହୁପ୍ରସାରୀ ବ୍ୟାପ୍ତି ଦେଇଥିଲା 'ସମ୍ବଲପୁର ହିତୈଷିଣୀ' । ତା ୧୯।୧। ୧୮୯୫ ମଧ୍ୟପ୍ରଦେଶ ଗେଜେଟରେ ଚିଫ୍‌କମିଶନର ଜାନୁୟାରୀ-୧ ତାରିଖ ୧୮୯୬ ଖ୍ରୀ:ରୁ ସମ୍ବଲପୁରରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ସରକାରୀ ଭାଷା ରୂପେ ପ୍ରଚଳନ ହେବ ବୋଲି ବିଜ୍ଞାପନ ପ୍ରକାଶ କଲେ । ଏ ବିଜ୍ଞାପନ ପ୍ରକାଶ ପାଇବା ପୂର୍ବରୁ 'ସମ୍ବଲପୁର ହିତୈଷିଣୀ' ଆଶଙ୍କା ପ୍ରକାଶ କରି ସମସ୍ତଙ୍କୁ ସତର୍କ କରି ଦେଇଥିଲା । 'ସମ୍ବଲପୁର ମାତୃଭାଷାର ଉଚ୍ଛେଦ ସାଧନ କରି ହିନ୍ଦୀ ଭାଷା ଚଳାଇବା ସକାଶେ କର୍ତ୍ତୃପକ୍ଷମାନେ ଆଗ୍ରହାନ୍ୱିତ । ଯେହେତୁ ଏଥିରେ ଏକମାତ୍ର ଓଡ଼ିଆମାନଙ୍କର କ୍ଷତି ଓ ଅସୁବିଧା ଛଡା ଅନ୍ୟମାନଙ୍କର କ୍ଷତି ବା ଅସୁବିଧା ନାହିଁ ।'' 'ସମ୍ବଲପୁର ହିତୈଷିଣୀ' କେବଳ ସମ୍ବାଦ ପରିବେଷଣ କରି ସନ୍ତୁଷ୍ଟ ରହିନାହିଁ ବରଂ ସମ୍ବଲପୁରରେ ହିନ୍ଦୀ ପ୍ରଚଳନ ହେବାର ବହୁ ପୂର୍ବରୁ ସେ ଏହା ବିରୁଦ୍ଧରେ ଉଦ୍‌ବେଗ ପ୍ରକାଶ କରିଛି । 'ଓଡ଼ିଆ ଭାଷାର ବିଲୋପ ଚେଷ୍ଟା ଶୀର୍ଷକରେ ହିତୈଷିଣୀ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଛି । ''ସମ୍ବଲପୁରରେ ହିନ୍ଦୀ ଚଳାଇବା କେବେହେଁ ଉଚିତ ନୁହେଁ । ଏହାଦ୍ୱାରା ସରକାରୀ କାର୍ଯ୍ୟରେ ବାଧା ଉପୁଜିବ । ଯେବେ ଓଡ଼ିଆ ପ୍ରଚଳନରେ ଅସୁବିଧା ଅନୁଭୂତ ହୁଏ ତେବେ ଏ ଜିଲାକୁ ମଧ୍ୟ ପ୍ରଦେଶରେ ନ ରଖି ଓଡ଼ିଶାରେ ସାମିଲ କରାଯାଉ ।'' ଏ ଯୁଗାନ୍ତକାରୀ ଦାବୀ ହିଁ ପରବର୍ତ୍ତୀ ପର୍ଯ୍ୟାୟରେ ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣର ବିରାଟ ଆନ୍ଦୋଳନ ସୃଷ୍ଟି କରିଛି । ହିତୈଷିଣୀ ୧୮୯୪ ଓ ତତ୍‌ପରବର୍ତ୍ତୀ ବିଭିନ୍ନ ସଂଖ୍ୟାରେ ଭାଷା ଆନ୍ଦୋଳନ ତୀବ୍ର ରୂପ ଧାରଣା କରିଛି । ହିନ୍ଦୀ ଭାଷାର ପ୍ରଶ୍ରୟ ଲାଭ, ଭାଷା ପରିବର୍ତ୍ତନ ସମ୍ବନ୍ଧେ ଡେପୁଟୀ କମିଶନର ସାହେବଙ୍କ ମତ, ମାତୃଭାଷାର ବିଲୋପ, ସମ୍ବଲପୁର ଭାଷା ସଙ୍କଟ, ଓଡ଼ିଆ ଭାଷାର ଅନାଦର, ଶୀର୍ଷକରେ

ହିତୈଷିଣୀ ଦୃଢ଼ମତ ପ୍ରକାଶ କରି ଜନସଚେତନତା ସୃଷ୍ଟି କରିବାରେ ସଫଳ ହୋଇଛି । ହିତୈଷିଣୀ ଓଡ଼ିଆ ଭାଷା ପ୍ରଚଳନ ସପକ୍ଷରେ ନିଜସ୍ୱ ମତ କେବଳ ପ୍ରଦାନ କରିନାହିଁ ବରଂ ଏ ସମ୍ପର୍କରେ ବୁଦ୍ଧିଜୀବୀ ଗୋଷ୍ଠୀଙ୍କ ପ୍ରତିକ୍ରିୟା ମଧ୍ୟ ପ୍ରକାଶ କରିଛି । ଏ ପ୍ରସଙ୍ଗରେ ଗଙ୍ଗାଧର ମେହେରଙ୍କ 'ଭାରତୀରୋଦନ' ଓ 'ଉତ୍କଳ ଭାରତୀଙ୍କ ନିବେଦନ', ଜଳନ୍ଧର ଦେବଙ୍କ 'ଉତ୍କଳ ଭାରତୀଙ୍କ କ୍ଷୋଭ' ଏବଂ 'ନିବେଦନ', ଭାଗିରଥି ରଥଙ୍କ 'ଭାଷାବିଭ୍ରାଟ' କବିତା ସହିତ ଅନେକ କବି ଓ ଲେଖକଙ୍କ ଛଦ୍ମ ନାମରେ ପ୍ରକାଶିତ ପତ୍ର, କବିତା ଆଲୋଚନା ପ୍ରଭୃତି ଏ ଆନ୍ଦୋଳନକୁ ଗତିମୁଖର କରିଥିଲା । ସେ ସମୟରେ ଅନ୍ୟାନ୍ୟ ସମ୍ବାଦପତ୍ର ଅପେକ୍ଷା 'ହିତୈଷିଣୀ'ରେ ଏ ବିଷୟରେ ବହୁ ଆନ୍ଦୋଳନ ହୋଇଥିଲା ।

ସମ୍ବଲପୁର ଅଞ୍ଚଳ ପରି ଗଞ୍ଜାମ ଅଞ୍ଚଳ ମଧ୍ୟ ଭାଷା ସଂକଟର ସମ୍ମୁଖୀନ ହୋଇ ଓଡ଼ିଶା ସହିତ ମିଶିବା ପାଇଁ ବ୍ୟଗ୍ର ହୋଇଉଠିଥିଲେ । ଓଡ଼ିଶାର ଶାସନ ପରିବର୍ତ୍ତନ ଶୀର୍ଷକରେ ଉତ୍କଳଦୀପିକା ଘୋଷଣା କଲେ-''ସମସ୍ତ ଓଡ଼ିଆ ଭାଷା ପ୍ରଚଳିତ ଖଣ୍ଡ ନ ହେଉ ପଛକେ ତହିଁର ଅଧିକାଂଶ ଏକଜଣ ଶାସନ କର୍ତ୍ତା ଅଧୀନରେ ଆସିବା ଓଡ଼ିଶାର ଉନ୍ନତିର ବିଷୟ ଅଟଇ । ଓଡ଼ିଶା ଏକ ଜଣ ଶାସନକର୍ତ୍ତାର ଅଧୀନ ନ ହେବାରୁ ଏହାର ଉନ୍ନତି ହୋଇପାରୁନାହିଁ ଓ ଗଞ୍ଜାମଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଭୂମି ଖଣ୍ଡ କି ଯହିଁରେ ଓଡ଼ିଆ ଭାଷା ପ୍ରଚଳିତ ଅଛି ତାହା ସମସ୍ତ ଏକାନିୟମ ଏକ ଶାସନକର୍ତ୍ତାର ଅଧୀନରେ ଆସିଲେ ଓଡ଼ିଆଙ୍କ ପ୍ରକୃତ ମଙ୍ଗଳହେବ ।''(ଉତ୍କଳ ଦୀପିକା ୧୦।୬। ୧୮୭୬) ସମ୍ବଲପୁର ଅଞ୍ଚଳରେ ହିନ୍ଦୀ ସରକାରୀ ଭାଷା ହେବାର ଆଶଙ୍କା ପ୍ରକାଶ ପରେ ତାହାକୁ ପ୍ରତିବାଦ ଜଣାଇ ହିତୈଷିଣୀ ଲେଖିଥିଲେ '' ଯଦି ଭାଷା ପରିବର୍ତ୍ତନ ନ କଲେ ମଧ୍ୟପ୍ରଦେଶ ଅଧୀନରେ ଏ ଜିଲ୍ଲାର ଶାସନ ବିଚାର କାର୍ଯ୍ୟ ଚଳି ନ ପାରେ । ତେବେ ଏ ଜିଲାକୁ ମଧ୍ୟପ୍ରଦେଶରୁ ବାହାର କରି ଓଡ଼ିଶା ସହିତ ମିଶାଇ ଦେଲେ ଭାଷା ପରିବର୍ତ୍ତନ ନ କଲେ ମଧ୍ୟ କାର୍ଯ୍ୟ ଚଳିପାରେ ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥିତ ବିଷୟ ହେବା ଉଚିତ ।'' (ସମ୍ବଲପୁର ହିତୈଷିଣୀ ୨୩।୧।୧୮୯୫) ଏହି ଉଦ୍‌ଘୋଷଣା ଓଡ଼ିଆ ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣର ପ୍ରାରମ୍ଭିକ ଦାବିପତ୍ର । ଏତଦ୍‌ବ୍ୟତୀତ ସମ୍ବଲପୁର ହିତୈଷିଣୀ ଓଡ଼ିଆ ସମାଲୋଚନା ସାହିତ୍ୟ, ଗଳ୍ପ, କବିତା ଧାରାକୁ ପରିପୁଷ୍ଟ କରିବା ସହିତ ନୂତନ ସାହିତ୍ୟିକ ସୃଷ୍ଟିରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲା । ଶ୍ୟାମସୁନ୍ଦର ରାଜଗୁରୁଙ୍କ ସମ୍ପାଦନାରେ ଇଂରାଜୀ ପତ୍ରିକା 'ଗଞ୍ଜାମ ନ୍ୟୁଜ୍' ୧୮୯୬ରେ ପ୍ରକାଶ ପାଇଥିଲା ଏବଂ ୧୮୯୯ରେ 'ଗଞ୍ଜାମ ଓଡ଼ିଆ ହିତବାଦିନୀ' ପଣ୍ଡିତ ଗଦାଧର ବିଦ୍ୟାଭୂଷଣ ଓ ଚିନ୍ତାମଣି ମହାନ୍ତିଙ୍କ ସମ୍ପାଦନାରେ ବ୍ରହ୍ମପୁରରୁ ପ୍ରକାଶ ଲଭିଥିଲା । ଏତଦ୍‌ବ୍ୟତୀତ 'ବ୍ରାହ୍ମ' ୧୮୯୪ ଭିକ୍ଟୋରିଆ ପ୍ରେସ୍, କଟକ, 'ଭକ୍ତିତତ୍ତ୍ୱ' ୧୮୯୨, 'ଉତ୍କଳ ଭକ୍ତି ପ୍ରଦାୟିନୀ' ୧୮୭୩, 'ଭାଗବତ ଭକ୍ତି ପ୍ରଦାୟିନୀ'

୧୮୭୩, 'ପୁରୁଷୋତ୍ତମ ଦୀପିକା' ୧୮୮୦, 'ହରିଭକ୍ତି ପ୍ରଦାୟିନୀ' ୧୮୮୫ ପ୍ରଭୃତି ପତ୍ରପତ୍ରିକା ବିଭିନ୍ନ ଧର୍ମ ଧାରାର ସମ୍ବାଦ ପରିବେଷଣ କରି ଓଡ଼ିଆ ଜନଜୀବନର ସାଂସ୍କୃତିକ ଚେତନାକୁ ଋଦ୍ଧିମନ୍ତ କରିଥିଲା ।

ଓଡ଼ିଶାର ଧର୍ମ ଓ ସମ୍ବାଦ କ୍ଷେତ୍ରକୁ ପରିପୁଷ୍ଟ କରିଥିବା ଊନବିଂଶ ଶତାବ୍ଦୀର ଉଲ୍ଲିଖିତ ପତ୍ରପତ୍ରିକା ସମୂହ ଏକ ପରିବ୍ୟାପ୍ତ ପୃଷ୍ଠଭୂମି ନିର୍ମାଣରେ ସହାୟକ ହୋଇଥିଲା । ଯେଉଁ ପୃଷ୍ଠଭୂମି ଉପରେ ବିଂଶ ଶତାବ୍ଦୀର ଅନେକ ସମ୍ବାଦପତ୍ର ପ୍ରକାଶ ପାଇ ଓଡ଼ିଆ ସାଂସ୍କୃତିକ ଚେତନାକୁ ବହୁପ୍ରସାରି କରିଥିଲା । ଊନବିଂଶ ଶତାବ୍ଦୀରେ ନଟବର ସାମନ୍ତରାୟଙ୍କ ତଥ୍ୟ ଅନୁସାରେ ୬୨ଟି ପତ୍ରପତ୍ରିକା ପ୍ରକାଶ ପାଇଥିବାର ସୂଚନା ମିଳିଥିଲା ବେଳେ ଗବେଷକ ଦେବେନ୍ଦ୍ର କୁମାର ଦାଶ ୧୦୨ଟି ପତ୍ରିକା ପ୍ରକାଶ ପାଇଥିବାର ସୂଚନା ଦିଅନ୍ତି । କିନ୍ତୁ ବିଭିନ୍ନ ପତ୍ରପତ୍ରିକା ପୃଷ୍ଠାରୁ ସଂଗୃହିତ ତଥ୍ୟ ଆଧାରରେ ଏହି ସଂଖ୍ୟା ୧୦୫ ଥିବା ଜଣାପଡେ । ପତ୍ରପତ୍ରିକାର ଏକ ରସହୀନ ତାଲିକା ଦେବା ଅପେକ୍ଷା ଓଡ଼ିଆ ସମ୍ବାଦ ପରିବେଷଣ ଧାରାକୁ କିପରି ସେମାନେ ଋଦ୍ଧିମନ୍ତ କରିଥିଲେ ତାହା ହିଁ ଅଧ୍ୟୟନର ବିଷୟ । 'ଉତ୍କଳ ଦୀପିକା', 'ବାଲେଶ୍ୱର ସମ୍ବାଦବାହିକା', 'ନବସମ୍ବାଦ' ଏବଂ 'ସମ୍ବଲପୁର ହିତୈଷିଣୀ' ଯେଉଁ ପୃଷ୍ଠଭୂମି ଏବଂ ସମ୍ବାଦ ପରିବେଷଣର ଆଚାରସଂହିତା ସୃଷ୍ଟି କରି ଯାଇଛନ୍ତି ସେହି ଭିତ୍ତି ଉପରେ ବିଂଶ ଶତାବ୍ଦୀର ପତ୍ରପତ୍ରକା ପ୍ରତିଷ୍ଠିତ । ଏହି ଚାରୋଟି ବୃହତ୍ତ ସମ୍ବାଦପତ୍ରର ସୃଷ୍ଟି ବିତର୍କିତ, ପ୍ରକାଶ ଉଜ୍ଜ୍ୱଳମୟ ଏବଂ ପ୍ରଭାବ ଗରିମାମୟ । ଏହି ସମୟର ସମ୍ବାଦପତ୍ରଗୁଡିକ ମୁଖ୍ୟତଃ ଶିକ୍ଷାର ପ୍ରସାର, କୁସଂସ୍କାର ଦୂରୀକରଣ ଏବଂ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଆଭିମୁଖ୍ୟକୁ ଆପଣେଇ ନେଇଥିବା ଜଣାପଡେ । ଊନବିଂଶ ଶତାବ୍ଦୀର ଦୀପିକା, ବାହିକା ଓ ହିତୈଷିଣୀ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପ୍ରକାଶ ଲଭି ଓଡ଼ିଶାର ସାଂସ୍କୃତିକ, ସାମାଜିକ ଓ ସାରସ୍ୱତ ବାତାବରଣକୁ ଉଚିତ ଦିଗ୍‌ଦର୍ଶନ ଦେଇଥିଲେ । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଉପରୋକ୍ତ ତିନୋଟି ପତ୍ରିକା ବ୍ୟତୀତ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଅନେକ ସମ୍ବାଦ ପତ୍ର ପ୍ରକାଶ ଲଭି ନିଜର ଅବଦାନରେ ଓଡ଼ିଶାର ଭୂୟୋବିକାଶରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

## ୨) ଶିକ୍ଷା, ଚିକିତ୍ସା, ବ୍ୟବସାୟ ଓ ନାରୀ ପତ୍ରିକା :

ବାଲେଶ୍ୱର ଦେ' ପ୍ରେସ୍‌ରୁ ୧୮୭୪ରେ ଶିକ୍ଷକ ପତ୍ରିକା ପ୍ରକାଶିତ । ଏଥିରେ ଶିକ୍ଷକମାନଙ୍କ ଉପଯୋଗୀ ଓ ଶିକ୍ଷଣୀୟ ବିଷୟବସ୍ତୁ ସ୍ଥାନିତ । ୧୮୮୫ରେ ଶିକ୍ଷାବନ୍ଧୁ ଯୋଗେଶ ଚନ୍ଦ୍ରଜେନାଙ୍କ ସମ୍ପାଦନାରେ ପ୍ରକାଶପାଏ । ଏହି ପତ୍ରିକା ମୁଖ୍ୟତଃ ରାଧାନାଥ ଓ ମଧୁସୂଦନ ରାଓଙ୍କ ପ୍ରୋତ୍ସାହନରେ ଚଳୁଥିଲା । ପାଠ୍ୟପୁସ୍ତକ ଜନିତ ଆନ୍ଦୋଳନ ବେଳେ ଶିକ୍ଷାବନ୍ଧୁ ରାଧାନାଥଙ୍କ ସପକ୍ଷରେ ଏବଂ ଦୀପିକା ଓ ବାହିକା ବିରୁଦ୍ଧରେ ସମ୍ବାଦ ପରିବେଷଣ

କରିଛି । ଶିକ୍ଷା ଓ ସାହିତ୍ୟ ସଂକ୍ରାନ୍ତରେ ଅନେକ ସମ୍ବାଦ ଏଥିରେ ସ୍ଥାନିତ ହେଉଥିଲା । ପ୍ରାଚୀନ ଓ ଆଧୁନିକ ଶିକ୍ଷା ପ୍ରଣାଳୀ, ବାଳକମାନଙ୍କୁ ଦଣ୍ଡଦେବା ବିଷୟରେ କେତୋଟି କଥା, ଭାରତବର୍ଷରେ ଶିକ୍ଷା ବିସ୍ତାର, ଶିକ୍ଷାର ଉଦ୍ଦେଶ୍ୟ ମଣିଷ ହେବା ଆଦି ପ୍ରବନ୍ଧ ଶିକ୍ଷାବନ୍ଧୁରେ ପ୍ରକାଶ ପାଇଥିଲା ।

୧୮୮୬ ଖ୍ରୀଷ୍ଟାବ୍ଦରେ ଶ୍ରୀନାଥ ଦତ୍ତଙ୍କ ସମ୍ପାଦନାରେ ବ୍ୟବସାୟୀ ପତ୍ରିକା ବାରିପଦାରୁ ପ୍ରକାଶ ପାଇଥିଲା । ଏହା କୃଷି ଓ ଶିଳ୍ପ ବିଷୟକ ପ୍ରଥମ ପତ୍ରିକା । ଶ୍ରୀନାଥ ଦତ୍ତ ଥିଲେ ବିଲାତ୍ ଫେରନ୍ତା କୃଷିବିତ୍ । ଏହି ମାସିକ ପତ୍ରରେ ସେ କୃଷି,ଶିଳ୍ପ, ବାଣିଜ୍ୟ ଓ ବିଜ୍ଞାନ ବିଷୟ ଗର୍ଭିତ ଅନେକ ଶିକ୍ଷଣୀୟ ବିଷୟ ସରଳ ଓ ସାଧାରଣଙ୍କ ବୋଧଗମ୍ୟ ଭାଷାରେ ପ୍ରକାଶ କରିଥିଲେ । ଏହି ପତ୍ରିକାର ପାଠକମାନଙ୍କୁ ଦୁଇଟି ରୌପ୍ୟ ପଦକ ପ୍ରଦାନର ଯୋଜନା କରାଯାଇଥିଲା । ଯାହା ଥିଲା ସମକାଳର ଏକ ଅଭିନବ ଓ ଅନନ୍ୟ ଯୋଜନା । ପାଠକମାନେ ପତ୍ରିକା ପ୍ରଦତ୍ତ ଜ୍ଞାନ ଦ୍ୱାରା କେତେଦୂର ଲାଭବାନ ହୋଇଛନ୍ତି ଏବଂ ଶିଳ୍ପ ଓ କୃଷିରେ କ'ଣ ଉନ୍ନତି କରିଛନ୍ତି ଏହି ପୃଷ୍ଠଭୂମିରେ ତାଙ୍କର ନମୂନା ଏବଂ ଉତ୍ତର ଉପରେ ପୁରସ୍କାର ପ୍ରଦାନ କରାଯାଉଥିଲା । ବାରିପଦା ରାଜାଙ୍କର ଏହି ପୁରସ୍କାର ପ୍ରଦାନର ପରମ୍ପରା ପରବର୍ତ୍ତୀ ପର୍ଯ୍ୟାୟରେ ଉତ୍କଳପ୍ରଭାରେ ସାରସ୍ୱତ ରଚନା ପାଇଁ ପ୍ରଦତ୍ତ ହୋଇଥିଲା ।

ଉତ୍କଳ ହିତୈଷୀ ଓ ଚିକିତ୍ସାତତ୍ତ୍ୱର ବିଜ୍ଞାନ ନାମରେ ଏକ ପତ୍ରିକା ୧୮୯୪ରେ ପଦ୍ମଲୋଚନଙ୍କ ସମ୍ପାଦନାରେ କଲିକତାରୁ ପ୍ରକାଶ ପାଉଥିଲା । ଚିକିତ୍ସା ବିଜ୍ଞାନ ସମ୍ପର୍କରେ ଅନେକ ତଥ୍ୟ ଏଥିରେ ସନ୍ନିବେଶିତ ।

ଡାକ୍ତର ରାମକୃଷ୍ଣ ସାହୁଙ୍କ ସମ୍ପାଦନାରେ ୧୮୯୪ରେ ଉତ୍କଳ ଚିକିତ୍ସକ କଟକ ରାୟପ୍ରେସ୍‌ରେ ମୁଦ୍ରିତ ଓ ପ୍ରକାଶିତ । ଏହି ପତ୍ରିକାରେ ଆୟୁର୍ବେଦ, ସ୍ୱାସ୍ଥ୍ୟବିଜ୍ଞାନ, ଗୃହଚିକିତ୍ସା ଓ ଜଡିବୁଟି ସମ୍ପର୍କରେ ଅନେକ ଜ୍ଞାତବ୍ୟ ତଥ୍ୟ ରହୁଥିଲା ।

ଓଡ଼ିଆ ଭାଷାରେ ପ୍ରକାଶିତ ପ୍ରଥମ ମହିଳା ପତ୍ରିକା 'ଆଶା' ୧୮୯୧ରେ ରେବା ରାୟଙ୍କ ସମ୍ପାଦନାରେ କଟକ ଭିକ୍ଟୋରିୟା ପ୍ରେସ୍‌ରେ ମୁଦ୍ରିତ ହୁଏ । ୧୮୮୮ରେ ସାଧୁଚରଣ ରାୟଙ୍କ ସମ୍ପାଦନାରେ ବ୍ରାହ୍ମବିଚାର ଧାରା ଆଧାରିତ ପତ୍ରିକା 'ଆଶା' ପ୍ରକାଶ ପାଉଥିଲା । ଏଥିରେ ମଧୁସୂଦନ ରାଓ, ବିଶ୍ୱନାଥ କର, ବିଜୟ ଚନ୍ଦ୍ର ମଜୁମଦାର ପ୍ରମୁଖ କବିତା, ସଂଗୀତ ଓ ପ୍ରବନ୍ଧ ରଚନା କରୁଥିଲେ । ପତ୍ରିକାଟି ଦୁଇ ବର୍ଷ ପରେ ବନ୍ଦ ହୋଇ ମହିଳା ପତ୍ରିକାରୂପେ ଆବିର୍ଭାବ ହେଲା । ଶ୍ରୀମତି ରେବା ରାୟ ସମ୍ପାଦିତ ଏହି ମାସିକ ପତ୍ରିକାର ଶିରୋଭୂଷଣ ରୂପେ "କନ୍ୟାପ୍ୟେବଂ ପାଳନୀୟା ଶିକ୍ଷଣୀୟାତିଯତ୍ନତଃ" ଶ୍ଳୋକଟି ମୁଦ୍ରିତ ହେଉଥିଲା ।

ଏହି ପତ୍ରିକାରେ ବ୍ରାହ୍ମଧର୍ମାଶ୍ରୟୀ, ନାରୀ ସମସ୍ୟା ଆଧାରିତ ଆଲୋଚନା ଓ ଅନୁବାଦର ପ୍ରାଧାନ୍ୟ ଦେଖାଯାଏ । ଆଦର୍ଶ ଗୃହିଣୀ, ଦେଶୀୟ ସ୍ତ୍ରୀ ଶିକ୍ଷାର ଆବଶ୍ୟକତା, ଆତ୍ମସଂଯମ, ସ୍ତ୍ରୀ ଲୋକର ସାହାସ, ମାତାର ସନ୍ତାନ ପ୍ରତି କର୍ତ୍ତବ୍ୟ, ସୁରାପାନ ଓ ଅବରୋଧ ପ୍ରଥାର ଉତ୍ପତ୍ତି, ବିଦେଶୀ ନାରୀର ଶକ୍ତି, ନାରୀ ପ୍ରକୃତିର ବିଶେଷତ୍ୱ, ମାତା ଓ ଶାଶୁ ପ୍ରତି ଭକ୍ତି ପ୍ରଭୃତି ରଚନା ଆଶାର କୋଳମଣ୍ଡନ କରିଥିଲା । ପତ୍ରିକାଟିର ନିୟମିତ ଲେଖକ ଭାବରେ କୁମାରୀ ଏଞ୍ଜେଲିନା ଗ୍ରେସ୍ ରାଉତ, ବାସନ୍ତୀ ମଜୁମଦାର, ସରସ୍ୱତୀ ବାଇ, ପ୍ରମୁଖ ଦେଖାଯାନ୍ତି । ଏତଦ୍‌ବ୍ୟତୀତ ଶ୍ରୀ, ଶ୍ରୀମତୀ ଛଦ୍ମନାମରେ କିଛି ଲେଖା ପ୍ରକାଶ ପାଉଥିଲା । ପତ୍ରିକାଟି ବାମଣ୍ଡା ଯୁବରାଜ ସଚ୍ଚିଦାନନ୍ଦ ଦେବଙ୍କ ଆର୍ଥିକ ସହାୟତା ଲାଭ କରିଥିଲା ।

## ୩) ସାହିତ୍ୟ ପତ୍ରିକା :

ପ୍ରଥମ ପର୍ଯ୍ୟାୟରେ ଆଲୋଚିତ ସମ୍ବାଦପତ୍ର ସମୂହରେ ବିଶେଷ ପ୍ରସଙ୍ଗ କ୍ରମେ ସାହିତ୍ୟିକ ରଚନା ସ୍ଥାନ ପାଉଥିଲା । କିନ୍ତୁ ଓଡ଼ିଶା ବାଙ୍ମୟରେ ପ୍ରଥମ ସାହିତ୍ୟ ପତ୍ର ରୂପେ 'ଉତ୍କଳ ଦର୍ପଣ' ୧୮୭୩ ମସିହା ବାଲେଶ୍ୱର ଦେ'ଙ୍କ ଉତ୍କଳ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା । ଏହାର ପ୍ରକାଶକ, ପୃଷ୍ଠପୋଷକ ଓ ପରିଚାଳକ ଥିଲେ ରାଜା ବୈକୁଣ୍ଠନାଥ ଦେ । ଏହି ପତ୍ରିକା ରାଧାନାଥ ରାୟ ଓ ଜନ୍ ବିମ୍‌ସ୍‌ଙ୍କ ଅନୁପ୍ରେରଣାରେ ଆଗକୁ ଆଗେଇଥିଲା । ଦୁଇବର୍ଷ ମାସିକ ରୂପେ ପ୍ରକାଶ ପାଇଲା ପରେ ୧୮୭୫ରୁ ଏହା ପାକ୍ଷିକ ଭାବରେ ସମ୍ବାଦପତ୍ରର ରୂପ ନେଇଥିଲା । ପରେ ପରେ ସାପ୍ତାହିକୀ ରୂପେ ଏହା ପ୍ରକାଶ ପାଇଥିଲା । ରାଧାନାଥ ରାୟଙ୍କ ବିବେକୀ, ଇଟାଲୀୟ ଯୁବା, କାଳିଦାସ ମେଘଦୂତ, ମଧୁସୂଦନ ରାଓଙ୍କ ଚନ୍ଦ୍ର ଓ ତାରା, ଚନ୍ଦ୍ରଗ୍ରହଣ, ଗ୍ରହମାନେ ପ୍ରାଣୀମାନଙ୍କ ଆବାସ ଭୂମି କି ନା, ଅର୍ଥ ଓ ମୁଦ୍ରା, ଶାସନ ପ୍ରଣାଳୀ, ଉଲ୍‌କା ପିଣ୍ଡ, ବୁଦ୍ଧଦେବ, ମାତୃଭାଷା, ବିଦ୍ୟାନୁଶୀଳନ, ମାଇକେଲ୍ ମଧୁସୂଦନ ଦତ୍ତ, ସକ୍ରେଟିସ୍ ପ୍ରଭୃତି ରଚନା ଏହି ପତ୍ରିକାର ପୃଷ୍ଠାମଣ୍ଡନ କରିଥିଲା । ଏହି ପତ୍ରିକାରେ ଧନଞ୍ଜୟ ସିଂ ଶୀର୍ଷକରେ ଏକ ଉପନ୍ୟାସ ଧାରାବାହିକ ଭାବେ କୌଣସି ଅଜ୍ଞାତନାମା ଲେଖକଙ୍କ ଦ୍ୱାରା ପ୍ରକାଶ ପାଇଛି । ବଳରାମ ଦାସଙ୍କ ଅନୂଦିତ କାଳିଦାସଙ୍କ କୁମାର ସମ୍ଭବଂ, ହଣ୍ଟରଙ୍କ ଓଡ଼ିଶା ଇତିହାସ ଗ୍ରନ୍ଥର ସମୀକ୍ଷା ଏବଂ ସଂସ୍କୃତି,ସାହିତ୍ୟ, ଶିକ୍ଷା, ସମାଜବ୍ୟବସ୍ଥା ବିଷୟକ ଅନେକ ପତ୍ର ଏହି ପତ୍ରିକାରେ ପ୍ରକାଶିତ । ଏହି ପତ୍ରିକାର ପ୍ରାରମ୍ଭିକ ସଂଖ୍ୟାଗୁଡ଼ିକରେ ରହସ୍ୟ ଶୀର୍ଷକରେ ଏକ ସ୍ୱତନ୍ତ୍ର ରଚନା ସ୍ଥାନିତ । ଏଥିରେ ବ୍ୟକ୍ତି ଜୀବନର ଅହଂ ଓ ନିର୍ବୋଧତା ଦୈହିକ ଆଚରଣ ବ୍ୟଞ୍ଜନାତ୍ମକ ଶୈଳୀରେ ପ୍ରକାଶ ପାଇଛି । ଯାହାକି ଆମର ଆଧୁନିକ କ୍ଷୁଦ୍ରଗଳ୍ପର ପ୍ରାକ୍‌ରୂପ ରୂପେ ଆମେ ଗ୍ରହଣ କରିପାରିବା । ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା ଜାନୁଆରୀ ୧୮୧୩ରେ ପ୍ରକାଶିତ ରହସ୍ୟ ପାଠକଙ୍କ ଅବଗତି ପାଇଁ ଏଠାରେ ଉଦ୍ଧୃତ ହେଲା –

ଜଣେ ଗଉଡ଼ ଗ୍ରାମକୁ ଆସି ତାହା ପ୍ରତିବେସୀମାନଙ୍କଠାରେ ବଡ଼ାଇ କରି କହିଲା ଯେ ସାହେବ ମୋ ସାଙ୍ଗରେ କଥା କହିଲେ, ସେମାନେ ପଚାରିଲେ କଣ କହିଲେ ? "ନା ତଫାତ ଯାଓ" ।

ଜଣେ ମିଆଁ ପାଲକିରେ ଯାଉଥିଲେ ବାଟରେ ଠାକରେ ପାଲକି ରଖିଲେ । ସେଠାରେ ଗୋଟିଏ ତୁଳସୀଗଛ ଥିଲା । ବେହେରାମାନେ ତାହା ଦେଖି ଜୁହାର ହେଲେ । ମିଆଁ ପଚାରିଲେ କାହାକୁ ଜୁହାର ହେଲ ? ବେହେରାମାନେ କହିଲେ "ତୁଳସୀ ଗଛକୁ" । ମିଆଁ କହିଲେ "ସେ ତୁମ୍ଭର କିଏ" ? ବେହେରା "ଦେବୀ ବୃନ୍ଦାବତୀ" । ସାହେବ "ହଁ ଅଅ" । ଏହା କହି ମିଆଁ ବୃନ୍ଦାବତୀକୁ ଛିଣ୍ଡାଇ ଚୁବାଇଲେ, ବେହେରାମାନେ କ୍ରୋଧ ସହିତ ତୂନୀ ହେଲେ । କେତେକ ଘଣ୍ଟା ପରେ ପୁଣି ଆଉ ଏକଠାରେ ଗୋଟାଏ ବିଛୁଆତି ଗଛ ଦେଖି ସେଠାରେ ମଧ ପାଲକି ରଖି ବେହେରାମାନେ ଜୁହାର ହେଲେ । ମିଆଁ ପୂର୍ବପରି ତାକୁ ସୁଦ୍ଧା ଆଣି ଚୁବାଉଁ ଚୁବାଉଁ ନାଚିଲେ !!!

ଶୀତକାଳ ଅନ୍ଧାର ରାତ୍ରିରେ ଜଣେ ବୈଦ୍ୟ ଜଣକ ଦୁଆରରେ ଆସି ଉପସ୍ଥିତ ହେଲେ । ଗୃହସ୍ଥ ବୈଦ୍ୟ ଦେଖି କହିଲେ ଆପଣ ମୋହ ହାତ ଦେଖନ୍ତୁ । ବୈଦ୍ୟ ଦେଖି କହିଲେ ଆପଣଙ୍କର ପୀଉ ବୃଦ୍ଧି ହୋଇଅଛି । ସେଠାରେ ଆଉ ଜଣେ ବସିଥିଲେ ସେ କହିଲେ ବେଳେ ମୋହ ହାତ ଦେଖନ୍ତୁ ଭଲା ? ବୈଦ୍ୟ କହିଲେ ଦେଖାଓ । ସେ ନ ଦେଖାଇ ଗୃହସ୍ଥ ପୁଣି ଆପଣା ହାତ ତାହାଙ୍କ କାଖତଳ ଦେଇ ଦେଖାଇଲେ । ସେଠାରୁ ବୈଦ୍ୟ ଦେଖି କହିଲେ ତୁମ୍ଭର ବାତ ବୃଦ୍ଧି ହୋଇଅଛି । ଗୃହସ୍ଥ ହସିଲେ, ବୈଦ୍ୟ ଅପ୍ରସ୍ତୁତ ହୋଇ ପ୍ରସ୍ଥାନ କଲେ !!!

ଆଧୁନିକ ଓଡ଼ିଆ ଗଦ୍ୟରୀତି ଗଢ଼ଣରେ 'ଦର୍ପଣ'ର ଭୂମିକା ଉଲ୍ଲେଖଯୋଗ୍ୟ । କଥିତ ଭାଷା ଲିଖିତ ଭାବରେ କେଉଁ ରୂପ ନେବ ତା' ଉପରେ ଏକ ସୁନ୍ଦର ବିତର୍କ ସୃଷ୍ଟି ହୋଇଛି 'ଦର୍ପଣ'ରେ । 'ଉକ୍ରଳ ପୁତ୍ର' ଓ 'ଦୀପିକା'ର ପ୍ରତିବାଦରେ 'ଦର୍ପଣ'ର ତଥ୍ୟ ନିଷ୍ଠତା ଓ ପରିଚ୍ଛନ୍ନ ଗଦ୍ୟ ଶୈଳୀର ଦୃଷ୍ଟାନ୍ତ ଉପଲବ୍ଧ କରିହୁଏ ।

ଓଡ଼ିଶାର ଦ୍ୱିତୀୟ ସାହିତ୍ୟ ପତ୍ର 'ଉକ୍ରଳ ମଧୁପ' ଉକ୍ରଳ ସଭାର ମୁଖପତ୍ର ରୂପେ କଟକ ପ୍ରିଣ୍ଟିଂ କମ୍ପାନୀ ଯନ୍ତ୍ରାଳୟରୁ ପ୍ରକାଶ ପାଏ । ଗୋପାଳଚନ୍ଦ୍ର ଦତ୍ତ ଏହାର ପ୍ରଥମ ସମ୍ପାଦକ ଥିଲେ । ୧୮୭୯ରେ ପତ୍ରିକାର ଦ୍ୱିତୀୟ ଭାଗର ପ୍ରଥମ ସଂଖ୍ୟାଠାରୁ ସମ୍ପାଦନା କାର୍ଯ୍ୟ କୃଷ୍ଣଚନ୍ଦ୍ର ପଟ୍ଟନାୟକ ଓ ଅଭିନ୍ନ ନାୟକ ନିର୍ବାହ କରନ୍ତି । ଏହା ମାସିକ ପତ୍ରିକା ଓ ସମାଲୋଚନା ରୂପେ ନିଜର ଆଭିମୁଖ୍ୟ ପ୍ରକାଶ କରିଥିଲେ ହେଁ ପ୍ରାୟ ଦୁଇମାସରେ ପ୍ରକାଶ ଲଭୁଥିଲା । ପତ୍ରିକାର ପ୍ରଚ୍ଛଦର ଚାରିଦିଗରେ ନିମ୍ନ ଶ୍ଳୋକର ଚାରିଟି ଧାଡି ମୁଦ୍ରିତ ହୋଇ ତା'ର ଉତ୍କର୍ଷ ପ୍ରତିପାଦନ କରୁଥିଲା ।

"କାବ୍ୟୋତ୍କୃଷ୍ଟାଙ୍ଗ ଚକ୍ରୋଲ୍ଲସିତ କୁବଳୟାଦେଶ ନିର୍ହୃତ୍ୟସାରଂ
କ୍ଲିଷ୍ଟାଙ୍ଗା କେତକୀ ମାକଳିତ ସୁରୁଚିରା ମୁଞ୍ଜହତ୍ତାଂ ପଦାଳୀଂ ।
ପ୍ରାପ୍ତୋତ୍ସାହୋତ୍କଳା ନାମପି ଲଳିତ କର୍ଲୈ ର୍ନନ୍ଦୟିତ୍ୱେ ବଚୋୟଂ
ସଦବଂଶାଦେଃପ୍ରସୂତୋ ବିଜୟତୁ ମଧୁପଃ ସିଞ୍ଚତେ ହୃଦ୍‌ଗୁହାୟାଂ ।"

୧୮୭୯ ଉତ୍କଳ ମଧୁପର ୨ୟ ଭାଗରେ ଉଲ୍ଲିଖିତ ଶ୍ଳୋକ ପରିବର୍ତ୍ତେ ନିମ୍ନୋକ୍ତ ଶ୍ଳୋକଟି ମୁଦ୍ରିତ ହୋଇଥିଲ ।

"ଖ୍ୟାତୋତ୍କଳୀୟ କବି କାବ୍ୟ ପ୍ରସୂନ ସଂଘାତ୍
ପୀତ୍ୱା ମଧୁନି ମଧୁରାଣି ପ୍ରଫୁଲ୍ଲଚିତ୍ତଃ
ସଂଖ୍ୟାବତାଂ ସୁର ସଦ୍ଭାବବିଦାଂ ସମାଜେ
ବନ୍ତମ୍ୟତେ ହି ମଧୁପୋ ନବଜାତ ପକ୍ଷଃ ।"

ଏହାର ମୁଖ୍ୟ ପୃଷ୍ଠପୋଷକ ଗୌରୀଶଙ୍କର ରାୟ ଥିବା ଜଣାଯାଏ ଏବଂ ରାମଶଙ୍କର ରାୟ ଥିଲେ . ଏହାର ମୁଖ୍ୟ ଲେଖକ । 'ଉତ୍କଳ ମଧୁପ'ରେ ମୁଖ୍ୟତଃ ଭଞ୍ଜୀୟ କାବ୍ୟ ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ମୂଳ ପାଠ, ଶବ୍ଦାର୍ଥ ଓ ଆଲୋଚନା ସହିତ ପ୍ରକାଶ ପାଉଥିଲା । ଏହାବ୍ୟତୀତ ରାମଶଙ୍କର ରାୟଙ୍କ ସୌଦାମିନୀ ଉପନ୍ୟାସ, ଅନ୍ୟାନ୍ୟ କବିତା ଏବଂ କିଛି ମନନଧର୍ମୀ ପ୍ରବନ୍ଧ 'ଉତ୍କଳ ମଧୁପ'ରେ ପ୍ରକାଶ ପାଉଥିଲା । 'ଉତ୍କଳ ମଧୁପ'ରେ ଲେଖକମାନଙ୍କର ନାମ ପ୍ରକାଶ ପାଉ ନ ଥିବାରୁ ଲେଖକମାନଙ୍କୁ ଜାଣିବା ସହଜସାଧ୍ୟ ନୁହେଁ । ରାମଶଙ୍କର ରାୟଙ୍କ ସ୍ୱୀକାରୋକ୍ତି କ୍ରମରେ ପ୍ରେମତରି ଗାଥା ଓ ସୌଦାମିନୀ ତାଙ୍କର ରଚନା ବୋଲି ଜଣାପଡେ । ସେହିପରି ଜୀବନ ଚିନ୍ତା ମଧୁସୂଦନ ରାଓଙ୍କ ରଚନା ଭାବରେ ଜଣା ପଡିଥାଏ । ଏତଦ୍‌ବ୍ୟତୀତ କ୍ଷୀରୋଦ ଚନ୍ଦ୍ର ରାୟଚୌଧୁରୀ, ବନମାଳୀ ସିଂ, ଅଭିନ୍ନ ନାୟକ ପ୍ରମୁଖଙ୍କ ଲେଖା 'ଉତ୍କଳ ମଧୁପ'ରେ ପ୍ରକାଶ ପାଇଥିଲା । ପ୍ରାପ୍ତ ଗ୍ରନ୍ଥର ସଂକ୍ଷିପ୍ତ ସମାଲୋଚନା କ୍ରମରେ ମଧୁପରେ ଅନେକ ପୁସ୍ତକ ସମୀକ୍ଷା ଦେଖାଯାଏ । ୧୯୦୦ ଖ୍ରୀଷ୍ଟାବ୍ଦ ଜୁନ୍ ମାସରେ ଅନ୍ୟ ଏକ 'ଉତ୍କଳ ମଧୁପ' ବାମଣ୍ଡା ରାଜାଙ୍କ ଆର୍ଥିକ ସହାୟତାରେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ଦେବଗଡ଼ ସୁତ୍କଳ ପ୍ରେସ୍‌ରୁ ପ୍ରକାଶ ପାଏ । ଏହି ପତ୍ରିକାଟି ବିବିଧ ବିଷୟକ ଜ୍ଞାନକୋଷ ରୂପେ ପ୍ରତିଭାତ ହୋଇଥିଲା । ଅନେକ ଆଲୋଚକ ଏହି ଦ୍ୱିତୀୟ 'ଉତ୍କଳ ମଧୁପ'କୁ ପ୍ରଥମ 'ଉତ୍କଳ ମଧୁପ' ସହିତ ଏକ ଓ ଅଭିନ୍ନ ବୋଲି ବିବେଚନା କରନ୍ତି । ଦ୍ୱିତୀୟ 'ଉତ୍କଳ ମଧୁପ'ଟି ଏକ ଡ଼ାଇଜେଷ୍ଟ ରୂପେ ବିଭିନ୍ନ ଜ୍ଞାତବ୍ୟ ତଥ୍ୟର ସାରନିର୍ଯାସକୁ ସଂକ୍ଷିପ୍ତାକାରେ ପରିବେଷଣ କରୁଥିଲା । କୃଷି, ବିଜ୍ଞାନ, ଚିକିତ୍ସା, ବିଚିତ୍ର ସଂଗ୍ରହ, ଶ୍ଳୋକମାଳା, କାକ ବଚନ, ସୁବାକ୍ୟ ଭଣ୍ଡାର, ଢଗଢମାଳି ପ୍ରଭୃତି ଏଥିରେ ସ୍ଥାନ ପାଇଥିଲା । ରାଧାନାଥ ରାୟଙ୍କ ମନ୍ତବ୍ୟ-

"ଜ୍ଞାନର ପେଡ଼ା ସଭିଙ୍କି ଲୋଡ଼ା, ସଭିଏଁ ପାଇବେ ଥୋଡ଼ା ଥୋଡ଼ା"କୁ ଏହା ସଫଳକାମ କରିଥିଲା । ଏହି ପତ୍ରିକାଟି ବିଦ୍ୟାରତ୍ନଙ୍କ ସହିତ ଦେବଗଡ଼ରୁ ଆସି ଖଲିକୋର୍ଟ, ବଡଖେମୁଣ୍ଡି ଏବଂ ଶେଷରେ କଟକରୁ ପ୍ରକାଶ ପାଉଥିଲା । ବିଦ୍ୟାରତ୍ନଙ୍କ ମୃତ୍ୟୁ ପରେ ବିଶ୍ୱନାଥ କର ଏବଂ ତ୍ରିପତି ଗାୟକରତ୍ନ ଏହାକୁ ଅନେକ ବର୍ଷ ପର୍ଯ୍ୟନ୍ତ ବଞ୍ଚାଇ ରଖିଥିବା ଜଣାପଡେ । ୧୮୮୫ ଜାନୁୟାରୀ ମାସରେ ଶରତ ଚନ୍ଦ୍ର ମୁଖୋପାଧ୍ୟାୟଙ୍କ ସମ୍ପାଦନାରେ କଟକ ପ୍ରିଣ୍ଟିଂ ପ୍ରେସ୍‌ରୁ 'ପ୍ରଦୀପ' ପ୍ରକାଶ ପାଏ । ଏହା ସାହିତ୍ୟ ଓ ସମାଲୋଚନା ମୂଳକ ମାସିକ ପତ୍ର । 'ଦର୍ପଣ'ରେ ବଙ୍ଗଳାଭାଷା ପ୍ରଭାବିତ ଯେଉଁ ଓଡ଼ିଆ ଭାଷା ଦେଖାଯାଇଥିଲା 'ପ୍ରଦୀପ'ରେ ତାହା ଶୁଦ୍ଧ ଓ ସ୍ୱଚ୍ଛ ଶୈଳୀକୁ ଆପଣେଇ ନେଇଥିଲା । ପ୍ରଦୀପରେ ମୁଖ୍ୟତଃ ମଧୁସୂଦନ ରାଓ, ଗୌରଚନ୍ଦ୍ର ସେନ, ନାରାୟଣ ପ୍ରସାଦ ମିତ୍ର, ଜୟକୃଷ୍ଣ ମହାପାତ୍ର, ଗୋବିନ୍ଦ ରଥ, ରାମଶଙ୍କର ରାୟ, ସାଧୁଚରଣ ରାୟ, ଅଭିନ୍ନ ନାୟକ, ମଣି ଚରଣ ମହାପାତ୍ର ପ୍ରମୁଖ ଲେଖୁଥିବାର ଜଣାଯାଏ । ଏଥିରେ ଦାମୋଦର ପଟ୍ଟନାୟକଙ୍କ 'କପିଳାସଠାରୁ ବିଦାୟ' କାବ୍ୟାଂଶଟି ମୁଦ୍ରିତ । 'ପ୍ରଦୀପ'ରେ ପ୍ରକାଶିତ 'ମଠର ସମ୍ବାଦ' ଓ 'ଅନାଥିନୀ' ଉପନ୍ୟାସର ରଚକ ରୂପେ କେହି କେହି ଫକୀରମୋହନଙ୍କୁ ନିର୍ଦ୍ଦିଷ୍ଟ କରିଥାନ୍ତି । ବିଭିନ୍ନ ବୈଜ୍ଞାନିକ ପ୍ରବନ୍ଧକୁ ପ୍ରକାଶ କରି ଏହା ଦୃଷ୍ଟାନ୍ତ ସୃଷ୍ଟିକରିଥିଲା । ଓଡ଼ିଆ ଗଦ୍ୟ ଶୈଳୀ 'ପ୍ରଦୀପ' ମାଧମରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ପାଇଥିଲା ।

ମୟୂରଭଞ୍ଜ ମହାରାଜା ରାମଚନ୍ଦ୍ର ଭଞ୍ଜଦେବଙ୍କ ପୃଷ୍ଠପୋଷକତାରେ ୧୮୯୧ ଏପ୍ରିଲ୍ ମାସରୁ 'ଉତ୍କଳପ୍ରଭା' ବାରିପଦାରୁ ପ୍ରକାଶ ଲଭିଥିଲା । ଚୈତନ୍ୟ ପ୍ରସାଦ ରାୟ, ଗୋବିନ୍ଦଚନ୍ଦ୍ର ମହାପାତ୍ର, ରାଜେଶ୍ୱର ମହାପାତ୍ର ପ୍ରମୁଖ ଏହାର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଥିଲେ । ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ମହାଭାରତ ଅନୁବାଦ ଧାରାବାହିକ ଭାବେ ଏଥିରେ ପ୍ରକାଶ ପାଉଥିଲା । ଓଡ଼ିଶାର ପ୍ରଥମ ପତ୍ରିକା ଭାବରେ ଏହା ସୃଜନାତ୍ମକ ସମାଲୋଚନମୂଳକ ଲେଖାଗୁଡିକୁ ପୁରସ୍କୃତ କରୁଥିଲା । ପୁରସ୍କାର ଦେବାର ଏହି ନୂଆ ପରମ୍ପରା ଓଡ଼ିଆ ଲେଖକମାନଙ୍କୁ ଅନୁପ୍ରାଣିତ କରୁଥିଲା । ରାଧାନାଥ ରାୟଙ୍କ ଚିଲିକା, ମହାଯାତ୍ରା, ଯଯାତିକେଶରୀ, ମଧୁସୂଦନ ରାଓଙ୍କ ଋଷିପ୍ରାଣେ ଦେବାବତରଣ, ଗଙ୍ଗାଧର ମେହେରଙ୍କ ଇନ୍ଦୁମତୀ, ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ହିମାଚଳ, ଫକୀରମୋହନ ସେନାପତି, ଚନ୍ଦ୍ରମୋହନ ମହାରଣା, ରାମକୃଷ୍ଣ ସାହୁ ପ୍ରମୁଖ ଉତ୍କଳ ପ୍ରଭା ଦ୍ୱାରା ପୁରସ୍କୃତ ହୋଇଥିଲେ । ରାମଶଙ୍କର ରାୟଙ୍କ ବିବାସିନୀ ଉପନ୍ୟାସ ଧାରାବାହିକ ଭାବେ ଉତ୍କଳପ୍ରଭାରେ ପ୍ରକାଶିତ । ଲାଲା ରାମନାରାୟଣ ରାୟଙ୍କ ଯୁଗାନ୍ତକାରୀ ପ୍ରବନ୍ଧ ଉପେନ୍ଦ୍ର ଭଞ୍ଜ ଏଥିରେ ଧାରାବାହିକ ପ୍ରକାଶ ଲଭି ବିଜୁଳି, ଇନ୍ଦ୍ରଧନୁ, ସାରସ୍ୱତ କଳହକୁ ଜନ୍ମ ଦେଇଥିଲା । ଓଡ଼ିଆ ସାହିତ୍ୟର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି ଦିଗରେ ଏହି ପତ୍ରିକାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଆଧୁନିକ ରୁଚିସମ୍ପନ୍ନ ସୃଜନାତ୍ମକ କାବ୍ୟକବିତା ବନାମ ପ୍ରାଚୀନ ଆଦିରସାତ୍ମକ ସାହିତ୍ୟର ବୌଦ୍ଧିକ ଚର୍ଚ୍ଚା

ମାଧ୍ୟମରେ ଏକ ସାରସ୍ୱତ ଯୁଗବିପ୍ଳବ ସୃଷ୍ଟି ହୋଇଥିଲା । ଯାହାର ପ୍ରଥମ ନାନ୍ଦୀକାର 'ଉତ୍କଳ ପ୍ରଭା' । ଲାଲା ରାମନାରାୟଣ ରାୟଙ୍କ 'ଉପେନ୍ଦ୍ରଭଞ୍ଜ' ପ୍ରବନ୍ଧର ପ୍ରତିବାଦ ଗୋପାଳ ବଲ୍ଲଭ ଦାସ 'ଗୋଲକଧନ୍ଦା' ଛଦ୍ମ ନାମରେ 'ଉତ୍କଳ ଦୀପିକା' ୨୭.୫.୧୮୯୩ ସଂଖ୍ୟାରେ ପ୍ରକାଶ କରି ଭଞ୍ଜ କବିଙ୍କର ଉତ୍କର୍ଷତା ପ୍ରତିପାଦନର ଚେଷ୍ଟା କରିଛନ୍ତି । ଏହି ପ୍ରତିବାଦକୁ ଖଣ୍ଡନ କରି ସମ୍ବଲପୁର ହିତୈଷିଣୀରେ ରାମନାରାୟଣ ରାୟ ଏକ ପ୍ରତିବାଦ ପତ୍ର ପ୍ରକାଶ କରିଥିଲେ । ଦୀର୍ଘପତ୍ର ପ୍ରକାଶରେ ପରାଙ୍‌ମୁଖ ଦୀପିକା ସମ୍ପାଦକ ଗୋଲକଧନ୍ଦାଙ୍କ ଦୀର୍ଘ ପତ୍ରକୁ ସ୍ଥାନିତ କରିବାର ଯଥାର୍ଥ ନିବେଦନ ଛଳରେ ଲାଲାଙ୍କ ସମାଲୋଚନା ଜାତୀୟ ସାହିତ୍ୟର ପରିପନ୍ଥୀ ବୋଲି ମତବ୍ୟକ୍ତ କରିଛନ୍ତି । "ଲାଲା ରାମନାରାୟଣ ରାୟ ଯେ ଶ୍ରମ ସ୍ୱୀକାର ପୂର୍ବକ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥମାନ ପଢ଼ିଅଛନ୍ତି ଏଥିପାଇଁ ସେ ଧନ୍ୟବାଦର ପାତ୍ର ଅଟନ୍ତି । ମାତ୍ର ଦୁଃଖର ବିଷୟ ଯେ ସେ ଆଧୁନିକ ଉଗ୍ର ସଂସ୍କାରକ ଆଖିବାଟେ ବିଚାର ଦେଖି କରିବାକୁ ପ୍ରବୃତ୍ତ ହେବାରୁ ତାଙ୍କର ସମାଲୋଚନା ଚକୁଳି ଖାଇବା ଛାଡି ବିନ୍ଧ ଗଣିବା ନ୍ୟାୟକୁ ଅନୁସରି ଅଛି ଏବଂ ଏଥିପାଇଁ ଏତେ ଅନର୍ଥ ଉପସ୍ଥିତ ହୋଇଅଛି ।''

ଦୀପିକାରେ ପ୍ରକାଶିତ ଗୋଲକଧନ୍ଦାଙ୍କ ସମାଲୋଚନାର ଉତ୍ତର ହିତୈଷିଣୀ ତା ୧୪-୬-୧୮୯୩ରେ ପ୍ରେରିତ ପତ୍ର ସ୍ତମ୍ଭରେ ଲାଲା ଦେଇଛନ୍ତି । ଏ ଲେଖା ଉପରେ ଦୀପିକାରେ ପୁଣି ଗୋଲକଧନ୍ଦାଙ୍କ ସମାଲୋଚନା ତା ୧.୭.୧୮୯୩ରିଖରେ ପ୍ରକାଶ ପାଇଛି । ହିତୈଷିଣୀ ତା ୧୯.୭.୯୩ ପୃଷ୍ଠାରେ ଦାଶରଥି ରାଉତ ଭଞ୍ଜ ସାହିତ୍ୟର କଡା ସମାଲୋଚନା କରି ଲାଲାଙ୍କୁ ସମର୍ଥନ କରିଛନ୍ତି । ସେହି ସଂଖ୍ୟାରେ ଜଣେ ନିରପେକ୍ଷବାଦୀ କବି ଉପେନ୍ଦ୍ର ଭଞ୍ଜ ଶୀର୍ଷକରେ ତାଙ୍କୁ ଅଦ୍ୱିତୀୟ କବି ରୂପେ ଚିତ୍ରଣ କରିଛନ୍ତି ।

ହିତୈଷିଣୀ ୨୮.୬.୧୮୯୩ ସଂଖ୍ୟାରେ କବିଭୂଷଣ କଟକ ମହାଶୟ ରାମନାରାୟଣଙ୍କୁ ସମ୍ବୋଧନ କରି ଯାହା ଲେଖିଥିଲେ ତାକୁ ଅତିନିଷ୍ଠୁର ଭାବେ ଗୋଲକଧନ୍ଦା ଓ ଯୁବରାଜ ଦୀପିକା ୧୫.୭.୧୮୯୩ ପୃଷ୍ଠାରେ ସମାଲୋଚନା କରିଥିଲେ ।

"କି କଲି କି କଲି କି ବୁଦ୍ଧି ହୁଡିଲି
ବେନିନେତ୍ର ଥାଉଁ କଣା ମୁଁ ହୋଇଲି" !!

ଏ କବିତା ଅପେକ୍ଷା 'ଯୁବରାଜ'ଙ୍କ 'ସମାଲୋଚକ କବିଭୂଷଣ' କବିତା ଆହୁରି କୁତ୍ସିତ ଇଙ୍ଗିତରେ ପରିପୂର୍ଣ୍ଣ ।

"ଶତବାର ଚୁମ୍ବେ ତବ ମୁଖ ଆନନ୍ଦରେ
ହେ କବି ଭୂଷଣ ! ଆଧୁନିକ ଉତ୍କଳର
କବିଙ୍କ ମୁକୁଟ ମଣି... କରେ କର ମର୍ଦ୍ଦେ
ପୁନଶ୍ଚ ଆଦରେ, ଦେଖି ତବ ଲେଖାଛଟା
ଏ ମହାଶ୍ମଶାନେ ଉତ୍କଳ ସାହିତ୍ୟର ।"

ଯୁବରାଜଙ୍କ କବିତାରେ ରାଧାନାଥଙ୍କ କବିତାରେ ପ୍ରଦର୍ଶିତ ଆଦିରସ ପ୍ରତି କୁଟୀଳ କଟାକ୍ଷ ରହିଛି । ଏହି କବିତାକୁ ହିତୈଷିଣୀ ପୃଷ୍ଠାରେ ତୀବ୍ର ସମାଲୋଚନା କରାଯାଇଛି ।

ସମାଲୋଚକ କବିଭୂଷଣ
ସାବଧାନ! ସାବଧାନ! ହେ କବିଭୂଷଣ
ଦିଅନାହି ପଛଘୁଞ୍ଚା, ଲାଙ୍ଗୁଳ ଲୁଚାଇ
ପଳାଏ ପ୍ରାଣବିକଳେ ଯେହ୍ନେ ଶ୍ୱାନଶିଶୁ
ମହାବଳୀ ମହାବଳେ ଦେଖି ସମ୍ମୁଖରେ ।

ଏ ବାଦ ବିବାଦ ମଧ୍ୟରେ ଅଜସ୍ର ପ୍ରବନ୍ଧ କବିତାଦି ଦୀପିକା ଓ ହିତୈଷିଣୀକୁ ଆସିଲା । ଫଳରେ ବାଧ୍ୟ ହୋଇ ଦୀପିକା ଇନ୍ଦ୍ରଧନୁକୁ ସୃଷ୍ଟିକଲା ଓ ହିତୈଷିଣୀର ଉପପତ୍ର ରୂପେ ବିଜୁଳିର ଆବିର୍ଭାବ ହେଲା । ଏ ଦୁଇ ପତ୍ରର ସ୍ୱରୂପ ବିଶ୍ଲେଷଣ କରି ହିତୈଷିଣୀ ଘୋଷଣା କରିଛି, "ଆଜିକାଲି ଉତ୍କଳରେ ଇନ୍ଦ୍ରଧନୁ ଓ ବିଜୁଳି ନାମକ ଦୁଇଖଣ୍ଡି ଅସାମାୟିକ ପତ୍ର ଆଡମ୍ବରର ସହିତ ପ୍ରକାଶିତ ହେବାକୁ ଆରମ୍ଭ ହୋଇଅଛି । ଏକା ଉପେନ୍ଦ୍ର ଭଞ୍ଜ ବିଷୟ ନେଇ ପତ୍ରିକା ଦ୍ୱୟ ପ୍ରକାଶିତ ହେଉଥିଲେ ହେଁ ଉଭୟ ପତ୍ରର ଉଦ୍ଦେଶ୍ୟଗତ ପାର୍ଥକ୍ୟ ରହିଅଛି । ଏକ ପକ୍ଷ ଉପେନ୍ଦ୍ର ଭଞ୍ଜଙ୍କ ଦୋଷଗୁଡିକ ଦେଖାଇ ଦେବାକୁ ଉଦିତ, ଅପରପକ୍ଷ ତାଙ୍କର ଦୋଷକୁ ଗୁଣରୂପେ ବ୍ୟକ୍ତ କରିବାକୁ ବଦ୍ଧ ପରିକର । ଏହି ସୂତ୍ରରେ ଉତ୍କଳର ଶିକ୍ଷିତ ବ୍ୟକ୍ତିମାନେ ପ୍ରଧାନତଃ ତିନି ଶ୍ରେଣୀରେ ବିଭକ୍ତ ହୋଇଅଛନ୍ତି । ଏକ ଦଳ ଲୋକ ଉଭୟ ପକ୍ଷର କାର୍ଯ୍ୟକୁ ଅନୁମୋଦନ କରନ୍ତି ନାହିଁ, ଅପର ଦୁଇ ଦଳରୁ ଏକ ଦଳ ସପକ୍ଷରେ ଏବଂ ଏକଦଳ ବିପକ୍ଷରେ । ଏପରି ଦଳାଦଳି ବେଳେ ଆମ୍ଭମାନଙ୍କର ମୀମାଂସା ସର୍ବ ସମ୍ମତ ହେବାର ଆଶା ନାହିଁ ପୁଣି ଭଞ୍ଜ କବିତାର ଆଧ୍ୟାତ୍ମିକ ବୈଜ୍ଞାନିକ ବ୍ୟାଖ୍ୟା କରିବାକୁ ଆମ୍ଭମାନଙ୍କର ବଳ ନାହିଁ । ସୁତରାଂ ଏ ସ୍ଥଳେ ମୌନ ଭାବରେ ରହିବା ଶ୍ରେୟସ୍କର । ଏହି ପ୍ରସଙ୍ଗରେ ଅଜସ୍ର ବାଦ ପ୍ରତିବାଦ ପତ୍ର ଦୀପିକା ଓ ହିତୈଷିଣୀରେ ପହଞ୍ଚୁଥିଲା । ଫଳରେ ଏହି ଦୁଇ ସମ୍ବାଦପତ୍ର ଇନ୍ଦ୍ରଧନୁ(କଟକ ୧୮୯୩), ବିଜୁଳି (ଦେବଗଡ ୧୮୯୩) ନାମକ ଉପପତ୍ରକୁ ଯଥାକ୍ରମେ ପ୍ରକାଶ କରିଥିଲେ । ଇନ୍ଦ୍ରଧନୁ ଗୌରୀଶଙ୍କର ରାୟଙ୍କ ପୃଷ୍ଠପୋଷକତାରେ ଗୋପାଳବଲ୍ଲଭ ଦାସ (ଗୋଲକଧନ୍ଦା), ଦାମୋଦର ପଟ୍ଟନାୟକ (ଯୁବରାଜ), ରାମଶଙ୍କର ରାୟ (ସ୍ନେହାକର), ଗୋବିନ୍ଦ ରଥ (ଭୀମକର୍ମା), ଭାଗିରଥୀ ପ୍ରସାଦ ସାଠିଆ (ଭୂତେଶ) ପ୍ରମୁଖଙ୍କ ରଚନାରେ ପରିପୂର୍ଣ୍ଣ ଥିଲା । ଇନ୍ଦ୍ରଧନୁର ଲେଖକମାନେ ମୁଖ୍ୟତଃ ଥିଲେ ଛଦ୍ମବେଶୀ । ଇନ୍ଦ୍ରଧନୁରେ ଅନେକ ସାରସ୍ୱତ ସୃଷ୍ଟି ପ୍ରକାଶ ପାଇ ଓଡ଼ିଶାର ସାରସ୍ୱତ ଗନ୍ତାଘରକୁ ସମୃଦ୍ଧ କରିଥିଲା । ଏଥିରେ ପ୍ରକାଶିତ ଚଟନିଗୁଡ଼ିକ ଓଡ଼ିଆ ବ୍ୟଙ୍ଗ ସାହିତ୍ୟ ତଥା ଆଧୁନିକ କ୍ଷୁଦ୍ର ଗଳ୍ପର ପ୍ରାକ୍ ରୂପ ଭାବରେ ଗ୍ରହଣ କରାଯାଇପାରେ । ବୈଦେହିଶ ବିଳାସ ସମାଲୋଚନା (ବିଜୁଳି ବିଧି) ପ୍ରସଙ୍ଗରେ ଚଟନୀ ୧ ଓ ୨କୁ ପାଠକଙ୍କ ଅବଗତି ପାଇଁ ଇନ୍ଦ୍ରଧନୁ ୧/୭ରୁ ଉଦ୍ଧୃତ କରାଗଲା –

ଚଟନି ନ ୧ମ୍ବର -

ବାଲ୍ମୀକ - ଦୌଡି ଦୌଡି ବୁଲି ଆସେ ।

ଶିଷ୍ୟ - ଆଜ୍ଞା, ଗୋଟିଏ କଥାରେ ତ ତିନୋଟି ଭାବ ପ୍ରକାଶ କଲେ, ତେବେ ପ୍ରଭୁଙ୍କର କେଉଁଟି ଅଭିପ୍ରେତ ଅଧୀନକୁ କହିବା ହେଉନ୍ତୁ ।

ବାଲ୍ମୀକ - (ସବିସ୍ମୟେ) ତିନିଟା ଭାବ କିପରି ?

ଶିଷ୍ୟ - ଆଜ୍ଞା ! ପ୍ରଥମ - ଦୌଡି ଦୌଡି, କି ଧାବମାନ ହୋଇ, ବୁଲି କି ବୁଲି ନାମକ ମୃଗ ଶିଶୁ, ଆସେ କି ଆଗମନ କରୁଅଛି, ଏ ଅର୍ଥରେ ଆପଣଙ୍କ ବଚନ ସଂପୂର୍ଣ୍ଣ ବିଶୁଦ୍ଧ ହୋଇନାହିଁ ।

ଦ୍ୱିତୀୟ - ଦୌଡି ଦୌଡି କି ଦୃତ ପଦରେ, ବୁଲି କି ଭ୍ରମଣ କରି ଆସେ ଜାଣେ ଏଠାରେ ବଚନ ଆରମ୍ଭରେ ତୁମ୍ଭକୁ ବା ତାକୁ ଉହ୍ୟ ରଖିଅଛନ୍ତି ଏହା ମଧ୍ୟ କିପରି ଯୁକ୍ତିଯୁକ୍ତ ତାହା ଆପଣ କହନ୍ତୁ ।

ତୃତୀୟ- ବଚନର ଶେଷ ବର୍ଣ୍ଣରେ ହୁଏ ଆପଣ ଚନ୍ଦ୍ରବିନ୍ଦୁ ଉଚ୍ଚାରଣ କରି ନାହାନ୍ତି ବା ମୁଁ ଶୁଣିପାରିନାହିଁ ଏଣୁ କରି ମୁଁ ମନେ କରୁଅଛି ଯେ ଆପଣ କହିଲେ "ଦୌଡି ଦୌଡି ବୁଲି ଆସେଁ" ଅର୍ଥାତ୍ ମୁଁ ଦୃଢ଼ ପଦରେ ଭ୍ରମଣ କରି ଆସେଁ, ଯଦି ଆପଣଙ୍କର ଏହି ଉଦ୍ଦେଶ୍ୟ ହୋଇଥାଏ ତାହା ହେଲେ ଆପଣଙ୍କ ବଚନ ବିଶୁଦ୍ଧ ହୋଇନାହିଁ ।

ବାଲ୍ମୀକ - ଆଚ୍ଛା ବାବା, ତୁମ୍ଭର ବୁଦ୍ଧି ବର୍ତ୍ତମାନ ଏତେ ସୁକ୍ଷ୍ମ ହୋଇଅଛି ଯେ ଥିବା ନ ଥିବା ଜଣା ଯାଉନାହିଁ । ଏହା ଦେଖି ବଡ ଖୁସି ହେଲୁଁ । ତୁମ୍ଭକୁ ଆଉ ଅଧିକ କହିବାର ପ୍ରୟୋଜନ ଦେଖୁ ନାହୁଁ ।

ଚଟନି ନ ୨ମ୍ବର -

ଗୋବରା ଦାସ - ମାମୁଁ, ତୁମ ବୋପା ନାଁ କଣ ?

ମାମୁ - ଦୀନବନ୍ଧୁ ।

ଗୋ - ତୁମର ତେବେ ଯୋଡିଏ ବୋପା ।

ମାମୁଁ - କିଆଁ ?

ଗୋ - ଗୋଟିଏ ହ୍ରସ୍ୱଇକାର ବୋପା ଓ ଗୋଟିଏ ଦୀର୍ଘଇକାର ବୋପା । ଇତି ବିଜୁଳି ବ୍ୟାକରଣେ ।

ଇନ୍ଦ୍ରଧନୁ ପ୍ରକାଶର ଏକ ମାସ ପରେ ୧୮୯୩ ସେପ୍ଟେମ୍ବର ମାସରୁ 'ବିଜୁଳି' ଦାଶରଥି ରାଉତଙ୍କ ସମ୍ପାଦନାରେ ବାମଣ୍ଡା ରାଜାଙ୍କ ପୃଷ୍ଠପୋଷକତାରେ ପ୍ରକାଶ ପାଇଥିଲା । ଏଥିରେ ନୀଳମଣି ବିଦ୍ୟାରତ୍ନ, ଲାଲା ରାମନାରାୟଣ ରାୟ, ବିଶ୍ୱନାଥ କର, ବିଜୟଚନ୍ଦ୍ର ମଜୁମ୍‌ଦାର, ଦାମୋଦର ମିଶ୍ର, ଜଗଦାନନ୍ଦ ଦାସ, ଦାଶରଥୀ ରାଉତ ପ୍ରମୁଖ ଲେଖୁଥିବାର

ଜଣାପଡେ । 'ଇନ୍ଦ୍ରଧନୁ' ଭଞ୍ଜୀୟ ସାହିତ୍ୟକୁ ଆଦର୍ଶ ସାହିତ୍ୟ ରୂପେ ଘୋଷଣା କଲାବେଳେ 'ବିଜୁଳି' ଏହାକୁ ଖଣ୍ଡନ କରି ରାଧାନାଥଙ୍କ ସୃଷ୍ଟିକୁ ଜାତୀୟ ସାହିତ୍ୟ ଓ ଆଧୁନିକ ସାହିତ୍ୟର ମାନ୍ୟତା ଦେଇଛି । ବିଜୁଳି, ଇନ୍ଦ୍ରଧନୁ ସାରସ୍ୱତ କଳହରେ କ୍ଷତାକ୍ତ ହୋଇଥିଲେ ଭଞ୍ଜ, ରାଧାନାଥ, ସୁଢ଼ଳଦେବ ଓ ଗୌରୀଶଙ୍କର । କିନ୍ତୁ ପ୍ରତିଷ୍ଠିତ ହୋଇଥିଲା ଓଡ଼ିଆ ସାହିତ୍ୟ ସମାଲୋଚନାର ନୂତନ ପର୍ବ । କାମଳ ରୋଗଗ୍ରସ୍ତ ଓଡ଼ିଆ ସମାଲୋଚନା ସାହିତ୍ୟ ନୂତନ ସ୍ଫୁର୍ତ୍ତି, ନୂତନ ବାଙ୍ମୟରେ ବିଭୋର ହୋଇଥିଲା । ଏହି ସମାଲୋଚନା ସାହିତ୍ୟକୁ ଉଚିତ ଦିଗ୍‌ଦର୍ଶନ ଦେବା ପାଇଁ ଆଲୋଚନା ପତ୍ରିକା ଦେବଗଡଠାରୁ ୧୯୦୦ ମସିହା ମାର୍ଚ୍ଚ ମାସରେ ଜଳନ୍ଧର ଦେବଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା । ଏହା ପୂର୍ବରୁ ଓଡ଼ିଶା ପେଟ୍ରିଅଟ୍ ପ୍ରେସ୍‌ରେ ଉତ୍କଳ ସାହିତ୍ୟ ସମ୍ମିଳନୀ ସଭା ଦ୍ୱାରା ଦୟାନିଧି ଶାସ୍ତ୍ରୀଙ୍କ ସମ୍ପାଦନାରେ ସମାଲୋଚନା (୧୮୮୭) ପ୍ରକାଶ ପାଇଥିଲା । ଏହି ପତ୍ରିକା ସମାଲୋଚନା ମୂଳକ ଲେଖା ପ୍ରକାଶ କରିବାର ଆଭିମୁଖ୍ୟ ପ୍ରକାଶ କରିଥିଲେ ମଧ୍ୟ ସେଥିରେ ସଫଳ ହୋଇ ପାରି ନ ଥିଲା । ଅନ୍ୟପକ୍ଷରେ ଆଲୋଚନା ପତ୍ରିକା ଗବେଷଣାତ୍ମକ ଆଲୋଚନା ପ୍ରକାଶ କରିବାରେ ନେତୃତ୍ୱ ନେଇଥିଲା । ଏଥିରେ କୃଷ୍ଣପ୍ରସାଦ ଚୌଧୁରୀ, ନନ୍ଦକିଶୋର ବଳ, ଜଳନ୍ଧର ଦେବ, ଶଶୀଭୂଷଣ ରାୟଙ୍କ ଲେଖା ପ୍ରକାଶ ପାଇଥିବା ଜଣାପଡେ । ଆଲୋଚନା ପତ୍ରିକାର ପରବର୍ତ୍ତୀ ଦାୟାଦ ରୂପେ କୋଣାର୍କ, ଏଷଣା, ମୂଲ୍ୟାୟନ, ପ୍ରାଚୀ, ପ୍ରଜ୍ଞା ପ୍ରଭୃତି ସାମ୍ପ୍ରତିକ୍ ପତ୍ରିକାକୁ ଶ୍ରଦ୍ଧାର ସହ ସ୍ମରଣ କରାଯାଇପାରେ ।

ଓଡ଼ିଆ ସାରସ୍ୱତ ଆକାଶରେ କ୍ଷୀଣ ଆଲୋକ ପ୍ରଦାନ କରୁଥିବା ଉଲ୍ଲିଖିତ ପତ୍ରପତ୍ରିକାର କ୍ଷୀଣାଲୋକକୁ ସ୍ତବ୍ଧ କରି ଚନ୍ଦ୍ରମା ସଦୃଶ ୧୮୯୭ରେ ବିଶ୍ୱନାଥ କରଙ୍କ ସମ୍ପାଦନାରେ 'ଉତ୍କଳ ସାହିତ୍ୟ' ଉତ୍କଳ ସାରସ୍ୱତ ଗଗନରେ ଶୋଭାମଣ୍ଡିତ ହୋଇଥିଲା । ଆଲୋଚିତ ସମସ୍ତ ପତ୍ରିକାରେ ଓଡ଼ିଆ ସାହିତ୍ୟର ଯେଉଁ ପ୍ରାରମ୍ଭିକ ରୂପ ଗଢ଼ି ଉଠିଥିଲା ତାହା ଉତ୍କର୍ଷତାର ଶିଖରକୁ 'ଉତ୍କଳ ସାହିତ୍ୟ' ମାଧ୍ୟମରେ ହିଁ ସ୍ପର୍ଶ କରିଥିଲା । ତିନିପିଢ଼ି ଧରି ଓଡ଼ିଆ ସାରସ୍ୱତ ସ୍ରଷ୍ଟାଙ୍କୁ ଉଚିତ ଦିଗ୍‌ଦର୍ଶନ ଦେବାରେ 'ଉତ୍କଳ ସାହିତ୍ୟ' ସଫଳକାମ ହୋଇଥିଲା । ରାଧାନାଥ, ଫକୀରମୋହନଙ୍କଠୁ ଆରମ୍ଭ କରି କାଳିନ୍ଦୀଚରଣ ଓ ଅନ୍ନଦା ଶଙ୍କରଙ୍କ ପର୍ଯ୍ୟନ୍ତ ସମସ୍ତ ସାରସ୍ୱତ ସାଧକ ଉତ୍କଳସାହିତ୍ୟ ମାଧ୍ୟମରେ ପ୍ରତିଷ୍ଠା ଲାଭ କରିଥିଲେ । ସମ୍ବଲପୁର ହିତୈଷିଣୀ, ଉତ୍କଳପ୍ରଭା ପ୍ରମୁଖ ଓଡ଼ିଆ ସାହିତ୍ୟର ଯେଉଁ ପୃଷ୍ଠଭୂମି ନିର୍ମାଣ କରିଥିଲେ ତାକୁ ସୁଦୃଶ୍ୟ ପ୍ରାକାର ରୂପେ ଗଢ଼ି ତୋଳିଥିଲା ଉତ୍କଳ ସାହିତ୍ୟ । ଏହାର ଆଭିମୁଖ୍ୟ ସମ୍ପର୍କରେ ବିଶ୍ୱନାଥ କର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରେ ଘୋଷଣା କରନ୍ତି "ବିସ୍ତୃତ ଅର୍ଥରେ ମାନବ ଜୀବନ ଓ ସମାଜର ସମସ୍ତ ବିଷୟ ସାହିତ୍ୟର ଅନ୍ତର୍ଗତ । କାବ୍ୟ, ନାଟକ, ବିଜ୍ଞାନ, ଦର୍ଶନ, ଶିକ୍ଷା, ଶିଳ୍ପ, କୃଷି, ବାଣିଜ୍ୟ, ଧର୍ମ, ନୀତି ସମସ୍ତ ସାହିତ୍ୟର ବହୁଦୂର ବିସ୍ତୃତ ସୀମା ମଧ୍ୟରେ ଅବସ୍ଥାନ କରିପାରନ୍ତି । ଉନ୍ନତି ଯେତେବେଳେ ମାନବ

ଜୀବର ଲକ୍ଷ, ତେତେବେଳେ ଯଦ୍ୱାରା ସର୍ବାଙ୍ଗୀନ ଉନ୍ନତି ସାଧିତ ହେବ ତତ୍‌ପ୍ରତି ସମୁଚିତ ଦୃଷ୍ଟି ରଖିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । ଦେଶ ପ୍ରଚଳିତ ଦୁର୍ନୀତି, ଦୁରାଚାର ଓ ଉପଧର୍ମ ବିରୋଧରେ ସଂଗ୍ରାମ ଏବଂ ସୁନୀତି, ସଦାଚାର ଓ ସ୍ୱଧର୍ମର ପ୍ରତିଷ୍ଠା ଉତ୍କଳ ସାହିତ୍ୟର ଅନ୍ୟତମ ଉଦ୍ଦେଶ୍ୟ ।"

ଉତ୍କଳସାହିତ୍ୟରେ ଓଡ଼ିଆ ସାହିତ୍ୟର ବିଭିନ୍ନ ରୂପାଙ୍ଗିକ ସମୃଦ୍ଧ ରୂପ ଲାଭ କରିଥିଲା । କ୍ଷୁଦ୍ରଗଳ୍ପ, କବିତା ଓ ପ୍ରବନ୍ଧ ପରିଚ୍ଛନ୍ନ ରୂପ ଗ୍ରହଣ କରି ପ୍ରତିଭାତ ହୋଇଥିଲା । ସଂବାଦପତ୍ର ସମୂହରେ ପ୍ରକାଶିତ ଚୂର୍ଣ୍ଣକ, ସତ୍ୟଘଟଣା, ଚଟକି, କାହାଣୀ ପ୍ରଭୃତି ଉତ୍କଳ ସାହିତ୍ୟରେ ରେବତୀ, ସୌଦାମିନୀ, ଗୋଟିଏ କଥା ପରି ଉଚ୍ଚାଙ୍ଗ ଗଳ୍ପ ରୂପ ଗ୍ରହଣ କରିଥିଲା । ଓଡ଼ିଆ କବିତାର ନୂତନ ପରୀକ୍ଷା ନିରୀକ୍ଷା ଆରମ୍ଭ ହୋଇଥିଲା । ପ୍ରାଚୀନ ପଂଥି କବିତା ସହିତ ଅମିତ୍ରାକ୍ଷର ଛନ୍ଦ, ମାତ୍ରାବୃତ୍ତ ଛନ୍ଦ ଏବଂ ସବୁଜ ଯୁଗୀୟ କବିତାକୁ ସ୍ଥାନ ଦେଇଥିଲା ଉତ୍କଳ ସାହିତ୍ୟ ।

ଶତାବ୍ଦୀ ବ୍ୟାପୀ ଓଡ଼ିଆ ପତ୍ରପତ୍ରିକାର ବିବର୍ତ୍ତନ ବୃହତ୍ତର ଗବେଷଣାର ଅପେକ୍ଷାରଖେ । ପତ୍ରପତ୍ରିକା ଜାତିମାନସର ସୂକ୍ଷ୍ମ ସୃଜନ ସ୍ୱପ୍ନକୁ ବାସ୍ତବ ରୂପ ଦେଲାବେଳେ ଜାତିର ଅସ୍ମିତାକୁ ନିଜ ଅଜାଣତରେ ପ୍ରତିଷ୍ଠା ଦେଇଥାଏ । ପତ୍ର ପତ୍ରିକା ବିଧିବଦ୍ଧ ଭାଷା ଗଠନରେ ଯେତିକି ସହାୟକ ଜାତିର ମାନସ କାଳକୁ ସ୍ପନ୍ଦିତ କରିବାରେ ସେତିକି ଉତ୍ସର୍ଗୀକୃତ । ଭାଷା ସାହିତ୍ୟଠାରୁ ଏକ ମହତ୍ତର ସମାଜ ଜୀବନ ଗଠନର ଏହା ନିୟାମକ । ଶବ୍ଦର ସାମ୍ରାଜ୍ୟ ଭିତରେ ମଣିଷକୁ ଉପଯୁକ୍ତ ପଥ ପ୍ରଦର୍ଶନ ହିଁ ଏହାର ଆଭିମୁଖ୍ୟ । ପତ୍ରପତ୍ରିକା ସମୃଦ୍ଧ ସମାଜ ଗଠନ ଓ ସୁସଂସ୍କୃତ ସଭ୍ୟତାର ଗତିଶୀଳତାର ପରିଚାୟକ । ପତ୍ରପତ୍ରିକାଗୁଡିକ ସମାଜ ଜୀବନର ସ୍ୱଚ୍ଛ ଅଭିବ୍ୟକ୍ତି ବା ଦର୍ପଣ । ପତ୍ରପତ୍ରିକା ମାଧ୍ୟମରେ ଗୋଟିଏ ଜାତିର ଆତ୍ମା ଏବଂ ତା'ର ସ୍ୱଚ୍ଛ ପରିଚୟ ହିଁ ଅଦୃଶ୍ୟରେ ନିର୍ମିତ ହୋଇଥାଏ । ବର୍ତ୍ତମାନର ଭୂମିଖଣ୍ଡରେ ଦଣ୍ଡାୟମାନ ହୋଇ ସୁଦୂର ଅତୀତକୁ ଏବଂ ଅନାଗତ ଭବିଷ୍ୟତକୁ ନିରୀକ୍ଷଣ କରିବାର ଉର୍ଜା ପତ୍ରପତ୍ରିକା ମାଧ୍ୟମରେ ସଂଗୃହୀତ ହୋଇଥାଏ । ତୁଳନାତ୍ମକ ଭାବରେ ସମାଜ ଜୀବନର ଗତିଶୀଳତା ଏବଂ ତାର ଅଭ୍ୟୁଦୟର ଇତିହାସ ପତ୍ରପତ୍ରିକା ମାଧ୍ୟମରେ ଲିପିବଦ୍ଧ । ନିଜକୁ ବିଶ୍ୱସମୁଦାୟ ସହିତ ପରିଚିତ କରିବା, ବିଶ୍ୱ ମାନଦଣ୍ଡରେ ନିଜକୁ ତଉଲିବା ଏବଂ ନିଜ ଅସ୍ମିତାକୁ ଦୃଢ଼ ଭିତ୍ତିରେ ସ୍ଥାପନ କରିବା ପତ୍ରପତ୍ରିକାର ଚିରନ୍ତନ ଆଭିମୁଖ୍ୟ । ଉତ୍କଳଦୀପିକାଠାରୁ ଏଯାବତ୍ ପ୍ରକାଶିତ ଅଜସ୍ର ପତ୍ରପତ୍ରିକା ମାଧ୍ୟମରେ ଆସନ୍ତୁ ସେହି ଉର୍ଜାକୁ ସଂଗ୍ରହ କରିବା ଏବଂ ଓଡ଼ିଆତ୍ୱର ପ୍ରତ୍ନସମ୍ପଦ ଅନ୍ତରାଳରେ ନିଜ ଅସ୍ମିତାକୁ ପୁଣିଥରେ ବିଶ୍ୱାୟନ କରିବା ।

# ଓଡ଼ିଆ ଭାଷା ଆନ୍ଦୋଳନ ଓ

# ସାର୍ ସୁଢ଼ଳ ଦେବ

## ବିଚ୍ଛିନ୍ନ ଓଡ଼ିଶାରେ ଭାଷାର ଦୁର୍ଗତି ।।

ଉନବିଂଶ ଶତକର ବହୁ ପୂର୍ବରୁ ଓଡ଼ିଶା ମରହଟ୍ଟାମାନଙ୍କର ଆକ୍ରମଣ ଫଳରେ ଖଣ୍ଡବିଖଣ୍ଡିତ ହୋଇସାରିଥାଏ । ପ୍ରାଚୀନ ଉତ୍କଳର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ପରେ ରାଜଗାଦି ପାଇବା ପାଇଁ ଗୃହଯୁଦ୍ଧ ଆରମ୍ଭ ହେଲା । ଗଜପତି ରାମଚନ୍ଦ୍ର ଦେବ (ରମାଇ) ମହାନଦୀର ଉତ୍ତର ତଥା ଦକ୍ଷିଣ କେତେକ ଅଞ୍ଚଳରେ ରାଜା ରୂପେ ନିଜକୁ ଘୋଷଣା କଲେ । ୧୫୯୦ ମସିହାରେ ଶ୍ରୀକାକୁଳ ଫୌଜଦାର ସାହା ସୁକୁରାଲି ସମଗ୍ର ଗଞ୍ଜାମ ଜିଲା ଅଧିକାର କରିନେଲେ । ୧୭୨୫ ମସିହାରେ ହାଇଦ୍ରାବାଦ ନିଜାମ ଏ ଅଞ୍ଚଳକୁ ନିଜ ଅଧିକାରଭୁକ୍ତ କରିନେଲେ ।

୧୭୫୩ ବେଳକୁ ଫରାସୀମାନେ ଗଞ୍ଜାମ, ବିଶାଖାପାଟଣା, ଗୋଦାବରୀ ଓ କୃଷ୍ଣାଚାରି ଜିଲ୍ଲାର ଅଧିକାର ହାଇଦ୍ରାବାଦ ନିଜାମଙ୍କଠାରୁ ପଟ୍ଟାସୂତ୍ରରେ ପାଇଲେ । ଏ ଚାରି ଜିଲ୍ଲା ଉତ୍ତର ସର୍କାର ନାମରେ ପରିଚିତ । ୧୭୬୨ ମସିହା ବେଳକୁ ଏ ସମଗ୍ର ଉତ୍ତର ସର୍କାର ଅଞ୍ଚଳ ଇଂରେଜ ଶାସନାଧୀନ ହୁଏ । କ୍ରମଶଃ ଇଂରେଜମାନେ ସବୁ ରାଜା ଜମିଦାରମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରି ସମଗ୍ର ଉତ୍ତର ସର୍କାର ତଥା ଓଡ଼ିଶାର ଦକ୍ଷିଣ ଭାଗ ମଧ୍ୟ ଅଧିକାର କରିନେଲେ ।

ଓଡ଼ିଆ ରାଜା ଜମିଦାରମାନେ ଇଂରେଜ କର୍ତ୍ତୃତ୍ୱ ନ ମାନି ସାମୟିକ ଆକ୍ରମଣ କରୁଥିବାରୁ ଇଂରେଜମାନଙ୍କ ବିଷ ଦୃଷ୍ଟିରେ ପଡିଲେ । ତେଣୁ ଓଡ଼ିଶା ଅଧିକାର ସହିତ ଇଂରେଜମାନେ ତେଲେଙ୍ଗା ବା ମୁସଲମାନ କର୍ମଚାରୀ ନିଯୁକ୍ତ କରି ଓଡ଼ିଆ ଭାଷା ଓ ସଂସ୍କୃତିକୁ ପଦଦଳିତ କଲେ । ୧୮୦୩ ମସିହା ବେଳକୁ ସମଗ୍ର ଓଡ଼ିଶା ଇଂରେଜ ଶାସନ ଅନ୍ତର୍ଭୁକ୍ତ ହୋଇସାରିଥାଏ ।

ପରବର୍ତ୍ତୀ କାଳରେ ରାଜକାର୍ଯ୍ୟରେ ଓଡ଼ିଆ କର୍ମଚାରୀମାନଙ୍କୁ ଅଶିକ୍ଷିତ ଅପାରଗ ରୂପେ ବିବେଚିତ କରି ଅଣଓଡ଼ିଆ କର୍ମଚାରୀମାନଙ୍କୁ ନିଯୁକ୍ତି ଦିଆଗଲା । ଓଡ଼ିଆ ବୁଝୁ ନ ଥିବା ସାହେବମାନେ ବଙ୍ଗାଳୀମାନଙ୍କୁ ଆଣି କାର୍ଯ୍ୟ କ୍ଷେତ୍ରରେ ନିଯୁକ୍ତି ଦେଲେ । କଟକ ଜିଲ୍ଲା

ଗେଜେଟିୟରରୁ ସୂଚନା ମିଳେ ୧୮୨୩ ମଃ ପର୍ଯ୍ୟନ୍ତ କୌଣସି ଓଡ଼ିଆ ଦାୟିତ୍ୱ ସଂପନ୍ନ ପଦରେ ନିଯୁକ୍ତି ପାଇ ନ ଥିଲେ ।

ଇଂରେଜମାନେ ଓଡ଼ିଶାରୁ ବିଭିନ୍ନ ଉପାୟରେ ରାଜସ୍ୱ ଆଦାୟର ଯୋଜନା ଚିନ୍ତାକଲେ । ଇଂରେଜ ରାଜତ୍ୱ ପ୍ରାରମ୍ଭରୁ ଓଡ଼ିଶାର ଜନଜୀବନରେ ଦୁର୍ଭିକ୍ଷର କରାଳ ଆତଙ୍କ ଲାଗିରହିଲା । କାର୍ଯ୍ୟକ୍ଷେତ୍ରରେ ଅଣଓଡ଼ିଆ କର୍ମଚାରୀମାନେ ଓଡ଼ିଆ କର୍ମଚାରୀମାନଙ୍କୁ ଅପମାନିତ କଲେ । ଗଜପତି ରାଜାଙ୍କୁ ନିମିତ୍ତ କରି ଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱ ଇଂରେଜ ସରକାର ନିଜ ହାତକୁ ନେଲେ । ପୁରୁଷାନୁକ୍ରମେ ନିଷ୍କର ଜାଗିରୀ ଭୋଗର ଉଚ୍ଛେଦ ସାଧନା କରାଗଲା ।

ଏ ସମସ୍ତ ଅବ୍ୟବସ୍ଥାର ପ୍ରତିରୋଧ କରି ୧୮୧୭ ମସିହାରେ  ପାଇକ ବିଦ୍ରୋହ ସଂଘଟିତ ହେଲା । ବକ୍‌ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ଏହାହିଁ ଇଂରେଜ ରାଜତ୍ୱ ବିରୁଦ୍ଧରେ ଓଡ଼ିଶାର ପ୍ରଥମ ପ୍ରତିବାଦ । ଏ ବିଦ୍ରୋହକୁ ଅକ୍ତିଆରକୁ ଆଣି ସାରିବା ପରେ ଇଂରେଜ ସରକାର ସ୍ୱାଧୀନଚେତା, ଦେଶଭକ୍ତ, ରାଜଭକ୍ତ ଓଡ଼ିଆମାନଙ୍କୁ ଭୟ ଘୃଣା ଓ ଅବିଶ୍ୱାସ କରିବାକୁ ଲାଗିଲେ । ଅନ୍ୟପକ୍ଷରେ ଅଣଓଡ଼ିଆ କର୍ମଚାରୀମାନେ ସରକାରଙ୍କ ବିଶ୍ୱାସଭାଜନ ହେଲେ । ଏହି ଅବିଶ୍ୱାସର ପରିଣତି ସ୍ୱରୂପ "ନୂତନ ରୀତିର ଭୂରାଜସ୍ୱ ନିର୍ଦ୍ଧାରଣ ଓ କୁଖ୍ୟାତ ସୂର୍ଯ୍ୟାସ୍ତ ନିୟମ ଓଡ଼ିଶାର ସମଗ୍ର ଉପକୂଳାଞ୍ଚଳର ସୁପ୍ରାଚୀନ ଖଣ୍ଡାୟତ ଗୋଷ୍ଠୀଙ୍କୁ ରାତି ପାହିଲା ବେଳକୁ ଉତ୍ପାଟିତ କରିଦେଲା କେବଳ ନୁହେଁ ଓଡ଼ିଶାର ସେଦିନ ପର୍ଯ୍ୟନ୍ତ ସମୃଦ୍ଧ କୃଷକ ଜାତିକୁ ପରିଣତ କରିଦେଲା ଏକ କୁଲି ଗୋଷ୍ଠୀରେ ।"(୧)

ବିଭିନ୍ନ କାରଣ ଯୋଗୁ ଖଣ୍ଡ ବିଖଣ୍ଡିତ ଉତ୍କଳର ଗଞ୍ଜାମ ଅଞ୍ଚଳ ମାନ୍ଦାଜ ଅନ୍ତର୍ଭୁକ୍ତ ହୋଇ ନିଜର ମୁମୂର୍ଷୁ ମାତୃଭାଷାକୁ ତାମିଲ ଭାଷାର ପ୍ରକୋପରୁ(୨) ସମ୍ବଲପୁର ଅଞ୍ଚଳ ମଧ୍ୟ ପ୍ରଦେଶ ଅନ୍ତର୍ଭୁକ୍ତ ହୋଇ ହିନ୍ଦୀଭାଷାର ଆକ୍ରମଣରୁ(୩) ଏବଂ ମୁଗଲବନ୍ଦୀ ଅଞ୍ଚଳ ବଙ୍ଗ ଭାଷାର ପ୍ରାଧାନ୍ୟରୁ(୪) ଓଡ଼ିଆ ଭାଷାକୁ ମୁକ୍ତ କରିବାରେ ସର୍ବାଦୌ ବିଫଳ ହେଲେ । ଫଳତଃ ବିଖଣ୍ଡିତ ଓଡ଼ିଆ ଭାଷା ବିକଳାଙ୍ଗ ଓଡ଼ିଶାର ବିପର୍ଯ୍ୟସ୍ତ  ସ୍ଥିତି ମଧ୍ୟରେ ବିଭିନ୍ନ ପ୍ରାଦେଶିକ ଭାଷାର ହୀନ ଚକ୍ରାନ୍ତ ଦ୍ୱାରା ଊନବିଂଶ ଶତାବ୍ଦୀରେ ନିଜର ସ୍ୱାତନ୍ତ୍ର୍ୟ ହରାଇ ବସିଥିଲା ।(୫)

## ଭାଷା ଆନ୍ଦୋଳନ ଓ ସାର୍ ସୁଦ୍ଧଳ ଦେବ :

ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନରେ ତତ୍‌କାଳୀନ ବୁଦ୍ଧିଜୀବୀ ମହଲରେ ପ୍ରତିକ୍ରିୟା ସୃଷ୍ଟି ହେଲା । ଏହି ପ୍ରତିକ୍ରିୟାର ସୂଚନା ସେତେବେଳର ସମସ୍ତ ସମ୍ବାଦ ପତ୍ରରେ ବେଶ ଲକ୍ଷ୍ୟଣୀୟ । ଗଞ୍ଜାମରେ ଭାଷା ଆନ୍ଦୋଳନ ୧୮୭୦ ବେଳକୁ ତେଜି ଉଠିଲା । ଏହି ଆନ୍ଦୋଳନ କ୍ରମଶଃ ପରିବ୍ୟାପ୍ତ ହୋଇ ସମ୍ବଲପୁର ଅଞ୍ଚଳରେ ଏକ ଉଗ୍ରରୂପ ଧାରଣ

କଲା । ଏହି ଭାଷା ଆନ୍ଦୋଳନର ବହ୍ନିକୁ ଇନ୍ଧନ ଯୋଗାଇବାକୁ ତଥା ଉଚିତ ଦିଗ୍‌ଦର୍ଶନ ଦେବାକୁ ଅନେକ ଯୁଗଜନ୍ମା ମହାପୁରୁଷଙ୍କ ଆବିର୍ଭାବ ଘଟିଲା । ଜାତୀୟ ଜୀବନର ଏହି ବିକଳାଙ୍ଗ ସ୍ଥିତି ଏବଂ ଦୁର୍ଦ୍ଦଶାମୟ ପୃଷ୍ଠଭୂମିରେ ମାତୃଭାଷାର ସୁରକ୍ଷା ନିମନ୍ତେ ବାମଣ୍ଡାର ରାଜବଂଶରେ ତା୧୧ ୧-୫-୧୮୫୧ମସିହାରେ ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କର ଯୁଗାନ୍ତକାରୀ ଆବିର୍ଭାବ ଅପରିହାର୍ଯ୍ୟ ମନେହୁଏ । ଏହି ଯୁଗଜନ୍ମା ମହାପୁରୁଷ୧୮୬୯ ମଃରେ ବାମଣ୍ଡାର ସିଂହାସନ ଆରୋହଣ କରିବା ପରେ - ମାତୃଭାଷାର ଘୋର ଦୁଃସ୍ଥିତିକୁ ହୃଦୟଙ୍ଗମ କରିଥିଲେ । ତେଣୁ ନିଜ ରାଜ୍ୟର ଭାଷା ସଂସ୍କାରର ଅଭିପ୍ରାୟରେ ସେ ତାଙ୍କର ଦୂରଦୃଷ୍ଟିର ସଫଳ ବିନିଯୋଗ କରିଥିଲେ । ପ୍ରତିବେଶୀ ବଙ୍ଗଳାର ଓଡ଼ିଆ ଭାଷା ବିଲୋପର ଚକ୍ରାନ୍ତ ଚାଲିଥିଲାବେଳେ ଓଡ଼ିଆ ଭାଷାର ମର୍ଯ୍ୟାଦା ବୃଦ୍ଧି କରି ସମଗ୍ର ଓଡ଼ିଆ ଭାଷାର ଐକ୍ୟ ସମ୍ପାଦନାରେ ନେତୃତ୍ୱ ନେଇଥିଲେ ସାର୍ ବାସୁଦେବ ସୁଢ଼ଳଦେବ ।

ଉନ୍ନତ ଶିକ୍ଷା ପ୍ରଦାନ ବିନା ଯେ ମାତୃଭାଷାର ଉନ୍ନତି ଅସମ୍ଭବ ଏ କଥାକୁ ମର୍ମେ ମର୍ମେ ସେ ଉପଲବ୍ଧି କରିଥିଲେ । ସୁତରାଂ ସେ ନିଜ ରାଜ୍ୟର ଶିକ୍ଷା କ୍ଷେତ୍ରରେ ଥିବା କୁସଂସ୍କାରକୁ ମୂଳୋତ୍ପାଟିତ କରି ଉଚିତ ଶିକ୍ଷା ପ୍ରଦାନର ବ୍ୟବସ୍ଥା କରିଥିଲେ । ରାଜ୍ୟର ବିଭିନ୍ନ ସ୍ଥାନରେ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟମାନ ସ୍ଥାପନ କରି ରାଜଧାନୀ ଦେବଗଡ଼ଠାରେ ଏକ ଉଚ୍ଚବିଦ୍ୟାଳୟ(୧୮୮୨) ସ୍ଥାପନ କରିଥିଲେ । ମାତୃଭାଷା ଓ ଇଂରେଜୀରେ ସମୁଚିତ ଶିକ୍ଷାଦାନ ପାଇଁ ଏ ବିଦ୍ୟାଳୟ ଉଦ୍ଦିଷ୍ଟ ଥିଲା ।(୬) । ଏତଦ୍ ବ୍ୟତୀତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଥିବା ଅଶୁଦ୍ଧତାର ନିରାକରଣ ପାଇଁ ବହୁ ଆୟାସ ସାଧନରେ ବିଭିନ୍ନ ଅଳଙ୍କାର ଗ୍ରନ୍ଥ ଅଧ୍ୟୟନ କରି ସେ ଅଳଙ୍କାର ବୋଧୋଦୟ(୧୮୮୬) ତୁଲ୍ୟ ପ୍ରଥମ ଏବଂ ଅଭିନବ ଓଡ଼ିଆ ଅଳଙ୍କାର ଗ୍ରନ୍ଥ ପ୍ରଣୟନ କରିଯାଇଛନ୍ତି ।(୭)

## ମଣି କାଞ୍ଚନ ସଂଯୋଗ :

ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ନିମିତ୍ତ ସୁଢ଼ଳ ଦେବ ମୁଦ୍ରାଯନ୍ତ୍ର ସ୍ଥାପନର ଆବଶ୍ୟକତା ଅନୁଭବ କରି ୧୮୮୫ମଃରେ କଟକଠାରେ ସୁଢ଼ଳ ପ୍ରେସ୍ ସ୍ଥାପନ କଲେ । ୧୮୮୬ରେ ନିଜ ରାଜଧାନୀ ଦେବଦୁର୍ଗ (ଦେବଗଡ)ଠାରେ ଜଗନ୍ନାଥ ବଲ୍ଲଭ ପ୍ରେସ୍ ପ୍ରତିଷ୍ଠା କଲେ । ଏ ପ୍ରେସରୁ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସହଯୋଗରେ 'ସମ୍ବଲପୁର ହିତୈଷିଣୀ' ସମ୍ବାଦପତ୍ର ପ୍ରକାଶ ପାଇଲା । କଟକ ମିଶନ ପ୍ରେସରୁ(ପରେ ସୁଢ଼ଳ ପ୍ରେସ୍) ସୁଢ଼ଳ ଦେବଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ସଂସ୍କାରକ'(୧୮୮୩) ପତ୍ରିକାରେ ନୀଳମଣି ବିଦ୍ୟାରତ୍ନଙ୍କର କେତୋଟି ପ୍ରକାଶିତ ପ୍ରବନ୍ଧ ପାଠକରି ଗୁଣଗ୍ରାହୀ ରାଜା ଆକୃଷ୍ଟ ହୋଇଥିଲେ । ତେଣୁ ଗୋପୀନାଥପୁର ପ୍ରାଇମେରୀ ଶିକ୍ଷକ ନୀଳମଣିଙ୍କୁ ନିଜ ରାଜ୍ୟକୁ ନିମନ୍ତ୍ରଣ କରି ଶିକ୍ଷକତାର ସୁଯୋଗ ସହିତ ହିତୈଷିଣୀର ସମ୍ପାଦକତ୍ୱ ଅର୍ପଣ କରିଥିଲେ । ବିଦ୍ୟାରତ

ଏବଂ ସୁଢ଼ଳ ଦେବଙ୍କର ଏ ମଣି କାଞ୍ଚନ ସଂଯୋଗ ପରବର୍ତ୍ତୀ ପର୍ଯ୍ୟାୟରେ ସମ୍ବଲପୁର ଅଞ୍ଚଳ ତଥା ଓଡ଼ିଶାର ଭାଷା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ ସହିତ ମାତୃ ସାହିତ୍ୟର ପ୍ରଭୂତ ଉନ୍ନତି ସାଧନରେ ବ୍ରତୀ ହୋଇଥିଲା ।

ଓଡ଼ିଶା ବିଚ୍ଛିନ୍ନାଞ୍ଚଳର ଏକତ୍ରିକରଣ ବିନା ଯେ ଏ ବିରାଟ ଐତିହ୍ୟ ସଂପନ୍ନ ଜାତିର ଉନ୍ନତି ଅସମ୍ଭବ ତଥା ବିଜାତୀୟ ହୀନ ଚକ୍ରାନ୍ତକାରୀଙ୍କ ଚକ୍ରାନ୍ତରୁ ଓଡ଼ିଆ ଭାଷାର ସୁରକ୍ଷା ସୁଦୂର ପରାହତ ଏ କଥା ପ୍ରଥମେ ବିଦ୍ୟାରତ୍ନେ ହିଁ ହୃଦୟଙ୍ଗମ କରିଥିଲେ । ଯଦିଓ ଓଡ଼ିଆ ଭାଷା ଆନ୍ଦୋଳନର ପ୍ରବକ୍ତା ରୂପେ ଆଜି ଅନେକେ ଦାବି ଉପସ୍ଥାପିତ କରନ୍ତି ତଥାପି ଏ ବିରାଟ ଆନ୍ଦୋଳନର ପ୍ରଥମ ସଂଯୋଜନା ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସାର୍ ସୁଢ଼ଳ ଦେବଙ୍କ ସହଯୋଗିତାରେ ଯେ ସଂଘଟିତ ହୋଇଥିଲା ଏକଥା ଯେକୌଣସି ନିରପେକ୍ଷ ସମାଲୋଚକ ସ୍ୱୀକାର କରିବେ । ଅତୀତର ଛିନ୍ନ ପୃଷ୍ଠାକୁ ତନ୍ନ ତନ୍ନ କରି ନିରୀକ୍ଷଣ କଲେ ଏ କଥାର ସତ୍ୟତା ବେଶ୍ ପରିଲକ୍ଷିତ ହୁଏ ॥ ୮ ॥ ଏହି ସତ୍ୟତାକୁ ଉପଲବ୍ଧି କରି ଓଡ଼ିଆ ସାହିତ୍ୟର ପୂର୍ବସୁରୀ ବ୍ୟାସକବି ଫକୀରମୋହନ ଘୋଷଣା କରିଛନ୍ତି-

"ଭାଷା ଯୋଗେ ଛିନ୍ନ ଭିନ୍ନ ଥିଲା ଏ ଉତ୍କଳ<br>
ବାନ୍ଧିଲା ଏକତା ସୂତ୍ରେ ତୁମେ ହିଁ କେବଳ'

x x x

କଳ୍ପଲତା ସମ୍ମିଳନୀ ଉତ୍କଳ ଦେଶରେ<br>
ପ୍ରଥମରେ ଉପ୍ତବୀଜ ତୁମ୍ଭ ହୃଦୟରେ<br>
ତୁମ୍ଭର ପତ୍ରିକା ଲଭିଅଛି ଉଚ୍ଚସ୍ଥାନ<br>
ତୁମ୍ଭେ ଏକା କରି ଜାଣ କବିଙ୍କୁ ସମ୍ମାନ ॥" (ଅବସର ବାସରେ)

ଯେଉଁ ଗଞ୍ଜାମ ସମ୍ମିଳନୀରେ ପରିଣତି ସ୍ୱରୂପ ଉତ୍କଳ ସମ୍ମିଳନୀର ସୃଷ୍ଟି; ସେହି ଗଞ୍ଜାମ ସମ୍ମିଳନୀ ଅନ୍ତରାଳେ ଯେ ପ୍ରଜାବନ୍ଧୁ ପତ୍ରିକାର ସୁଯୋଗ୍ୟ ସମ୍ପାଦକ ବିଦ୍ୟାରତ୍ନଙ୍କ ଆତ୍ମିକ ପ୍ରଚେଷ୍ଟା ବିଦ୍ୟମାନ ଏକଥା କିଏ ବିସ୍ମରି ଯିବ ? ॥୯॥ ସେହି ବିଦ୍ୟାରତ୍ନେ ସାର୍ ସୁଢ଼ଳ ଦେବଙ୍କର ସାହଚର୍ଯ୍ୟ ଯୋଗୁ ଯେ ଓଡ଼ିଆ ସାହିତ୍ୟର ତଥା ଓଡ଼ିଆ ଭାଷାର ଗତିପଥ ନିୟନ୍ତ୍ରଣ କରିଥିଲେ ଏକଥା ସ୍ମରଣ କରି ବ୍ୟାସ କବି ଫକୀରମୋହନ ଲେଖିଛନ୍ତି

ଜଗା ଶିରେ ଧରି ଏକା ପଡିଅଛ ନନା<br>
ପରଶ ମଣିକୁ ଛୁଇଁ ଲୁହା ହୁଏ ସୁନା (ଉତ୍କଳ ଭ୍ରମଣ)

## ମାତୃଭାଷାର ଅନନ୍ୟ ସେବକ ସୁଢ଼ଳ ଦେବ :

ଗୁଣଗ୍ରାହୀ ସୁଢ଼ଳ ଦେବଙ୍କର ସଦୁତ୍ସାହ ଏବଂ ପଣ୍ଡିତ ନୀଳମଣିଙ୍କର ସମ୍ପାଦକତ୍ୱରେ ପ୍ରତିଷ୍ଠିତ ସମ୍ବଲପୁର ହିତୈଷିଣୀ ସାପ୍ତାହିକୀ ପରବର୍ତ୍ତୀ ସମ୍ବଲପୁର ଅଞ୍ଚଳର ଭାଷା

ଆନ୍ଦୋଳନର ଗତିପଥ ନିୟନ୍ତ୍ରଣ କରିଥିଲା । ଉତ୍କଳ ସାହିତ୍ୟର ସୁଯୋଗ୍ୟ ସନ୍ତାନ ରାଧାନାଥ- ଫକୀର ମୋହନ - ମଧୁସୂଦନ- ଗଙ୍ଗାଧର- ଚିନ୍ତାମଣି ଆଦିଙ୍କର ପୃଷ୍ଠପୋଷକତା କରି ଦୁର୍ଦ୍ଦଶାଗ୍ରସ୍ତ ଓଡ଼ିଆ ଭାଷାର ନିସ୍ପନ୍ଦ ଜୀବନରେ ପ୍ରାଣ ସ୍ପନ୍ଦନ ଭରି ଦେବାରେ ବାସୁଦେବଙ୍କ କୃତୀତ୍ୱ ସର୍ବବାଦୀ ସମ୍ମତ । ନିଜ ରାଜଧାନୀ ବା ରାଜ୍ୟରେ ଆଭ୍ୟନ୍ତରୀଣ ସମାଜ ସଂସ୍କାର ମଧ୍ୟରେ ତାଙ୍କର ପ୍ରତିଭା ସୀମିତ ହୋଇଯାଇନାହିଁ ବରଂ ଏହା ସମଗ୍ର ଓଡ଼ିଶାର ହିତ ସାଧନ ଉପଲକ୍ଷେ ବ୍ୟସ୍ତ ରହିଛି । ସାର୍ ସୁଢ଼ଳଦେବ ଶ୍ରୀ ଚତୁର୍ଭୁଜ ପଟ୍ଟନାୟକଙ୍କ ସହାୟତାରେ କଟକରୁ ସମାଜ ସଂସ୍କାରକାମୀ 'ସଂସ୍କାରକ' ଏବଂ ଧର୍ମ ସଂସ୍କାରକାମୀ 'ସେବକ'(୧୮୮୩) ଆଦି ପତ୍ରିକାର ପ୍ରକାଶନ ଭାର ସମ୍ପାଦନ କରିଥିଲେ । ସମଗ୍ର ଉତ୍କଳର ବିଦ୍ୱାନ ବ୍ୟକ୍ତିଙ୍କୁ ନିଜ ରାଜ୍ୟକୁ ନିମନ୍ତ୍ରଣ କରି ସମ୍ମାନିତ କରିବା ଥିଲା ବାସୁଦେବଙ୍କର ଏକ ମହନୀୟ ଆଦର୍ଶ । ଏହି ଆଦର୍ଶର ପ୍ରତୀକ ରୂପେ ରାଧାନାଥଙ୍କୁ କବିବର(୧୮୮୬) ଉପାଧି ପ୍ରଦତ୍ତ ହୋଇଥିଲା । ସମ୍ବଲପୁର ହିତୈଷିଣୀ ମାଧ୍ୟମରେ ଗଙ୍ଗାଧର ଓ ଚିନ୍ତାମଣି ପ୍ରମୁଖ କବିଙ୍କୁ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ କରିପାରିଥିଲା ॥ ୧୧ ॥ ବିଜୁଳି ପତ୍ରିକା ମାଧ୍ୟମରେ ରାଧାନାଥ ପ୍ରତିଭା ତଥା ଆଧୁନିକ ସାହିତ୍ୟକୁ ପରିପୁଷ୍ଟ ଓ ପରିବର୍ଦ୍ଧିତ କରିଥିଲା ।

ଏ ସମସ୍ତ ପତ୍ରପତ୍ରିକା ପ୍ରକାଶନ ଅନ୍ତରାଳରେ ସାର୍ ସୁଢ଼ଳ ଦେବଙ୍କ ଭାଷା ପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ । ବାସୁଦେବଙ୍କର ବହୁମୁଖୀ ପ୍ରତିଭାରେ ମୁଗ୍ଧ ହୋଇ ଇଂରେଜ ସରକାର ତାଙ୍କୁ କେ: ସି: ଆଇ: ଇ: (୧୮୯୫) ରୂପୀ ମର୍ଯ୍ୟାଦାରେ ସମ୍ମାନିତ କରିଥିଲା । ବାସୁଦେବଙ୍କର ମାତୃଭାଷା ପ୍ରେମର ପରିଚୟ ପାଇ ତତ୍କାଳୀନ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନରେ (ଡିସେମ୍ବର ୩୦-୧୯୦୩) ସଭାପତିତ୍ୱ କରିବାକୁ ତାଙ୍କୁ ଅନୁରୋଧ କରାଯାଇଥିଲା । କିନ୍ତୁ ବିଧିର ବିଡମ୍ବନା ଏ ଯୁଗଜନ୍ମା ପୁରୁଷଙ୍କୁ ନିଜ ଭାଷା ପ୍ରୀତିର ଅପୂର୍ବ ନିଦର୍ଶନ ଜ୍ଞାପନର ସୁଯୋଗ ଦେଲା ନାହିଁ । ଯଦ୍ୱାରା କି ଓଡ଼ିଶା ଭାଷା ଆନ୍ଦୋଳନ ଏବଂ ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣର ମହାନ ଯଜ୍ଞରେ ପୌରୋହିତ୍ୟ ପରିବର୍ତ୍ତେ ବାସୁଦେବ ଚିରଦିନ ଏକ ନୈପଥ୍ୟ ନାୟକ ରୂପେ ରହିଗଲେ । ତାଙ୍କର ସମସ୍ତ ଅବଦାନ ସତ୍ତ୍ୱେ ଓଡ଼ିଆ ସାହିତ୍ୟ ଦରବାରରେ ତାଙ୍କର ସମୁଚିତ ସମ୍ମାନ ପ୍ରଦାନର ବ୍ୟବସ୍ଥା ହୋଇପାରିନାହିଁ । ଯେଉଁ ସମ୍ମିଳନୀର ସଭାପତିତ୍ୱର ଅଭିଭାଷଣ ତାଙ୍କ ଦ୍ୱାରା ପ୍ରଦତ୍ତ ହୋଇଥାନ୍ତା ସେହି ଅଭିଭାଷଣରେ ତାଙ୍କର ମହାନ୍ ଆତ୍ମାର ସ୍ମୃତିଚାରଣ କରାଗଲା ॥୧୨॥

## ଅବହେଳିତ ଯୁଗ ପୁରୁଷ ସୁଢ଼ଳ ଦେବ :

ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କର 'ସମ୍ବଲପୁର ହିତୈଷିଣୀ' 'ବିଜୁଳି' 'ସେବକ' 'ସଂସ୍କାରକ' ଆଦି ପତ୍ରିକା ପ୍ରକାଶନ, ବିଭିନ୍ନ ଶିକ୍ଷାନୁଷ୍ଠାନ ସ୍ଥାପନ, ଶିକ୍ଷାବୃତ୍ତି

ପ୍ରଚଳନ(୧୩), ଗୁଣୀ ଲୋକଙ୍କ ସମାଦର, ଅଳଙ୍କାର ବୋଧୋଦୟ(୧୮୮୬) ଚିତ୍ରୋତ୍ପଳା, ବୀରବାମା ଆଦି ପୁସ୍ତକ ରଚନା ଅନ୍ତରାଳରେ ଯେଉଁ ମାତୃଭାଷା ପ୍ରେମର ପ୍ରଚ୍ଛନ୍ନ ଅଭିପ୍ରାୟ ନିହିତ ଥିଲା, ତାହା ତାଙ୍କୁ ଚିରଦିନ ଓଡ଼ିଆ ସାରସ୍ୱତ କ୍ଷେତ୍ରରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ପ୍ରଦାନ କରିବ । ଉତ୍କଳ ସମ୍ମିଳନୀର ସଭାପତିତ୍ୱ ହରାଇ ଓଡ଼ିଶାର ଭାଷା ଆନ୍ଦୋଳନରେ ଏ ପ୍ରଧାନ ପୁରୋଧା ପ୍ରତ୍ୟକ୍ଷ ହୋଇପାରିନଥିଲେ ସୁଦ୍ଧା ଓଡ଼ିଆ ଭାଷା ଆନ୍ଦୋଳନରେ ଏହାଙ୍କର ଅବିସ୍ମରଣୀୟ ଦାନ କଣ କେବେ କୌଣସି ଓଡ଼ିଆ ବିସ୍ମରୀ ଯିବ ? ତଥାପି ଏ ଯୁଗଜନ୍ମା ପୁରୁଷଙ୍କର ଆବର୍ତ୍ତମାନର (୧୯-୧୧-୧୯୦୩) ଦୀର୍ଘ ବ୍ୟବଧାର୍ନ ସତ୍ତ୍ୱେ ଓଡ଼ିଆ ଜାତି ତଥା ସରକାର ତାଙ୍କର ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବାରେ ଅବହେଳା କରିଛି । ଆଧୁନିକ ଓଡ଼ିଆ ସାହିତ୍ୟକୁ ପ୍ରାଚୀନ ପନ୍ଥୀ ତଥା ପ୍ରାଦେଶିକ ଭାଷା ଆକ୍ରମଣରୁ ଯେଉଁ ମହାପୁରୁଷ ଉଦ୍ଧାର କରିବାରେ ନିଜର ପ୍ରାଣପାତ କରିଯାଇଛନ୍ତି ତାଙ୍କର ପ୍ରତିମୂର୍ତ୍ତିଟିଏ ସମଗ୍ର ଓଡ଼ିଶାରେ ଉନ୍ମୋଚିତ ନ ହେବା ପୂଜ୍ୟପୂଜା ନାମରେ ସରକାରଙ୍କର ଲକ୍ଷଲକ୍ଷ ଟଙ୍କାର ଶ୍ରାଦ୍ଧର ପ୍ରହସନ ସୂଚାଉ ନାହିଁ କି ? ଏକ ଉପାନ୍ତ ଅଞ୍ଚଳ ଯାହା ଦିନେ ସମଗ୍ର ଓଡ଼ିଶାର ସାରସ୍ୱତ ବିକାଶ ଧାରାକୁ ନିୟନ୍ତ୍ରଣ କରିଥିଲା ତା ପ୍ରତି ଓଡ଼ିଆ ସାହିତ୍ୟର ନେତୃବୃନ୍ଦ ଉଦାସୀନ ରହିବା ଘୋର ପରିତାପର ବିଷୟ ।

ଆଜି ସେହି ମହାନ୍ ପୁରୁଷଙ୍କ ପ୍ରତିଭାର ସ୍ମରଣେ ହିଁ ପ୍ରତ୍ୟେକ ଓଡ଼ିଆ ଭାଷୀଙ୍କ ଧ୍ୟେୟ ହେଉ । ବନ୍ଦେ ଉତ୍କଳ ଜନନୀ ॥

**ସହାୟକ ସୂଚୀ -**

୧) ଓଡ଼ିଆ ସାହିତ୍ୟର ଇତିହାସ: ଡ. ମାୟାଧର ମାନସିଂ- ପ୍ରଥମ ସଂସ୍କରଣ - ପୃଷ୍ଠା- ୨୩୩ ।

୨) ତେଲେଙ୍ଗା କର୍ମଚାରୀମାନେ ତ ଜୋର ଜବରଦସ୍ତିରେ ତେଲେଙ୍ଗାରେ ସବୁକାମ କରାଉଥିଲେ, ସେଥିରେ ପୁଣି ଅଗ୍ନିକୁ ପବନ ସହାୟ ଭଳି ମାନ୍ଦ୍ରାଜ ସରକାର ତା ୨୪-୧-୧୮୭୪ ମ: ଗଞ୍ଜାମ ଗେଜେଟ୍‌ରେ ପ୍ରକାଶ କଲେ "ଓଡ଼ିଆମାନେ ଓଡ଼ିଆ ଲିପିରେ କାଗଜପତ୍ର ଦାଖଲ କରିବାରେ ଆପତ୍ତି ନାହିଁ । ମାତ୍ର ସେଥିରେ ଜବାବ ମିଳିବା ବିଳମ୍ବ ହେବ । ଓଡ଼ିଆ ଭାଷା ତେଲେଙ୍ଗା ଲିପିରେ ବା ଇଂରେଜୀ ଲିପିରେ ଲେଖିଲେ ବେଗରେ ଜବାବ ମିଳିବ ।" (ଓଡ଼ିଆ ଆନ୍ଦୋଳନର ଇତିହାସ : ପଣ୍ଡିତ ବାଇକୋଳି ମହାପାତ୍ର)

୩) "ସମ୍ବଲପୁର ମାତୃଭାଷାର ଉଚ୍ଛେଦ ସାଧନ କରି ହିନ୍ଦୀ ଶିକ୍ଷା ଚଳାଇବା ସକାଶେ କର୍ତ୍ତୃପକ୍ଷମାନେ ଆଗ୍ରହାନ୍ୱିତ ଯେହେତୁ ଏଥିରେ ଏକମାତ୍ର ଓଡ଼ିଆମାନଙ୍କର କ୍ଷତି ଓ ଅସୁବିଧା ଛଡା ଆଉମାନଙ୍କର କ୍ଷତି ବା ଅସୁବିଧା ହେଉନାହିଁ ।"(ସମ୍ବଲପୁର ହିତୈଷିଣୀ- ତା୨୩।୧।୧୮୯୫) "ଗତ ୧୯ ତାରିଖ ଜାନୁୟାରୀ ମଧ୍ୟ ପ୍ରଦେଶ ଗେଜେଟ୍‌ରେ

ପ୍ରକାଶିତ ହୋଇଛି ଯେ ସନ୍ ୧୮୯୬ ପହିଲା ଜାନୁୟାରୀଠାରୁ ସମ୍ବଲପୁରର ସମଗ୍ର ରାଜକୀୟ କାର୍ଯ୍ୟରେ ଉତ୍କଳ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରବର୍ତ୍ତିତ ଓ ପ୍ରଚଳିତ ହେବ ।" (ସମ୍ବଲପୁର-ହିତୈଷିଣୀ ତା ୩୦-୧-୧୮୯୫) ॥

୪) ସେହିକାଳ ପର୍ଯ୍ୟନ୍ତ ତଥାକଥିତ ମୋଗଲବନ୍ଦୀ ପ୍ରକୃତ ପକ୍ଷେ ବଙ୍ଗାଳୀବନ୍ଦୀ ଥିଲା । ଓଡ଼ିଆମାନଙ୍କ ପାଇଁ ଏସବୁ ସୁବିଧା ସୁଯୋଗ ବଙ୍ଗାଳୀମାନଙ୍କ ପକ୍ଷରେ ସେମାନଙ୍କର ପ୍ରାଧାନ୍ୟ ବିରୁଦ୍ଧରେ ପ୍ରଥମ ଆକ୍ରମଣ ବୋଲି ବୋଧ ହେଲା । ତେଣୁ ସେମାନଙ୍କ ମଧ୍ୟରେ ପ୍ରବଳ ଭାବରେ ପ୍ରତିକ୍ରିୟା ସୃଷ୍ଟି ହେଲା । ସେଥିପାଇଁ ବୋଧେ କଟକ ଡିବେଟିଂ ସୋସାଇଟିରେ ରାଜେନ୍ଦ୍ର ଲାଲ ମିତ୍ର କହି ପକାଇଲେ ଯେ, ଓଡ଼ିଆ ଭାଷା ଉଠି ନ ଯିବା ପର୍ଯ୍ୟନ୍ତ ଓଡ଼ିଆମାନଙ୍କର କୌଣସି ଉନ୍ନତିର ସମ୍ଭାବନା ନାହିଁ ।

(ଦେଶ, କାଳ, ପାତ୍ର ଓ ମନିଷୀ ଫକୀର ମୋହନ : ଡ.ଜେ:ଭି: ବୋଲଟନ - ପୃଷ୍ଠା-୫ ॥)

୫) 'ତେବେ ଉତ୍କଳ ଭାଷା ଉନ୍ନତି ପ୍ରତି କି ବ୍ୟାଘାତ ଅଛି । ଆମ୍ଭମାନଙ୍କ ବିଶ୍ୱାସ ଏହି ଯେ ବର୍ତ୍ତମାନ ଉତ୍କଳ ଭାଷା' ତିନି ଥେଣ୍ଟିଆ କାକୁଡିବାଡି' ପ୍ରାୟ ତୁଚ୍ଛାକୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନି ଗଭର୍ଣ୍ଣମେଣ୍ଟ ହୋଇଅଛନ୍ତି, ଏକ ଭାଗ ବଙ୍ଗଳା ଗଭର୍ଣ୍ଣମେଣ୍ଟ ହସ୍ତେ, ଏକ ଭାଗ ମଧ୍ୟପ୍ରଦେଶ ଗଭର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକ ଭାଗ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ହସ୍ତେ ପଡିବାରୁ ଏହାର ସର୍ବାଙ୍ଗ ସମାନରୂପେ ଗଠନ ହୋଇପାରୁନାହିଁ । ଏକ ଏକ ସ୍ଥାନରେ ଏକ ଏକ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାରର ପୁସ୍ତକ ଗଠିତ ହୁଅଇ । କେଉଁ ନିୟମ ଭଲ ଅବା ମନ୍ଦ ଜାଣିବାର ଉପାୟ ନାହିଁ । ସୁତରାଂ ଉତ୍କଳ ଭାଷା ଦୁଇଘର କୁଣିଆ ହୋଇ ଉପବାସ ଶୋଉଅଛି । କେହି ଏହାର ଚର୍ଚ୍ଚା କରିବାକୁ ନାହିଁ । ଏ ରପ ଅବସ୍ଥା ଅତି ଶୋଚନୀୟ ଓ ଆମ୍ଭମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବା ଉଚିତ । (ଉତ୍କଳ ଦୀପିକା : ଚତୁର୍ଥ ଭାଗ - ଏକାଦଶ ସଂଖ୍ୟା - ତା:-୧୩-୩-୧୮୬୯)

୬) 'The head quarters schools at Deogarh which provide a higher education both in vernacular and English and are presided over by highly qualified masters having long since established a reputation which appears to have fully sustained in the year under report, (Administration report 1895)'

୭) ଅଳଙ୍କାର ବୋଧୋଦୟ: ଭୂମିକା- ରାଜା ବାସୁଦେବ ସୁଡ଼ଳ ଦେବ ।

୮) ମୋର ଜଣା ଲୋକ: (ନୀଳମଣି ବିଦ୍ୟାରତ୍ନ) ଉତ୍କଳ ସାହିତ୍ୟ ୪୦ଶ ଭାଗ ୩ୟ ସଂଖ୍ୟା : ବୃନ୍ଦାବନ ନାଥ ଶର୍ମା ।

୯) ଓଡ଼ିଆ ଆନ୍ଦୋଳନର ଇତିହାସ, ପୃ: ୫୮ ପଣ୍ଡିତ ଶ୍ରୀ ବାଇକୋଳି ମହାପାତ୍ର ।

୧୦) ମାତ୍ର ମୋହୋ ଦ୍ୱାରା ଯେବେ ଉତ୍କଳ ସାହିତ୍ୟର କଣା ମାତ୍ର ଉନ୍ନତି ସାଧିତ ହୋଇଥାଏ, ସେଥିରେ ମୂଳୀଭୂତ କାରଣ ବାମଣ୍ଡାର ପରମ ମାନନୀୟ ଅଧୀଶ୍ୱର ମହାରାଜା ସୁଢ଼ଳ ଦେବ ଅଟନ୍ତି ।' "ସମ୍ବଲପୁର ହିତୈଷିଣୀ ତା: ୨୧-୭-୧୮୯୭ : କବିବର ରାଧାନାଥ ରାୟ ।

୧୧)"ଯୋଗ ଜନ୍ମା ନୀଳମଣି ହେ ଆର୍ଯ୍ୟ କେଶରୀ
ଅଟଭାଇ ତୁମ୍ଭେ ମୋର ଉନ୍ନତି କାରଣ
ତୁମ୍ଭରି ଉତ୍ସାହେ ମୋର କବିତା ସ୍ଫୁରଣ ।"

**କବି ଶେଖର ଚିନ୍ତାମଣି ମହାନ୍ତି**

"ଧନ୍ୟ ଧନ୍ୟ କ୍ଷଣଜନ୍ମା ବୁଧ ନୀଳମଣି
x x x x x
କରିଅଛ ମୋର ଯେତେ ଯେତେ ଉପକାର
ମୋ ହୃଦେ ରହିଛି ସବୁ ସ୍ୱର୍ଣ୍ଣମୟ ଗାର
ତୁମ୍ଭ କୀରତିର ଚାରୁ ପତାକା ସୀବନେ
ସୂତ୍ର ହେଲେ ଧନ୍ୟ ହେବି ଏ ଦୀନ ଜୀବନେ ।"

**ବିଦ୍ୟାରତ୍ନଙ୍କ ହିତୈଷିଣୀ : ଗଙ୍ଗାଧର ମେହେର**

୧୨) ବାମଣ୍ଡାଧିପତି ସାର୍ ସୁଢ଼ଳ ଦେବ, କେ: ସି: ଆଇ: ଇ:ଙ୍କ ସ୍ୱର୍ଗାରୋହଣ ବାର୍ତ୍ତାରେ ଏହି ଦେଶବାସୀ ସମସ୍ତେ ବିଷର୍ଣ୍ଣ ହୋଇଛନ୍ତି । ସେ ଜଣେ ପ୍ରଶସ୍ତମନା ବିଜ୍ଞାନୃପତି ଥିଲେ । ନାନା ସଦ୍‌ଗୁଣରେ ଭୂଷିତ ହୋଇ ସର୍ବସାଧାରଣଙ୍କର ମାନ୍ୟାର୍ହ ହୋଇଥିଲେ ଓ ନିଜର ପ୍ରଜାଙ୍କର ଉନ୍ନତି ସାଧନାରେ ସର୍ବଦା ନିଯୁକ୍ତ ଥିଲେ । ସଂସ୍କୃତ ସାହିତ୍ୟ ବିଶେଷତଃ ଉତ୍କଳଭାଷା ତାହାଙ୍କଠାରେ ଚିର ଋଣୀ ଅଟେ । ସେ ନିଜେ ବିଖ୍ୟାତ ଗ୍ରନ୍ଥକର୍ତ୍ତା ଥିଲେ । ସାହିତ୍ୟ ଓ ଶିଳ୍ପ ବିଦ୍ୟାର ଉନ୍ନତି ନିମିତ୍ତ ସର୍ବଦା ଯତ୍ନ କରୁଥିଲେ । ଗୁଣଗ୍ରାହୀ ଗଭର୍ଣ୍ଣମେଣ୍ଟ ତାହାଙ୍କ ପ୍ରତି ଉଚ୍ଚ ମର୍ଯ୍ୟାଦା ଅର୍ପଣ କରିଥିଲେ । ଏପରି ବ୍ୟକ୍ତି ଅଭାବରେ ବର୍ତ୍ତମାନ ଏହି ଦେଶ ଦରିଦ୍ରତର ହୋଇଅଛି । ଉତ୍କଳ ଦେଶୀୟ ରାଜାଙ୍କର ସେ ଆଦର୍ଶ ଥିଲେ, ତାହାଙ୍କ ଅନୁକାରୀ ହେଲେ ଆମ୍ଭମାନଙ୍କର ଉପକାର ଅଛି ।

(ଉତ୍କଳ ସମ୍ମିଳନୀ-୩୦ ଡିସେମ୍ବର ୧୯୦୩ରେ ସଭାପତି ମୟୂରଭଞ୍ଜାଧୀଶ ରାଜା ରାମଚନ୍ଦ୍ର ଭଞ୍ଜଙ୍କ ପ୍ରଦତ୍ତ ଅଭିଭାଷଣ ।)

୧୩) ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ସର୍ବସାଧାରଣଙ୍କୁ ଜଣାଉଛୁ ଯେ ସମ୍ବଲପୁର ଜିଲ୍ଲା ଅନ୍ତର୍ଗତ ବାମଣ୍ଡାର ରାଜା ଶ୍ରୀ ସୁଢ଼ଳ ଦେବ ଓ କଳାହାଣ୍ଡିର ରାଜା ଶ୍ରୀ ଅଦ୍ୱୈତ ପ୍ରତାପ ଦେବ ଏ ଦୁଇ ମହାଶୟ ଜଣକେ ଟ ୨୫୦/- ଲେଖାଏଁ କଟକ ମେଡିକାଲ ସ୍କୁଲକୁ ଦାନ କରିଛନ୍ତି ଯେ ଏଥିରେ ଦୁଇଜଣ ଛାତ୍ର ବୃତ୍ତିପାଇଁ ତିନିବର୍ଷ ଲେଖାଏଁ ଶିକ୍ଷା କରିପାରିବେ । ଉତ୍କଳ ଦୀପିକା - ୧୬-୯-୧୮୭୬

# ଓଡିଆ ଅସ୍ମିତା ସଂଧାନ :
# ଉତ୍କଳ ଗୌରବ ମଧୁସୂଦନ

ଅମୃତ ଅଭୀପ୍ସାର କାଳହୀନ ସନ୍ଦର୍ଭର ସୁନେଲି ପ୍ରକାଶ; ମଧୁସୂଦନ ଦାସ । ତାଙ୍କର ଜୀବନ, ସାହିତ୍ୟ, ରାଜନୀତି ଓ ସମାଜନୀତି ଓଡିଶାର ସୁବର୍ଣ୍ଣମୟ ଇତିହାସ । ତାଙ୍କର ସାରସ୍ୱତ ଅବଦାନ ସ୍ୱଳ୍ପ ମାତ୍ର ଆବେଦନ ଦିଗନ୍ତପ୍ରସାରୀ । ସାହିତ୍ୟ ରଙ୍ଗମଞ୍ଚରେ ତାଙ୍କର ଅଭିନୟ ଖୁବ୍ କମ୍ ସମୟ କିନ୍ତୁ ପ୍ରତିକ୍ରିୟା ଜୀବନ୍ତ, ହୃଦୟଗ୍ରାହୀ । ସେ ଓଡିଆ ଅସ୍ମିତାର ଜ୍ୱଳନ୍ତ ପ୍ରତୀକ । ଓଡିଆ ଜନଜୀବନର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ । ତାଙ୍କର ସାହିତ୍ୟ ଯେତିକି ରସସ୍ନିଗ୍ଧ ସେତିକି ଗତିଶୀଳ ଓ ଫଳପ୍ରସୂ । ମଧୁବାବୁ ନେତା, ବିଲାତ ଫେରନ୍ତା, ଉଚ୍ଚଶିକ୍ଷିତ, ବାରିଷ୍ଟର, ଉତ୍କଳ ସମ୍ମିଳନୀର ସୃଷ୍ଟିକର୍ତ୍ତା । ଏ ସବୁ ସତ୍ତ୍ୱେ ଜଣେ ଉଚ୍ଚକୋଟୀର ସାରସ୍ୱତ ସ୍ରଷ୍ଟାର ସ୍ୱର ଓ ସ୍ୱାକ୍ଷର ତାଙ୍କର ସୃଷ୍ଟି ଓ ଅଭିବ୍ୟକ୍ତିରେ ପ୍ରକାଶିତ । ତାଙ୍କ ସାହିତ୍ୟର ଦୀପ୍ତି ଓ ଦ୍ୟୁତି ସୁଦୂର ପ୍ରସାରୀ । ଏହା ମଣିଷର ଆତ୍ମପୁରୁଷକୁ ଆନ୍ଦୋଳିତ କରେ, ମୁଗ୍ଧ କରେ । ଜାତୀୟ ଜୀବନର ସ୍ରୋତକୁ ଚଳଚଞ୍ଚଳ କରି ମହାସିନ୍ଧୁରେ ପରିଣତ କରେ । ତତ୍ତ୍ୱ, ଧାରା, ଦର୍ଶନ, ବୁଦ୍ଧିବାଦ, ଉତ୍କର୍ଷତାର କୌଳିନ୍ୟକୁ ପରିହାର କରି ମଧୁବାବୁଙ୍କ ସାହିତ୍ୟ ସରଳ, ସାବଲୀଳ, କ୍ରିୟାଶୀଳ ଏବଂ ଉଦ୍ଦେଶ୍ୟ ସାଧନରେ ସାଫଲ୍ୟ ମଣ୍ଡିତ । ତାଙ୍କ ସାହିତ୍ୟ କୋଟି କୋଟି ମଣିଷର ହାତ ଧରି, ଆତ୍ମାକୁ ଆନ୍ଦୋଳିତ କରି ଲକ୍ଷ୍ୟସ୍ଥଳରେ ପହଞ୍ଚାଏ । ଏକକ୍ଷୀଣ ଧାରା ସୃଷ୍ଟିକରେ ଯାହା ପରିଣତିରେ ମହାସିନ୍ଧୁ ପାଲଟେ । କୋଟିଏ ମଣିଷ ଠିଆ ହୋଇଥାଏ, ଜୀବନ ଓ ସମାଜକୁ ପାଥେୟ କରି, ଶିକ୍ଷାକୁ ନୌକା କରି ସମୟ ନଦୀକୁ ଅତିକ୍ରମ କରିବାକୁ ଏହି ଅତିକ୍ରମଣ କ୍ରିୟା ପ୍ରତିକ୍ରିୟା ଭିତରେ ମଣିଷ ହୋଇଯାଏ ଗୌଣ ସୃଷ୍ଟି ହୋଇଥାଏ ଏକ ମହା ମିଳନର ସମ୍ମିଳନ ତାହାହିଁ ମଧୁବାବୁଙ୍କ ସାହିତ୍ୟର ଅଭିଜାତ୍ୟ, ପାରିବାପଣ ଓ କୌଳିନ୍ୟ । ଯା’ ଭିତରେ ଝଲକୁଥାଏ ମୁଁ ଓଡିଆ ମୁଁ ଓଡିଆ ସମଗ୍ର ବିଶ୍ୱରେ ମୋର ପରିଚୟ ସ୍ୱତନ୍ତ୍ର ଅନୁପମ । ଏମିତି ଏକ ଜାତିପ୍ରାଣ ସିନ୍ଧୁର ସ୍ରଷ୍ଟା ମଧୁବାବୁ ଏବଂ ଏଥିରେ ସମର୍ଥ ତାଙ୍କ ସାହିତ୍ୟ । ତେଣୁ ତ ସେ ଉଦାତ୍ତ କଣ୍ଠରେ ଆହ୍ୱାନ କରନ୍ତି -

ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ କୋଟି ପ୍ରାଣ ବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇଦେ ଭାଇ ଡେଇଁ ପଡି ସିନ୍ଧୁ ନୀରେ ।।(ସମ୍ମିଳନୀ)

ଓଡିଆ ଅସ୍ମିତାକୁ ଦୃଢୀଭୂତ କରିବାରେ ଏ ଯେଉଁ ଜୀବନ ବେଦ ତାକୁ ଆସନ୍ତୁ ଆଜି ପୁଣି ଥରେ ପଢ଼ିବା ଉଦ୍‌ବୋଧିତ ହେବା ଏବଂ ଗର୍ବରେ କହିବା ମୁଁ ଓଡିଆ, ମଧୁବାବୁଙ୍କ ସ୍ୱପ୍ନର ଓଡିଆ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡିଆ ଅସ୍ମିତା ପ୍ରତିଷ୍ଠାର ଏକ ସଂଘର୍ଷମୟ ସମୟ । ଓଡିଆତ୍ୱ ବଙ୍ଗଳା, ତେଲୁଗୁ ଓ ହିନ୍ଦୀ ଭାଷାର ପ୍ରାବଲ୍ୟରେ ଉର୍ଦ୍ଧଶ୍ୱାସ । ଓଡିଶା ଦେଶ ଖଣ୍ଡବିଖଣ୍ଡିତ ବିକଳାଙ୍ଗ । ଓଡିଆ ଭାଷା ସାହିତ୍ୟ ଓ ଅସ୍ମିତାକୁ ବାହାରେ ପ୍ରତିଷ୍ଠା ଦେବାକୁ ଦୃଷ୍ଟାନ୍ତ ନାହିଁ, ସାଧନ ନାହିଁ, ଉପାୟ ନାହିଁ । ସେତିକିବେଳେ ପ୍ରାଚୀନ ସାହିତ୍ୟ, ପ୍ରାଚୀନ କଳା ଓ ଭାସ୍କର୍ଯ୍ୟକୁ ପ୍ରଦର୍ଶିତ କରି ଓଡିଆତ୍ୱର ବିଜ୍ଞାପନ କରିବା ଜରୁରୀ ହୋଇପଡିଲା । ଯେଉଁମାନେ ଓଡିଆ ଅସ୍ମିତା ସୃଷ୍ଟିରେ ବଦ୍ଧପରିକର ସେମାନଙ୍କର ନା ଥିଲା ଅଧ୍ୟୟନ, ନା ଥିଲା ଭାଷା, ନା ଥିଲା ସଂଗଠନ । ଜଣେ ଉଚ୍ଚ ଶିକ୍ଷିତ, ସ୍ୱାଭିମାନୀ, ପ୍ରଚଣ୍ଡ ଓଡିଆ ପ୍ରେମୀଙ୍କ ଅପେକ୍ଷାରେ ଥିଲା ଓଡିଶା । ଏହି ସନ୍ଧିକ୍ଷଣରେ ମଧୁବାବୁଙ୍କ ଓଡିଶା ଆଗମନ ହେଲା ।

ମଧୁ ବାବୁଙ୍କ ଆଗମନକୁ ଯେପରି ଶତାବ୍ଦୀବ୍ୟାପୀ ନିଷ୍ପେସିତ, ନିର୍ଯ୍ୟାତିତ ଏକ ନିର୍ବୋଧଜାତି ଗଣ୍ଠିଧନ କରି ପାଇଲା । ସ୍ଫୁରିତ ହେଲା ବଚନ, ନିଜ ଦାବୀ ଉପସ୍ଥାପନା କରି ଜାତୀୟ ଜୀବନକୁ ଗୁଦ୍ଧିମନ୍ତ କରିବାକୁ ଅଣ୍ଟାଭିଡିଲା ଜାତି । ମଧୁବାବୁ ମଧ୍ୟ ରାଜନୀତି କ୍ଷେତ୍ରରେ, ସାମାଜିକ ସ୍ତରରେ, ଶିକ୍ଷା ଓ ସଂସ୍କୃତିରେ ଥିବା ଜଡତାକୁ ଦୂରୀଭୂତ କରି ଜାତୀୟ ଜୀବନରେ ପ୍ରାଣସ୍ପନ୍ଦନ ଭରିଲେ । ସେ ଓଡିଶା ଆସିବା ପରେ ରାଜନୀତିକୁ ସମୁଚ୍ଚ ଶିଖରକୁ ଉତ୍ତୋଳିତ କରିଥିଲେ ଏବଂ ପ୍ରାଚୀନ ଭାଷା ସାହିତ୍ୟ ଅନ୍ତରାଳରେ ଓଡିଆ ଅସ୍ମିତାକୁ ଅନ୍ୱେଷଣ ଓ ପ୍ରତିଷ୍ଠା ପ୍ରଦାନ କରିଥିଲେ । ପ୍ରାଚୀନ ଓ ଆଧୁନିକ ସାହିତ୍ୟ ବିତର୍କରେ ମଧୁବାବୁ ଅଂଶଗ୍ରହଣ କରିଥିଲେ ।ଓଡିଆ ପାଠ୍ୟ ପୁସ୍ତକରେ ଅଶ୍ଳୀଳତା ଶୀର୍ଷକ ବିତର୍କରେ ମଧୁବାବୁ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲେ । ୧୮୮୪-୮୫ ରେ ବାଲେଶ୍ୱର ସ୍କୁଲ ପାଇଁ ପୁସ୍ତକ ନିର୍ବାଚନ କମିଟି ବିଚିତ୍ର ରାମାୟଣ, ନ ପୋଇ ଓ ବା ଚଉତିଶା ପୁସ୍ତକକୁ ନିର୍ବାଚନ କରିଥିଲେ । ରାଧାନାଥଙ୍କ ପ୍ରରୋଚନାରେ ବୈକୁଣ୍ଠନାଥ ଦେ ଏହି ପୁସ୍ତକ ଗୁଡିକ ଅଶ୍ଳୀଳ ଓ କୋମଳମତି ଛାତ୍ରମାନଙ୍କୁ ବିପଥଗାମୀ କରିବ ଦର୍ଶାଇ ଛୋଟଲାଟଙ୍କ ନିକଟକୁ ଏକ ଆବେଦନ ପତ୍ର ପଠାଇଲେ । ପତ୍ରଟିରେ ପୁସ୍ତକଗୁଡିକର କିଛି ଅଶ୍ଳୀଳ ଅଂଶ ଇଂରାଜୀରେ ଅନୂଦିତ ହୋଇଥିଲା । ଏହି ପ୍ରସଙ୍ଗକୁ ଉତ୍କଳ ଦର୍ପଣ, ଶିକ୍ଷାବଂଧୁ, ସଂବାଦ ବାହିକା ଓ ଉତ୍କଳ ଦୀପିକା ଅଶ୍ଳୀଳତା ଆନ୍ଦୋଳନ ରୂପେ ଗଢି ତୋଳିଥିଲେ । ଉତ୍କଳ ଦୀପିକା ଦୃଢକଣ୍ଠରେ ବୈକୁଣ୍ଠନାଥ ଦେ ଓ ରାଧାନାଥଙ୍କ ଚକ୍ରାନ୍ତକୁ ଲୋକଲୋଚନକୁ ଆଣିଥିଲା । ଶିକ୍ଷାବନ୍ଧୁ ରାଧାନାଥ ଓ ବୈକୁଣ୍ଠ ନାଥ ଦେଙ୍କ ଉଦ୍ୟମକୁ ପ୍ରଶଂସା କରିଥିବାରୁ ଦୀପିକା ଲେଖିଥିଲା :

ସହଯୋଗୀଙ୍କ ବିଚାରରେ ରହସ୍ୟର ବିଷୟ ଏହିଯେ ବିଚିତ୍ର ରାମାୟଣ ହେଲା ମନ୍ଦ ଆଉ ମେଘଦୂତ ହେଲା ଉତ୍ତମ । କାହିଁକି ଶେଷ ଲିଖିତ ପୁସ୍ତକକୁ ବାବୁ ରାଧାନାଥ ରାୟ ରଚନା ଏବଂ କୁମାର ବୈକୁଣ୍ଠନାଥ ଦେ ପ୍ରକାଶ କଲେ ବୋଲି ପରା! ଆମ୍ଭେମାନେ ତାହାଙ୍କୁ ଅନୁରୋଧ କରୁଁ ଯେ ଥରେ ମେଘଦୂତକୁ ଭଲକରି ପାଠକରି ଆପଣା ଛାତିରେ ହାତ ଦେଇ କୁହନ୍ତୁ ଯେ ଉକ୍ତ ମହାତ୍ମା ଦ୍ୱୟଙ୍କର ଉକ୍ତ ପୁସ୍ତକ ପ୍ରକାଶ ଏବଂ ବର୍ତ୍ତମାନର ଅଶ୍ଳୀଳତାର ପ୍ରତିବାଦ ସଙ୍ଗେ କେମନ୍ତ ସୁନ୍ଦର ସାମଞ୍ଜସ୍ୟ ରହିଅଛି । ଅପର ପୁସ୍ତକ ସଂପର୍କରେ ଏତିକି ବୋଲିବା ଯଥେଷ୍ଟ ଯେ ବୈକୁଣ୍ଠର ଶୋଭା ଏକା ରାଧାନାଥଙ୍କ ହେତୁରୁ ।" (ଉତ୍କଳ ଦୀପିକା ୦୮.୦୮.୧୮୮୪)

ପ୍ରାଚୀନ ପୁସ୍ତକ ଅଧିକ ନିର୍ବାଚିତ ହେଲେ ଆଧୁନିକ ପୁସ୍ତକର ସଂଖ୍ୟା କମିଯିବ ଏବଂ ଦେ' ପ୍ରେସରୁ ପ୍ରକାଶିତ ପୁସ୍ତକ ମଧ୍ୟ କମ୍ ନିର୍ବାଚିତ ହେବ ଏହାହିଁ ରାଧାନାଥଙ୍କୁ କ୍ଷୁବ୍ଧ କରିଥିଲା ଓ ଏହି ନିରର୍ଥକ ଆନ୍ଦୋଳନକୁ ଜନ୍ମ ଦେଇଥିଲା । ନୀତି ଅନୀତି ରୁଚି ଅରୁଚିର ମାନଦଣ୍ଡରେ ଓଡିଆ ସାହିତ୍ୟକୁ ବିକଳାଙ୍ଗ କରିବାକୁ ଉଦ୍ଦିଷ୍ଟ ଏହି ଚକ୍ରାନ୍ତକୁ ପଣ୍ଡକରି ଓଡିଆ ଅସ୍ମିତାକୁ ଜାଗରୂକ କରିବା ପାଇଁ ମଧୁବାବୁ ଉତ୍କଳ ଦୀପିକା (୨୦/ ୩୩) ରେ A genuine Uriya ଛଦ୍ମନାମରେ ଏକ ପତ୍ର ଦେଇଥିଲେ ଯେଉଁଥିରେ ଏହି ଛଦ୍ମ ଅଶ୍ଳୀଳତାକୁ ସମାଲୋଚନା କରି ଓଡିଆ ପ୍ରାଚୀନ ସାହିତ୍ୟର ମହାନତା ପ୍ରଦର୍ଶିତ ହୋଇଥିଲା । ଏହି ବିରଳ ପତ୍ରଟି ପାଠକଙ୍କ ଅବଗତି ପାଇଁ ଏଠାରେ ଉଦ୍ଧୃତ ହେଲା ।

To

The Editor of the Dipika.

Sir,

At present there is a very great agitation going on with regard to the selection of prize -books in the Balasore District out of the primary grant of this year. The Honourable Kumar Baikuntanath De, I hear, sent to Govt. officials printed pamphlets containing passages from Bichitra Rạmayana, Baachautisa, Napoi together with translation in English of those passage. His translation are, it is said grabled and dressed in such Languages as to shock one's feelings. I request the commissioner to take... of the fact that the Honorable Gentleman, who had the monopoly in the matter of supplying prize-books in Balasore, has been out of his humour, bacause of the small number of books purchased this year from his

press. If an enquiry is to be made, that enquiry ought to be shifting and extend over 4 or 5 years and be conducted by officers who have no connection with the Education Department.

Suppose several copies of the Bible and Shakespear's works are selected as prize books for distribution to the pupils of the grammer schools in London. What will Englishmen think of a book - seller who sends to the lord May or the followings extracts from the Bible and Shakespear, and informs him that the School -authorities have acted a miss.

And they called unto lot, and said unto him, where are the men which came unto thee this night ? Bring them out unto us that we may know them !

Genesis Chap-XIX-5

'Know' means to have sexual intercourse (Vide Chamber's Dictionary)" I have two daughters which have not known man." (Known= had sexual intercourse with).

Genesis chap- XIX -8

" come let us make our father drink wine and we will be with him, that we may preserve seed of our father."

Do Do - 32

" the first-born went in and lay with her, and he perceived not when she lay down , nor when she arose ."-

Do Do - 33

"Lucrece", quoth he, this night I must enjoy thee: if though deny, then force must work my way."- The rape of Lucrece - Shakespear

" Ten kisses short as one and one long as twenty - Venus and adonis."

Shakespear.

" I will be a pack, and thou shalt be my deer. Feed where thou wilt, on mountain or on dale : Graze on my lips; and if those lips be dry, stray lower, where the pleasant fountains lie, within this limit is relief enough sweet bottom- grass, and high delightful plain, Round rising hillocks, brakes obscure and rough.

Do Do

Is there anybody in orissa who denies that Bichitra Ramayana, Bachoutisha and Napoi are popular works and that the first is regarded as a religious book by the Rajas and Zemindars ? Then why this out cry ? Does it not originate in selfishness, and nothing but selfishness ?.

A word of apology to the christians. The above extracts from the Bible are not intended to throw discredit on the scriptures In almost all religious books of Old day we find the poets describing every incident faith fully, and the inspired writers were no exceptions to it. As for myself I have a great regard for the Bible, and my respect and love for it are no less than theirs.It is also my teacher and guide.

Yours truly

A Genuine Uriya.

ମଧୁବାବୁଙ୍କ ଅନୁଜ ଗୋପାଳ ବଲ୍ଲଭ ଦାସ ପରବର୍ତ୍ତୀ ପର୍ଯ୍ୟାୟରେ ସାହିତ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହେଲାପରେ ମଧୁବାବୁ ସ୍ୱତଃ ସାରସ୍ୱତ ଜଗତରୁ ଅପସରି ଯାଆନ୍ତି । କିନ୍ତୁ ଓଡିଆ ନାଟକ ଓ ରଙ୍ଗମଞ୍ଚର ସମୃଦ୍ଧି ସାଧନା କରି ସମାଜ ସଂସ୍କାର ଅଭିଳାଷରେ ନିଜ ବାସଗୃହଠାରେ ସ୍ଥାୟୀ ରଙ୍ଗମଞ୍ଚ ନିର୍ମାଣ କରନ୍ତି । ଏହି ରଙ୍ଗମଞ୍ଚରେ ଅନେକ ଓଡିଆ ଓ ବଙ୍ଗଳା ନାଟକ ମଞ୍ଚସ୍ଥ ହୋଇଥିଲା । ନାଟ୍ୟଶାଳାର ଅଭାବ ଦୂରୀଭୂତ କରିଥିବାରୁ ଉତ୍କଳ ଦୀପିକା ଅନ୍ତଃକରଣରେ ମଧୁ ବାବୁଙ୍କୁ ସାଧୁବାଦ ଜଣାଇଥିଲା -

ବାବୁ ମଧୁସୂଦନ ଦାସଙ୍କ କଲ୍ୟାଣରୁ ଏ ନଗରରୁ ନାଟ୍ୟଶାଳାର ଅଭାବ ବିଦୂରିତ ହେବାରୁ ଏଠା ସୌକିନ ଅଭିନୟ ପ୍ରଦର୍ଶକ ସଂପ୍ରଦାୟ ନାଟ୍ୟାଭିନୟ ଦେଖାଇବାକୁ ଅଧିକ ତତ୍ପର ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁ । ମଧୁବାବୁ ଯେପରି ନାଟ୍ୟଶାଳାଟି ନିର୍ମାଣ ଏବଂ ନାନା ଦୃଶ୍ୟପଟରେ ରଞ୍ଜିତ କରିଅଛନ୍ତି ଏବଂ ରୋସନାଇ ଇତ୍ୟାଦି ସକଳ ବିଷୟର ସୁବନ୍ଦୋବସ୍ତ କରିବାଦ୍ୱାରା ଯେମନ୍ତ ଉତ୍ସାହ ଦେଇ ଅଛନ୍ତି ତହିଁରେ କିଛିକାଳ ସୁନ୍ଦର ରୂପେ କାର୍ଯ୍ୟ ନିର୍ବାହ ହେବ ଏବଂ ବର୍ଷା କାଳରେ ସୁଦ୍ଧା ବ୍ୟାଘାତ ହେବ ନାହିଁ । ଅଭିନେତା ସଂପ୍ରଦାୟ ଯେମନ୍ତ ମନୋଯୋଗୀ ହୋଇଅଛନ୍ତି ତାହା ଆଶାପୂର୍ଣ୍ଣ ଅଟଇ ଏବଂ କ୍ରମଶଃ ଏହି ଚର୍ଚ୍ଚା ଲାଗିଥିଲେ ବଡ ଭଲ ହେବ ଏବଂ ସେମାନେ ସମସ୍ତଙ୍କର ଧନ୍ୟବାଦର ପାତ୍ର ହେବେ । (ଉତ୍କଳ ଦୀପିକା - ୦୨.୦୬.୧୮୮୮)

ଏହି ଦିନ କିରାତାର୍ଜ୍ଜୁନୀୟ ନାଟକ ଓ ବିବାହ ବିଭ୍ରାଟ ପ୍ରହସନ ଅଭିନୀତ ହୋଇଥିଲା । ଏହି ନାଟକ ଅଭିନୟକୁ ଶ୍ରୀ-ଛଦ୍ମନାମଧାରୀ ଜଣେ ପତ୍ରପ୍ରେରକ ଉତ୍କଳଦୀପିକା ଉପରୋକ୍ତ ସଂଖ୍ୟାରେ ସ୍ୱାଗତ କରିଥିଲେ ମଧ୍ୟ ସ୍କୁଲ ବାଳକମାନଙ୍କ ସାଧାରଣ ସମକ୍ଷରେ ନୃତ୍ୟ ପରିବେଷଣକୁ ଗ୍ରହଣ କରିପାରିନଥିଲେ । ଉତ୍କଳ ଦୀପିକା ତା ୦୧.୧୨.୧୮୮୮ ସଂଖ୍ୟାରେ 'ଜଣେ ଶୁଭାକାଂକ୍ଷୀ' ଛଦ୍ମନାମା ପତ୍ର ପ୍ରେରକ ମଧ୍ୟ ଓଡିଶାରେ ରଙ୍ଗମଞ୍ଚ ଓ ନାଟକାଭିନୟ ଅଭାବ ଦୂର ହୋଇଥିବାରୁ ଆନନ୍ଦ ପ୍ରକାଶ କରିଛନ୍ତି ଏବଂ ସେ ମଧ୍ୟ 'ଶ୍ରୀ -'ଙ୍କ ପରି ସ୍କୁଲ ବାଳକମାନଙ୍କ ସାଧାରଣ ସମକ୍ଷରେ ନୃତ୍ୟ ପରିବେଷଣକୁ ଗ୍ରହଣ କରିପାରିନାହାନ୍ତି । ଉତ୍କଳ ଦୀପିକା ତା ୦୮.୧୨.୧୮୮୮ ସଂଖ୍ୟାରେ "ପୁଣି ନାଟକାଭିନୟ" ଶୀର୍ଷକ ସଂବାଦରେ ମଧୁବାବୁଙ୍କ ଉଦ୍ୟମର ଭୂୟସୀ ପ୍ରସଂଶା କରାଯାଇଛି । ମଧୁବାବୁଙ୍କ ନାଟ ମନ୍ଦିର ଯେ ଓଡିଆ ନାଟକର ସାମୂହିକ ଉନ୍ନତି ବିଧାନ କରିବ ସଂପାଦକ ଏହି ଆଶାପୋଷଣ କରିଛନ୍ତି । ଏହି ନାଟ ମନ୍ଦିରରେ କାଞ୍ଚିକାବେରୀ ନାଟକ ସୁନ୍ଦର ଭାବେ ପ୍ରଦର୍ଶିତ ହୋଇଥିବାରୁ ସଂପାଦକ ଆନନ୍ଦ ପ୍ରକାଶ କରି ମଫସଲର ନାଟ୍ୟାନୁଷ୍ଠାନମାନଙ୍କୁ କଟକର ଏହି ନାଟ୍ୟ ମନ୍ଦିରରେ ନିଜ ନିଜର ନାଟକ ପ୍ରଦର୍ଶିତ କରିବାକୁ ଆହ୍ୱାନ ଦେଇଥିଲେ ।

ଓଡିଆ ନାଟକ ଓ ରଙ୍ଗମଞ୍ଚ ଉପରେ ମଧୁବାବୁଙ୍କ ତିନୋଟି ବିରଳ ଇଂରାଜୀ ପତ୍ର ଉତ୍କଳ ଦୀପିକାରେ ପ୍ରକାଶ ପାଇଥିଲା । ଏଥିରେ ନାଟକ ଯେ ସମାଜର ଦର୍ପଣ ଓ ସୁଶିକ୍ଷା ପ୍ରଦାନର ସ୍ଥଳ ଏହା ସେ ହୃଦୟଙ୍ଗମ କରିଥିଲେ । ରାମ ଶଙ୍କର ରାୟ ଓଡିଆ ଡ୍ରାମାର ପିତା ରୂପେ ସେ ଅଭିହିତ କରିଥିଲେ । ମଧୁବାବୁଙ୍କ ନାଟକ ପ୍ରତି ଆଭିମୁଖ୍ୟକୁ ସ୍ପଷ୍ଟ କରିବା ପାଇଁ ତାଙ୍କର ଗୋଟିଏ ଇଂରାଜୀ ପତ୍ର ଉତ୍କଳ ଦୀପିକା ପୃଷ୍ଠାରୁ ଏଠାରେ ଉଦ୍ଧୃତ କରାଗଲା

To The Editor of Utkal Dipika,

Sir,

You have often noticed the entertainments given by our friends of the P.W Department. It will be ludicrous if a man like me goes to enter on a criticism of their performances so well spoken of on all hands. I beg simply to invite attention to the rapid progress in every respect during so short a time and the zeal and perseverance of our friends. We cannot sufficiently thank them for what they have done and we do not know what they will do. I take their performances as so many lectures to revive and foster the taste for drama created by Babu Ram Sunker Roy, the father of Uriya Drama. Their performances have already tempted many to think of drama in Uriya and we shall not to be surprised if a Uriya Kansa or Rabana is killed era long. Our friends of P.W. Department are thus doing far greater painting Upendra Bhanja or the like in the darkest possible colour. They do not tell us that this thing and that thing is bad, that people should not see Bohu Natch but simply send cards to us see that Prahlad is the best character conceivable, How the prostitute Chintamoni, becomes a religious convert and how Harischandra sells wife and sons to keep his words. A revolution is thus being brought about silently and slowly.

So much for the Uriya literature. We cannot thanks our friends sufficiently for the amusement they give at so short intervals. They break the dead monotony of the station and give a great relief to the quil driver to whom recreation is far more beneficial than half a dozen bottles of mother Seigem's syrup or many tolas of Makardhwaja. It is holding a candle to the sun to say more to those whose heads is full of western ideas and Natch Tomashas are among the necessaries of life as it were of the people of the east.

Our friends of the P.W. Departments have done so much for us. Are we not to entertain them in return? It is not the etiquette. How are we to show our gratitude? They seem to

take great delight in teaching and amusing us. Is it not the best way to help them in their performances so that we may have one common amusement? I am sorry to hear that attempt is being made to start another party. Does the station want two such things? If not, I think it is our duty to preserve and improve that on which our friends have already spent so much money and labour. I am afraid I have grown too long so I must take here for the present.

Yours faithfully

An Uriya

ଓଡ଼ିଆ ନାଟକକୁ ସମୃଦ୍ଧ କରି ଜାତୀୟ ଜୀବନକୁ ରୁଦ୍ଧିମନ୍ତ କରିବାର ଅଭିପ୍ରାୟରେ ମଧୁବାବୁ ନାଟକ ମଞ୍ଚସ୍ଥ, ନାଟକ ରଚନା ଓ ରଙ୍ଗମଞ୍ଚ ପ୍ରତିଷ୍ଠା ଇତ୍ୟାଦିରେ ଉଦ୍ୟମ ଓ ପ୍ରୋତ୍ସାହନ ଯୋଗାଇଥିଲେ । ୧୯୦୫ ରେ ମୁମ୍ବାଇର ସଙ୍ଗଲି ଥିଏଟର କଟକ ଠାରେ ୩ମାସ ଅଭିନୟ କରି ଗଲାବେଳେ ମଧୁବାବୁ ଓ ରାମଶଙ୍କର ପ୍ରମୁଖ ତାଙ୍କୁ ପୁରସ୍କୃତ କରିଥିଲେ । ଏହି ପ୍ରସଙ୍ଗରେ ମଧୁବାବୁଙ୍କ ପ୍ରଦତ୍ତ ବକ୍ତୃତା ତାଙ୍କର ଅଭିମୁଖ୍ୟକୁ ସ୍ପଷ୍ଟ କରେ-

...ଯେପରି ଦେଶରେ ନାନା ସ୍ଥାନରେ ଜଳ ବୋହି ଯାଉଥାଏ ସମାଜରେ ସେହିପରି ଭଲମନ୍ଦ ଗୁଣମାନ ଚଳୁଥାଏ । ମାତ୍ର ବହନ୍ତା ନଦୀର ଜଳ ଭଲମନ୍ଦକୁ ଅନାଇଲେ ହଠାତ୍ ଦେଖାଯାଏ ନାହିଁ, ସ୍ୱଚ୍ଛ ଗ୍ଲାସ୍‌ରେ ଉଠାଇ 'ଧରିଲେ ଜଣାପଡେ । ସେହିପରି ରଙ୍ଗମଞ୍ଚରୂପ କ୍ଷୁଦ୍ରାୟତନ ବିଶିଷ୍ଟ ସ୍ଥାନରେ ସମାଜର କୁସଂସ୍କାର ଏବଂ ସୁଗୁଣମାନ ସହଜରେ ଚିହ୍ନା ପଡଇ । ଅଳ୍ପଦିନ ତଳେ ଏହି ଥିଏଟର କମ୍ପାନୀ ଶିବାଜୀର ଅଭିନୟ କରିବା କାଳରେ ସ୍ୱଦେଶପ୍ରେମ ଓ ସ୍ୱଜନୋପକାରର ଜ୍ୱଳନ୍ତ ଉଦାହରଣ ଦେଖାଯାଇଥିଲା ଏବଂ ସଙ୍ଗେ ସଙ୍ଗେ ସେହି କ୍ଷୁଦ୍ରାୟତନ ସ୍ଥାନରେ ଆ[ଉ]ରଙ୍ଗଜେବର ଗର୍ବ ଏବଂ ଅତ୍ୟାଚାରର ମଧ ଉଦାହରଣ ଦେଖାଗଲା । ଏଣୁ ରଙ୍ଗମଞ୍ଚ ଗୋଟିଏ ଉପଯୁକ୍ତ ଶିକ୍ଷାସ୍ଥଳ ଅଟେ ଏବଂ ଅଭିନେତାମାନେ ଗୁରୁସ୍ଥାନୀୟ ।(ଉତ୍କଳ ଦୀପିକା -୨୪.୦୬.୧୯୦୫)

ମଧୁବାବୁ ସ୍ୱଦେଶୀ ଜିନିଷକୁ ଆଦର କରିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇଥିଲେ । କଟକରେ ଅଗଷ୍ଟ ୧୯୦୫ରେ ସ୍ୱଦେଶୀୟ ଦ୍ରବ୍ୟ ବ୍ୟବହାର ସମ୍ବନ୍ଧରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ଏଥିରେ ବକ୍ତୃତା ପ୍ରଦାନକରି ମଧୁବାବୁ କହିଥିଲେ ଦେଶୀୟ ଦ୍ରବ୍ୟର ବ୍ୟବହାର ହିଁ ଦେଶ ପ୍ରେମର ଅନ୍ୟତମ ଦୃଷ୍ଟାନ୍ତ । ପ୍ରତ୍ୟେକ ଲୋକଙ୍କୁ ଦେଶର ହିତ ପାଇଁ ୫।୧୦ ମିନିଟ୍ ବିନିଯୋଗ କରିବାକୁ କହିଥିଲେ । ଏ ସଂପର୍କରେ ଇଂରେଜମାନଙ୍କ ଦେଶପ୍ରେମର ଦୃଷ୍ଟାନ୍ତ ପ୍ରଦାନ କରିଥିଲେ । (ଉତ୍କଳଦୀପିକା

୨୬.୮.୧୯୦୫) ସ୍ୱଦେଶର ଶିଳ୍ପୋନ୍ନତି ପାଇଁ ସେ ୧୮୯୭ରେ ଓଡିଶା ସୂକ୍ଷ୍ମ କାରଖାନା (Orissa Art ware work's) ସ୍ଥାପନ କରିଥିଲେ । ଏଥିରେ କଟକର ପ୍ରସିଦ୍ଧ ତାରକସି କାମର ଉନ୍ନତି, ପ୍ରଚାର ଓ ପ୍ରସାର ପାଇଁ ଏକଶହ ପଚାଶ ଜଣ ଶିଳ୍ପୀ ପ୍ରତ୍ୟେହ କାର୍ଯ୍ୟ କରୁଥିଲେ । ୧୯୦୫ରେ ଉତ୍କଳ ଟ୍ୟାନେରୀ ସ୍ଥାପନ କରିଥିଲେ । ମଧୁସୂଦନଙ୍କ ଶିଳ୍ପ ପ୍ରତିଭା ଓ ଦେଶପ୍ରେମର ଅମଳିନ ଦୃଷ୍ଟାନ୍ତ ଉତ୍କଳ ଟ୍ୟାନେରୀ । ସେ କହୁଥିଲେ ଯଦି ଗୋଟିଏ ଖରାପ ଜୋତା ବା ଚମଡା ବିଦେଶରେ କାହାରି ହାତରେ ପଡିବ ସେ କହିବ ଓଡିଆମାନେ ଠକ । ମୁଁ ମୋ ଜାତି ପାଇଁ ଏପରି ବଦନାମ ଅର୍ଜନ କରିବାକୁ ଚାହେଁନା । (ଉତ୍କଳ ଗୌରବ ମଧୁସୂଦନ ପୃ-୧୨୭, ନବକିଶୋର ଦାସ)

ଓଡିଆ ଅସ୍ମିତାକୁ ବିଶ୍ୱବ୍ୟାପୀ ପ୍ରତିଷ୍ଠା ଦେବାରେ ଉତ୍କଳ ଟ୍ୟାନେରୀ ସଫଳ ହୋଇଥିଲା । ମଧୁବାବୁ ନିଜ ଜୀବନର ଅର୍ଜିତ ସମସ୍ତ ଅର୍ଥକୁ ଓଡିଆ ଜାତିର ମାନ ଓ ମର୍ଯ୍ୟାଦା ରକ୍ଷା ଦିଗରେ ଖର୍ଚ୍ଚ କରି ଦେବାଳିଆ ହୋଇଛନ୍ତି କିନ୍ତୁ ନିଜର ସ୍ୱାଭିମାନକୁ କେବେବି ବଳୀ ଦେଇ ନାହାନ୍ତି । White Way Company ୫୦ହଜାର ଟଙ୍କା ବିନିମୟରେ ଜୋତାରେ ଉତ୍କଳ ଟ୍ୟାନେରୀ ମୋହର ବଦଳରେ ନିଜ କଂପାନୀର ମୋହର ମାରି ବିକ୍ରି କରିବାକୁ ପ୍ରସ୍ତାବ ଦେଇଥିଲେ । ଉତ୍କଳ ଟ୍ୟାନେରୀ ଆର୍ଥିକ ସଂକଟରେ ଗତି କରୁଥିଲେ ମଧ ମଧୁବାବୁ ପ୍ରତ୍ୟାଖ୍ୟାନ କରିଥିଲେ । ନିଜ ସିଦ୍ଧାନ୍ତରେ ଅଟଳ ରହି ଓଡିଆ ସ୍ୱାଭିମାନ ଓ ଅସ୍ମିତାକୁ ସେ ସୁଦୃଢ ଭିତ୍ତିରେ ପ୍ରତିଷ୍ଠା ଦେଇଥିଲେ । ମହାତ୍ମାଗାନ୍ଧୀଙ୍କ ଖଦଡ ପ୍ରଚାର କଳ୍ପନା ପୂର୍ବରୁ ମଧୁବାବୁ ଦେଶୀମନ୍ତ୍ରରେ ଦେଶୀ ତନ୍ତିମାନଙ୍କ ଦ୍ୱାରା ସୁନ୍ଦର ପଖାଳକରା ଲୁଗାବୁଣି ସାରା ଜଗତକୁ ଚକିତ କରି ଦେଇଥିଲେ ।

ନାରୀଶିକ୍ଷା ଓ ନାରୀ ପ୍ରଗତି ପାଇଁ ମଧୁବାବୁ ବେଶ ଉଦ୍ୟମ କରିଥିଲେ । ଶୈଳବାଳାଙ୍କୁ ଉଚ୍ଚ ଶିକ୍ଷିତା କରି ଦେଶ ସେବା ଦିଗରେ ଯତ୍ନବତୀ ହେବାକୁ ପ୍ରବର୍ତ୍ତାଇଥିଲେ । ରମାଦେବୀ (ମଧୁବାବୁଙ୍କ ଝିଆରୀ) ପ୍ରିୟମ୍ବଦା ଦେବୀ (ବରୀର ପ୍ରଥମ ବିଧାୟିକା ତଥା ମଧୁବାବୁଙ୍କ ସଂପର୍କୀୟ ଭାଇ ନାରାୟଣ ଚନ୍ଦ୍ର ଦାସଙ୍କ ଝିଅ) ପ୍ରଭୃତି ନାରୀନେତ୍ରୀଙ୍କ ପ୍ରତିଷ୍ଠା ମଧୁବାବୁଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ବିକଶିତ ହୋଇଥିଲା । କଟକରେ ସ୍ଥାପିତ ରେଭେନ୍‌ସା ଗାର୍ଲସ କଲେଜ ମଧୁସୂଦନଙ୍କ ଅର୍ଥବ୍ୟୟ ଓ ଉଦ୍ୟମରେ ପ୍ରତିଷ୍ଠିତ । ଯାହା କି ପରେ ଶୈଳବାଳା ମହିଳା ମହାବିଦ୍ୟାଳୟ ନାମ ଗ୍ରହଣ କରିଥିଲା । ସମାଜରେ ନାରୀକୁ ପଣ୍ୟ ଓ ବିଳାସ ସାମଗ୍ରୀ ଭାବେ ଥିବା ମଧ ଯୁଗୀୟ ମନୋବୃତ୍ତିକୁ ମଧୁବାବୁ ବଦଳାଇ ଦେଇଥିଲେ । ପୁରୁଷ ତାନ୍ତ୍ରିକ ସମାଜରେ ନାରୀ ଶିକ୍ଷାର ଅପରିହାର୍ଯ୍ୟତାକୁ ଅନୁଭବକରି ୧୯୧୩ ମସିହା ଉତ୍କଳ ସମ୍ମିଳନୀର ସଭାପତି ଅଭିଭାଷଣରେ ସେ ଘୋଷଣା କରିଥିଲେ :

ଇତିହାସ ଲିଖିତ ପୁରାକାଳରେ ଆମ୍ଭମାନଙ୍କର ଗୌରବାନ୍ୱିତ ଅବସ୍ଥା ସ୍ମରଣକରି ଆମ୍ଭେମାନେ ଆସ୍ଫାଳନ କରିଥାଉ । କିନ୍ତୁ ତେତେବେଳେ ଜାତି ବୋଇଲେ ସ୍ତ୍ରୀ ଓ ପୁରୁଷ

ତହିଁର ଅନ୍ତର୍ଗତ ବୋଲି ବୁଝାଉଥିଲା । ବର୍ତ୍ତମାନ ଜାତି ବୋଇଲେ କେବଳ ପୁରୁଷମାନଙ୍କୁ ବୁଝାଏ । ଜାତିର କୌଣସି କାର୍ଯ୍ୟରେ ସ୍ତ୍ରୀ ମାନେ ଯୋଗ ଦିଅନ୍ତି ନାହିଁ କିମ୍ବା ସେରୂପ କାର୍ଯ୍ୟରେ ସେମାନେ ଆମ୍ଭଙ୍କୁ ସାହାଯ୍ୟ କରିବା ପାଇଁ ଆମ୍ଭେମାନେ ଇଚ୍ଛା କରୁନାହୁଁ । ଓଡିଶାର ବର୍ତ୍ତମାନ ସୁଶିକ୍ଷିତ ଲୋକମାନଙ୍କ ମଧ୍ୟରେ ପୁସ୍ତକ ଲେଖିବାର ଇଚ୍ଛା ଅତିଶୟ ବଳବତୀ ହେବାର ଦେଖାଯାଏ । ଅନେକ କବିତା ରଚିତ ହେଉଅଛି । ନାଟକ ଲେଖିବାର ଇଚ୍ଛା ମଧ ପ୍ରବଳ ହୋଇଥିବାର ବୋଧହୁଏ । ମୁଁ ଗ୍ରନ୍ଥକର୍ତ୍ତାମାନଙ୍କ ଅନୁଗ୍ରହରୁ ପୁସ୍ତକ ସବୁ ପାଇଯାଏ । ସେସବୁ ପୁସ୍ତକ ମଧ୍ୟରୁ ଅଧିକାଂଶରେ ଦେଖାଯାଏ ଯେ ମାନସିକ ଚିତ୍ରପଟରେ ସ୍ତ୍ରୀ ଜାତିର ମାଧୁର୍ଯ୍ୟ ପ୍ରକୃତି ସ୍ଥାପନ କରି ଲେଖନୀ ପରିଚାଳନା କରିଅଛନ୍ତି । ଅଥଚ ଅନୁସନ୍ଧାନ କଲେ ଦେଖାଯାଏ ଯେ ଅନେକ ସ୍ଥଳରେ ଲେଖକ କାର୍ଯ୍ୟରେ ସ୍ତ୍ରୀ ଶିକ୍ଷାର ବିରୋଧୀ ।(ପୃ - ୨୯୬/୨୯୭, ଉତ୍କଳ ସମ୍ମିଳନୀ -୧୯୦୩-୧୯୩୬, ଦେବେନ୍ଦ୍ର କୁମାର ଦାଶ)

ଓଡିଆ ଅସ୍ମିତାର ଅଙ୍କୁରୋଦ୍‌ଗମ ଷୋଡଶ ଶତାବ୍ଦୀରୁ ସାରଳା ଦାସଙ୍କ ମହାଭାରତରେ ହୋଇଥିବାର ଜଣାଯାଏ । ଏହି ଅସ୍ମିତାର ପରିବ୍ୟାପ୍ତ ରୂପ ଜାତୀୟ ଚେତନାକୁ ଊନବିଂଶ ଶତାବ୍ଦୀରେ ରୁଦ୍ଧିମନ୍ତ କରେ । ନିଜର ପରିଚୟକୁ ଦୃଢୀଭୂତ କରିବା ପାଇଁ ସମସ୍ୟା ଜର୍ଜରିତ ଏକ ଜାତି ଉପାୟ ଶୂନ୍ୟ ଭାବରେ ଅନ୍ଧକାରକୁ ବରଣ କରିନେଲାବେଳେ ମଧୁବାବୁଙ୍କ ଆବିର୍ଭାବ ଘଟେ । ମଧୁବାବୁଙ୍କ ଉତ୍କଳ ସମ୍ମିଳନୀ ଓଡିଆ ଅସ୍ମିତାର ସୁଦୃଶ୍ୟ କୋଣାର୍କ । ଓଡିଆ ଅସ୍ମିତା ଭାଷା ସାହିତ୍ୟ ମଧ୍ୟରେ ଯେତେବେଳେ ପ୍ରକାଶର ଆଲୋକ ଖୋଜୁଥିଲା ସେତେବେଳେ ଧର୍ମ ଓ ସଂସ୍କୃତି ସହିତ, ବ୍ୟବସାୟ ଓ ଶିଳ୍ପ ସହିତ ତାକୁ ଏକୀଭୂତ କରିଦେଲେ ମଧୁବାବୁ । ତେଣୁ ଭଞ୍ଜ ସାହିତ୍ୟକୁ ଅଶ୍ଳୀଳ କହି ବୈକୁଣ୍ଠନାଥ ଦେ ପ୍ରମୁଖ (ରାଧାନାଥାଙ୍କ ସହାୟତା କ୍ରମେ) ଯେତେବେଳେ ବ୍ରିଟିଶସରକାରଙ୍କୁ ଆବେଦନ କରିଥିଲେ ସେତେବେଳେ ମଧୁବାବୁ ବାଇବେଲ ଓ ସେକ୍‌ସପିଅରଙ୍କ ରଚନାର ଦୃଷ୍ଟାନ୍ତ ପ୍ରଦାନ କରି ଭଞ୍ଜ ସାହିତ୍ୟର ମହତ୍ୱ ପ୍ରତିପାଦିତ କଲେ । (ଦ୍ରଷ୍ଟବ୍ୟ ମଧୁବାବୁଙ୍କ ଦୀପିକା ୧୫.୦୮.୧୮୮୫ ପ୍ରକାଶିତ ଚିଠି) ଜାତି ଧର୍ମ ସହିତ ସାହିତ୍ୟକୁ ସଂପର୍କିତ କରି ଊନବିଂଶ ଶତକର ଓଡିଆ ଅସ୍ମିତାକୁ ମଧୁବାବୁ ନୂତନ ଦିଗନ୍ତର ସନ୍ଧାନ ଦେଇଛନ୍ତି ।

ମଧୁବାବୁଙ୍କ ଜାତୀୟତା ବୋଧର ଅନ୍ୟତମ ଜ୍ୱଳନ୍ତ ଉଦାହରଣ 'The Oriya' ନାମକ ସାପ୍ତାହିକ ସଂବାଦ ପତ୍ରିକା ସଂପାଦନା । ପତ୍ରିକାଟି ଇଂରାଜୀରେ ପ୍ରକାଶିତ ହେଉଥିଲା । ଏହାରି ମାଧ୍ୟମରେ ଓଡିଆ ଜାତିର ତଥା ଓଡିଶାର ବିବିଧ ସମସ୍ୟାପ୍ରତି ଇଂରେଜ ଶାସକ ତଥା ଦେଶର ବୁଦ୍ଧିଜୀବୀଙ୍କ ଦୃଷ୍ଟି ଆକର୍ଷଣ କରାଯାଉଥିଲା । ୧୯୦୩-୦୪ ମସିହା ବେଳକୁ ଉତ୍କଳ ଦୀପିକାରେ ପ୍ରକାଶିତ ଇଂରାଜୀ ସ୍ତମ୍ଭର ସଂପାଦନା କରୁଥିଲେ ମଧୁବାବୁ । ଓଡିଶାର ସମସ୍ୟାକୁ ଇଂରେଜ ପ୍ରଶାସକଙ୍କ ସମ୍ମୁଖରେ ଉପସ୍ଥାପନା କରିବା

ଏହାର ଆଭିମୁଖ୍ୟ ଥିଲା । ୧୯୧୫ରେ ଗୌରିଶଙ୍କରଙ୍କ ତିରୋଧାନାରେ ଏହି ଲକ୍ଷ୍ୟ ବିଚ୍ୟୁତ ହୁଏ । ଫଳରେ ଉତ୍କଳ ସମ୍ମିଳନୀର ଅଧିବେଶନରେ ଏକ ଇଂରାଜୀ ପତ୍ରିକା ପ୍ରକାଶକରି ଉପରୋକ୍ତ ଲକ୍ଷ୍ୟ ସାଧନପାଇଁ ପ୍ରସ୍ତାବ ଆଗତ ହୁଏ । ଏହି ପ୍ରସ୍ତାବ କ୍ରମରେ ମଧୁବାବୁ ୧୯୧୭ରୁ 'The Oriya' ପ୍ରକାଶ ଓ ସଂପାଦନା ଭାର ଗ୍ରହଣ କରନ୍ତି ।

ମଧୁ ବାବୁଙ୍କ ମାନସ ସନ୍ତାନ ଉତ୍କଳ ସମ୍ମିଳନୀ । ଉତ୍କଳ ସମ୍ମିଳନୀ ଓଡିଆ ଅସ୍ମିତାର ବଦରିକାଶ୍ରମ । ଓଡିଆ ଜାତୀୟତାର ନନ୍ଦିଘୋଷ । ଏହାରି ଅମୃତ କ୍ଷେତ୍ରରେ ମଧୁବାବୁ ବିଶ୍ୱମୟ ସ୍ୱପ୍ନ ଦେଖିଥିଲେ । ଯେଉଁ ସ୍ୱପ୍ନରେ ପ୍ରାକୃତିକ ଉତ୍କଳର ସ୍ୱାଧିନତା, ପ୍ରବାସୀ ଉତ୍କଳୀୟମାନଙ୍କ ସ୍ୱାର୍ଥ ସଂରକ୍ଷଣ ସହିତ ଗୋଟିଏ ସୂତ୍ରରେ ସମସ୍ତଙ୍କୁ ବାନ୍ଧି ମା, ମାଟି ଓ ମାତୃଭୂମିର ପୂଜନ ପରିପ୍ରେକ୍ଷୀରେ ଓଡିଆ ଅସ୍ମିତାର ପ୍ରତିଫଳନ । ମଧୁବାବୁ ପ୍ରଥମେ ନିଜ ଜାତିର ପ୍ରାଣ ସ୍ପନ୍ଦନକୁ ଅନୁଭବ କରିଥିଲେ ପରେ ସେ ରାଷ୍ଟ୍ର ଚିନ୍ତା କରୁଥିଲେ । ମାଟି ମା ପାଇଁ ବ୍ୟାକୁଳତାର ତୀବ୍ରତା ଭିତରେ ତାଙ୍କର ଜାତୀୟ ଭାବନା ସ୍ପଷ୍ଟ ଓ ବିକଶିତ । ତେଣୁ ସେ ଗାଇଥିଲେ

ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି,
'ସ୍ୱାର୍ଥ ମେଧ ଯଜ୍ଞ' ଚାରିଆଡେ ନାଚ
ଛାତିକୁ ମିଶାଇ ଛାତି ।
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ର ଭୁଜା,
ସେହି ତୋର ମାତା ସେହି ତୋର ତ୍ରାତା
କର ସେହି ପଦ ପୂଜା । (ସନ୍ତାନର ଉକ୍ତି)

ଅଳ୍ପ ଓଡିଆ କବିତା ଭିତରେ ତାଙ୍କର ଜାତୀୟ ଚେତନାର ଭାବ ସ୍ପନ୍ଦନ ଯେତିକି ତୀବ୍ର ସେତିକି ଆବେଦନ କ୍ଷମ । ଓଡିଆମାନଙ୍କ କୁତ୍ସିତ ଜାତିଭେଦ ପ୍ରଥା ମସ୍ତକରେ ପଦାଘାତ କରି ମାନବବାଦର ପ୍ରତିଷ୍ଠାରେ ସେ ଥିଲେ ଦୃଢ ସଂକଳ୍ପ । ମୋଚିମାନଙ୍କ ସହିତ କାନ୍ଧକୁ କାନ୍ଧ ମିଶାଇ ସେ ଗଢିଥିଲେ ଉତ୍କଳ ଟ୍ୟାନେରୀ । ଓଡିଆ ଜାତୀୟତାର ଯଜ୍ଞମଣ୍ଡପ ଉତ୍କଳ ସମ୍ମିଳନୀର ମଞ୍ଚ ଉପରେ ନବସି ସେଇ ଦଳିତ ନିମ୍ନ ଜାତିମାନଙ୍କ ସହିତ ମଞ୍ଚ ତଳେ ବସୁଥିଲେ । ତାଙ୍କର ସେହି ସାମ୍ୟ ଦର୍ଶନରେ ଆକର୍ଷିତ ହୋଇ ମହାତ୍ମା ଗାନ୍ଧୀ ବମ୍ବେ କ୍ରୋନିକିଲ୍ସ ରେ ୧୫ ନଭେମ୍ବର ୧୯୩୨ ରେ ଲେଖିଥିଲେ...

The late Madhusudan Das was a great philantropist and had himself learnt the modern process of tanning, had prepared

statistics to show what the country was losing annualy owing to the superisitition of untouchability masquerdding under the name of religion. Harijan workers can learn the modern method and acquaint the tanners with it in so for as it is practicable. (Madhusudan Das: His Life and Achievements - by : Debendra Kumar Dash : 2002:)

ଯଦିଓ ଗାନ୍ଧିଜୀ ମଧୁବାବୁଙ୍କ ଦେହାନ୍ତ ଉପଲକ୍ଷେ ଏହି ସ୍ମୃତିଚାରଣ କରିଥିଲେ ପ୍ରକୃତରେ ମଧୁବାବୁଙ୍କ ଦେହାନ୍ତ ସେତେବେଳେ ହୋଇନଥିଲା ବରଂ ସେ ୧୯୩୪ ଫେବୃୟାରୀ ୪ତାରିଖରେ ମହାପ୍ରାୟାଣ ଲଭିଥିଲେ । ତାଙ୍କର ତିରୋଧାନରେ ଓଡିଶା ଅନ୍ଧକାର ହୋଇଯାଇଥିଲା । ପ୍ରତିଟି ଓଡିଆ ନିଜର ପ୍ରିୟ ନେତାଙ୍କର ଅବର୍ତ୍ତମାନରେ ଅଶ୍ରୁ ବିସର୍ଜନ କରିଥିଲେ । ସଂଗ୍ରାମ କେଶରୀ ଚାଲିଯାଇଥିଲା ସିନା କିନ୍ତୁ ଓଡିଆ ଅସ୍ମିତାକୁ ବିଶ୍ୱ ଦରବାରରେ ପ୍ରତିଷ୍ଠା ଦେଇଯାଇଥିଲା । ତେଣୁ ମାୟାଧର ମାନସିଂହ ମଧୁବାବୁଙ୍କ ସ୍ମୃତିଚାରଣ କରିବାକୁ ଯାଇ 'ସହକାର' (୧୪/୧୦) ମଧୁସୂଦନ ସ୍ମୃତିସଂଖ୍ୟା ପୃଷ୍ଠାରେ ଗାଇଥିଲେ

ନରପୁଙ୍ଗବ ମରତେ ଦେଖିଲ ଯାହାକୁ
ବର ସନ୍ତାନ ପରି ଚିହ୍ନାଇଲ ମାଆକୁ
ମାଆର ବିପଦେ ଦେଖାଇଲ ନିଜ ବାହାକୁ
ଇତିହାସ ଆଜି ତୁମର ସେ ସବୁ କାର୍ଯ୍ୟ ହେ ।
ଆର୍ଯ୍ୟ ହେ ବୀର ବର୍ଯ୍ୟ ହେ !
ସ୍ତବ କି ତବ ତୂର୍ଯ୍ୟ ହେ ।

(ଆର୍ଯ୍ୟ ମଧୁସୂଦନ, ମାୟାଧର ମାନସିଂହ)

ପ୍ରଥମ ଓଡିଆ ଏମ୍.ଏ, ପ୍ରଥମ ଓକିଲ, ପ୍ରଥମ ବିଲାତ ଯାତ୍ରୀ ପ୍ରଭୃତି ଅଜସ୍ର ବିଶେଷଣର ବହୁ ଉର୍ଦ୍ଧ୍ୱରେ ଉତ୍କଳ ମାର୍ତ୍ତଣ୍ଡ ମଧୁସୂଦନଙ୍କ ଅବସ୍ଥାନ । ଓଡିଆର ଯେଉଁ ଅସ୍ମିତା ସାରଳା ଦାସଙ୍କ ଅମଳରୁ କ୍ଷୀଣ ଭାବାବେଗ ଭିତରେ ପଥ ଖୋଜୁଥିଲା ତାହା ମଧୁବାବୁଙ୍କ ବ୍ୟକ୍ତିତ୍ୱ ଦ୍ୱାରା, ରଚନା ଓ ଭାଷଣ ଦ୍ୱାରା ପରିବ୍ୟାପ୍ତ ଓ ଭୂମାମୟ ହେଲା । ଓଡିଆ ଅସ୍ମିତାର ଗୌରବଜ୍ୱଳ ଇତି କଥା ମଧୁବାବୁଙ୍କ ତୁଙ୍ଗ ପ୍ରତିଭା ଜଳଦାନରେ ଦୃଢ ଭିତ୍ତିରେ ପ୍ରତିଷ୍ଠିତ ହେଲା । ନିର୍ବୋଧ ଓଡିଆ ଜାତି ନିଜର ପଥ ଓ ପୃଥିବୀ ପାଇଲେ ନୁହେଁ ବରଂ ମୁଁ ଓଡିଆ କହି ଗୌରବ ଅନୁଭବ କଲେ ଏବଂ ଏହି କ୍ରାନ୍ତିକାରୀ ଯୁଗସନ୍ଧିର ସୁବର୍ଣ୍ଣ ଇତିହାସ ମଧୁବାବୁଙ୍କ ଅବଦାନରେ ପୁଷ୍କଳ ଓ ମର୍ଯ୍ୟଦାବନ୍ତ ହୋଇଥିଲା ।

# ବିଶ୍ୱନାଥ କରଙ୍କ ଗୋଟିଏ ଦୁର୍ଲଭ ପ୍ରବନ୍ଧ

ବିଶ୍ୱନାଥ କର ଜଣେ ଯୁଗସ୍ରଷ୍ଟା ଯୁଗଦ୍ରଷ୍ଟା ବିଦ୍ରୋହୀ ସାରସ୍ୱତ ଶିଳ୍ପୀ । ସେ ସମକାଳୀନ ଓଡିଆ ଗଦ୍ୟ ପରିମଣ୍ଡଳର ଜଣେ ସ୍ୱତଃସିଦ୍ଧ, ପରିବ୍ୟାପ୍ତ ଜ୍ଞାନ ଭୂମିଲଗ୍ନ ପ୍ରାବନ୍ଧିକ । ସଂସ୍କାରକରୁ ସଂପାଦକ ଦେଇ ତାଙ୍କର ଗଦ୍ୟଚର୍ଯ୍ୟା ବିସ୍ତାରିତ ଚିତ୍ରିତ ଓ ସୌନ୍ଦର୍ଯ୍ୟମୟ । ଓଡିଆ ଗଦ୍ୟର ନିରସ ଭାବମଗ୍ନତାକୁ ସେ ପ୍ରାଣସ୍ପର୍ଶୀ, ଦିଗନ୍ତସ୍ପର୍ଦ୍ଧି ଓ ବହୁବିନ୍ୟାସର ଠାଣି ପ୍ରଦାନ କଲେ । ଏହି ବହୁବିନ୍ୟାସ ବ୍ୟକ୍ତିତ୍ୱର ଆଧାରରେ ଯେଉଁ ବିଶ୍ୱନାଥ କରଙ୍କୁ ଆମେ ପ୍ରତ୍ୟକ୍ଷ କରୁ ସେ ଯେତିକି ପ୍ରକାଶିତ ତତୋଽଧିକ ଅପ୍ରକାଶିତ । ଯେତିକି ଆଲୋଚିତ ସେତିକି ଅନାଲୋଚିତ । ସେହି ଗରୀମାମୟ ସାରସ୍ୱତ ସାଧକଙ୍କ ବହୁମୁଖୀ ସାରସ୍ୱତ ସାଧନାର ଏକ ବିଶେଷ ଦିଗପ୍ରତି ସୂକ୍ଷ୍ମ ନିର୍ଦ୍ଦେଶ କରିବା ଏହି ଆଲୋଚନାର ଆଭିମୁଖ୍ୟ ।

ବିଶ୍ୱନାଥ କର ବାଗ୍ମୀ, ବହୁପାଠୀ, ବହୁ ଶାସ୍ତ୍ରଦର୍ଶୀ ଅନନ୍ୟ ସାଧକ । ଓଡିଆ ସାହିତ୍ୟରେ ମୁଖ୍ୟତଃ ତିନୋଟି ପରିଚୟ ନେଇ ସେ ଆବିର୍ଭାବ ହୁଅନ୍ତି । ୧. ସଂପାଦକ ଉତ୍କଳ ସାହିତ୍ୟର ୨. ପ୍ରାବନ୍ଧିକ ୩. ଓଡିଶାରେ ବ୍ରାହ୍ମସମାଜର ଅନ୍ୟତମ ନେତା ତଥା ସଂସ୍କାରକ । ଯଦିଓ ଏହି ତିନୋଟି ପରିଚୟ ତାଙ୍କ ସହିତ ବାନ୍ଧି ହୋଇଥିଲା ତଥାପି ପରବର୍ତ୍ତୀ କାଳରେ ଓଡିଆ ଆନ୍ଦୋଳନର ଅନ୍ୟତମ କର୍ମୀ ଓ ନେତା ଭାବରେ ସେ ଉଭା ହୋଇଥିଲେ ଓ ବିହାର ଓଡିଶା ବିଧାନ ପରିଷଦର ଅନ୍ୟତମ ସଦସ୍ୟ ଥିଲେ । ୧୯୧୧ ବେଳକୁ ସେ ପାଞ୍ଚବର୍ଷ ପାଇଁ ବିହାର-ଓଡିଶା କାଉନ୍‌ସିଲର ଜଣେ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ଅଜସ୍ର ପ୍ରତିରୋଧ ସତ୍ତ୍ୱେ ମାତୃଭାଷାର ମମତାକୁ ଉଜ୍ଜୀବୀତ ରଖି ସେ ବ୍ୟବସ୍ଥାପକ ସଭାରେ ପ୍ରଥମରେ ଓଡିଆରେ ବକ୍ତୃତା ଦେଇଥିଲେ । ଏହାକୁ ଅଣଓଡିଆ ସଭ୍ୟମାନେ ବିରୋଧ କରିବାରୁ ସେ ଦୃଢକଣ୍ଠରେ ଘୋଷଣା କରିଥିଲେ- "ଓଡିଆ ଏକ ପ୍ରାଚୀନ ଭାଷା; ମୁଁ ଓଡିଆ, ମୋର ଭାଷା ଓଡିଆ, ମୋତେ ଓଡିଆ ଭାଷାରେ କୁହାଇ ନଦେବାକୁ ଅପଚେଷ୍ଟା କରିବାର ପରୋକ୍ଷ ଅର୍ଥ ଯେ ମୋର ପରମାରାଧ୍ୟ ଉତ୍କଳମାତା ଓ ଉତ୍କଳ ଭାରତୀଙ୍କ ପ୍ରତି ଉପେକ୍ଷା ଓ ଅସମ୍ମାନ ପ୍ରଦର୍ଶନ ଛଡା ଆଉ କିଛି ନୁହେଁ, ଏହା ବିରୋଧକାରୀ ସଭ୍ୟ ବନ୍ଧୁମାନେ ଶୀତଳ ମସ୍ତିଷ୍କରେ ହୃଦୟଙ୍ଗମ କରିବା ଉଚିତ । (ଆତ୍ମପରିଚିତି)" ବିଶ୍ୱନାଥଙ୍କ ଯୁକ୍ତିରେ ସନ୍ତୁଷ୍ଟ ହୋଇ ଲାଟସାହେବ ତାଙ୍କୁ ଓଡିଆରେ କହିବାକୁ ଅନୁମତି ଦେଇଥିଲେ ଏବଂ ତାଙ୍କର ବଳିଷ୍ଠ ବକ୍ତବ୍ୟ ସମସ୍ତ ସଦସ୍ୟଙ୍କୁ ସ୍ତବ୍ଧ କରିଦେଇଥିଲା ।

ବିଶ୍ୱନାଥ କରଙ୍କ ଆଲୋଚିତ ଋରୋଟି ପରିଚୟ ଭିତରୁ ସୁଦକ୍ଷ ସଂପାଦକ ଭାବରେ ସେ ଯେଉଁ ସିଦ୍ଧି ଓ ଗୌରବର ଅଧିକାରୀ ତାହା କ୍ୱଚିତ ଲୋକଙ୍କ ଭାଗ୍ୟରେ ମିଳିଥାଏ । ଉତ୍କଳ ସାହିତ୍ୟର ସଂପାଦକ ଭାବରେ ସେ ଓଡିଆ ସାହିତ୍ୟର ଯେଉଁ ଉପକାର ସାଧିତ କରିଛନ୍ତି ତାହା ଅସାଧାରଣ ଓ ସ୍ମରଣଯୋଗ୍ୟ । ମାୟାଧର ମାନସିଂହ ବିଶ୍ୱନାଥ କରଙ୍କୁ ଓଡିଶାର ଶ୍ରେଷ୍ଠ ସଂପାଦକ ଭାବରେ ସାଲ୍ୟୁଟ କରି "ଓଡିଆ ସାହିତ୍ୟର ଇତିହାସ" ଗ୍ରନ୍ଥରେ ଯାହା ଉଲ୍ଲେଖ କରିଥିଲେ ତାହା ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖଯୋଗ୍ୟ- "ପ୍ରାୟ ପଋଶବର୍ଷ କାଳ ବିଶ୍ୱନାଥ ଥିଲେ ଓଡିଆ ସାହିତ୍ୟର କେନ୍ଦ୍ରବିନ୍ଦୁ । ତାଙ୍କର 'ଉତ୍କଳ ସାହିତ୍ୟ'ଏପରି ସମ୍ମାନିତ ପତ୍ରିକା ଥିଲା ଓ ତାଙ୍କର ମୂଲ୍ୟବୋଧର ମାନଦଣ୍ଡରେ ଲୋକଙ୍କର ଏପରି ବିଶ୍ୱାସ ଥିଲା ଯେ, କୌଣସି ତରୁଣ ଲେଖକର କବିତାଟିଏ ବା ଗଳ୍ପଟିଏ 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହୋଇପାରିଲେ, କେବଳ ତାହାହିଁ ଧରାଯାଉଥିଲା ମହତ୍ ସାର୍ଟିଫିକେଟ୍ ଓ ସମ୍ମାନ, ଯାହାପାଇଁ ଲାଳାୟିତ ଥିଲେ ବହୁ କିନ୍ତୁ ପାଇଥିଲେ କେବଳ ସେହି ଯିଏ ଥିଲେ ପ୍ରକୃତ ଶକ୍ତିମାନ୍ ।" (ଓଡିଆ ସାହିତ୍ୟର ଇତିହାସ) ।

ବିଶ୍ୱନାଥ କର ଉତ୍କଳ ସାହିତ୍ୟ ପତ୍ରିକା ସଂପାଦନା ପୂର୍ବରୁ ସମ୍ବଲପୁର ହିତୈଷିଣୀ, ଆଶା, ଉତ୍କଳପ୍ରଭା ପ୍ରଭୃତି ପତ୍ରିକାରେ କିଛି ପ୍ରବନ୍ଧ ରଚନା କରିଥିଲେ । ଏହି ସମସ୍ତ ପ୍ରବନ୍ଧ ମଧ୍ୟରୁ କୋଡିଏଟି ପ୍ରବନ୍ଧ ସଂକଳିତ ହୋଇ ୧୮୯୬ରେ 'ବିବିଧପ୍ରବନ୍ଧ' ପୁସ୍ତକଟି କଟକ ରାୟ ପ୍ରେସରେ ମୁଦ୍ରିତ ହୋଇଥିଲା । ଏହି ପୁସ୍ତକର ଭୂମିକା (୧୩/୧୦/ ୧୮୯୬)ରେ ଲେଖକ ସ୍ୱୀକାର କରନ୍ତି - ହୃଦୟ ଆବେଗରେ ନାନା ସମୟରେ ଯେ ସମସ୍ତ ପ୍ରବନ୍ଧ ଲେଖିଥିଲି, ସେଥିରୁ କେତେଗୁଡିଏ ବାଛି ବିବିଧ ପ୍ରବନ୍ଧ ନାମରେ ପ୍ରକାଶ କଲି । ପ୍ରଥମ ପ୍ରବନ୍ଧଟି(ସ୍ୱାଧୀନ ଚିନ୍ତା) ଆଶାରେ ପରବର୍ତ୍ତୀ ପାଞ୍ଚଗୋଟି (ମହାସ୍ରୋତ, ସ୍ୱାଧୀନତା, ରାକ୍ଷସୀଲୀଳା, ସ୍ତ୍ରୀଶିକ୍ଷା ଓ ଅନନ୍ତପ୍ରେମ) ଉତ୍କଳ ପ୍ରଭାରେ ଏବଂ ଅବଶିଷ୍ଟ ଗୁଡିକ ସମ୍ବଲପୁର ହିତୈଷିଣୀରେ ପ୍ରକାଶିତ ହୋଇଥିଲା ।" (ଭୂମିକା) ।

ବିବିଧ ପ୍ରବନ୍ଧ ପ୍ରଥମ ସଂସ୍କରଣରେ କୋଡିଏଟି ପ୍ରବନ୍ଧ ସ୍ଥାନିତ ହୋଇଥିଲା । ଦ୍ୱିତୀୟ ସଂସ୍କରଣ (୧୯୦୭) ପ୍ରକାଶ ସମୟରେ ଲେଖକ କିଛିଟା ଖଣ୍ଡନ ମଣ୍ଡନ କରିଛନ୍ତି ଏବଂ ତାହା ଭୂମିକାରେ ସ୍ୱୀକାର କରିଛନ୍ତି - ଠିକ୍ ୧୧ବର୍ଷ ପରେ ଆଜି ବିବିଧ ପ୍ରବନ୍ଧର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ପୂର୍ବ ସଂସ୍କରଣର ପ୍ରବନ୍ଧାବଳୀ ମଧ୍ୟରୁ ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ଅନ୍ୟ ଗୋଟିଏ ପ୍ରବନ୍ଧର ଅଙ୍ଗୀଭୂତ ହୋଇଅଛି ଏବଂ ଶେଷ ପ୍ରବନ୍ଧ ତିନୋଟି ଏକାବେଳକୁ ଉଠାଇଦିଆଯାଇଅଛି । ଏହିପରି ଋରୋଟି ପ୍ରବନ୍ଧ ପରିବର୍ତ୍ତରେ ଋରୋଟି ନୂତନ ପ୍ରବନ୍ଧ ପୁସ୍ତକର ଶେଷ ଭାଗରେ ସନ୍ନିବେଶିତ ହୋଇଅଛି । ପୁରାତନ ପ୍ରବନ୍ଧ ଗୁଡିକ ଆମୂଳ ସଂଶୋଧନ ପୂର୍ବକ କେତେକ ସ୍ଥଳରେ ପରିବର୍ତ୍ତନାଦି କରି ଦିଆଯାଇଅଛି । (ଦ୍ୱିତୀୟ ସଂସ୍କରଣ ୧୩-୧୦-୧୯୦୭)

ଏହି ସଂସ୍କରଣର ତୃତୀୟ ମୁଦ୍ରଣ ୧୯୧୬ରେ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ପ୍ରକାଶିତ ହୋଇଛି। ଦ୍ୱିତୀୟ ସଂସ୍କରଣ ଓ ତୃତୀୟ ମୁଦ୍ରଣ ମଧ୍ୟରେ କୌଣସି ପରିବର୍ତ୍ତନ ଦୃଷ୍ଟିଗୋଚର ହୁଏନାହିଁ ।

ପ୍ରଥମ ସଂସ୍କରଣ ପରେ ବାଦ ପଡିଥିବା ୪ଟରୋଟି ପ୍ରବନ୍ଧ ସଂପର୍କରେ ଡକ୍ଟର ଶ୍ରୀନିବାସ ମିଶ୍ର 'ବିବଧ ପ୍ରବନ୍ଧ ପ୍ରଥମ ସଂସ୍କରଣରେ ୪ଟରୋଟି ଦୁର୍ଲଭ ପ୍ରବନ୍ଧ' ଶୀର୍ଷକରେ ନିଜ ନିବନ୍ଧ ପୁସ୍ତକ 'ଆଧୁନିକ ଗଦ୍ୟସାହିତ୍ୟ'ରେ ଆଲୋଚନା କରିଛନ୍ତି । ଏହି ଆଲୋଚନାରେ ସେ ପ୍ରବନ୍ଧ ୪ଟରୋଟିର ବିଷୟପ୍ରସ୍ଥ ଉପରେ ଆଲୋଚନା କରିଛନ୍ତି । କିନ୍ତୁ ବିଶ୍ୱନାଥ କରଙ୍କ ସୂଚନା ଗୋଟିଏ ପ୍ରବନ୍ଧ ଅନ୍ୟ ପ୍ରବନ୍ଧର ଅଙ୍ଗୀଭୂତ ହୋଇଥିବା ବିଷୟରେ ଶ୍ରୀଯୁକ୍ତ ମିଶ୍ର ଉଦାସୀନ ରହିଛନ୍ତି । ଫଳରେ ସଂସ୍କରଣଗତ ଭିନ୍ନତାର ପାଠାଲୋଚନା ଖଣ୍ଡିତ ହୋଇଛି । ଅନ୍ୟାନ୍ୟ ଗବେଷକ ଏ ଦିଗରେ ଦୃଷ୍ଟି ଦେଇଥିବାର ଜଣାପଡେ ନାହିଁ । ଡକ୍ଟର ଅର୍ଚ୍ଚନା ନାୟକଙ୍କ ସଂପାଦିତ କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରକାଶିତ 'ନିର୍ବାଚିତ ରଚନାବଳୀ ବିଶ୍ୱନାଥ କର' (୧୯୯୪) ପୁସ୍ତକରେ ଉକ୍ତ ୪ଟରୋଟି ପ୍ରବନ୍ଧ ମଧ୍ୟରୁ କେବଳ ଭାଷାର ଅପବ୍ୟବହାର ପ୍ରବନ୍ଧଟି ସ୍ଥାନିତ ହୋଇଛି। ଲେଖାଟି ସମ୍ବଲପୁର ହିତୈଷିଣୀ ୬.୯.୧୮୯୭ସଂଖ୍ୟାରୁ ଉଦ୍ଧୃତ ହୋଇଥିବାର ସୂଚନା ପ୍ରଦତ୍ତ ହୋଇଛି । ସେ ସଂକଳନରେ ବିବିଧ ପ୍ରବନ୍ଧ (୨ୟ ସଂସ୍କରଣ ବା. ୩ୟ ସଂସ୍କରଣ) ରୁ ବାଲ୍ୟଶିକ୍ଷା ପ୍ରବନ୍ଧଟି ମଧ୍ୟ ସ୍ଥାନିତ ହୋଇଛି । ବାଲ୍ୟ ଶିକ୍ଷା ପ୍ରବନ୍ଧଟି ସମ୍ବଲପୁର ହିତୈଷିଣୀ ୧୦।୫।୧୮୯୩ ରେ ପ୍ରକାଶିତ ଏବଂ ବିବିଧ ପ୍ରବନ୍ଧ ପ୍ରଥମ ସଂସ୍କରଣରେ ସ୍ଥାନିତ । ବିବିଧ ପ୍ରବନ୍ଧ ୨ୟ ସଂସ୍କରଣରେ ବାଲ୍ୟଶିକ୍ଷା ସହିତ ଭାଷାର ଅପବ୍ୟବହାର ଅଙ୍ଗୀଭୂତ ହୋଇଛି । କେବଳ କିଛି ଧାଡିବାଦ ପଡିଛି । ଡକ୍ଟର ଅର୍ଚ୍ଚନା ନାୟକ ମୂଳ ପାଠକୁ ନପଢି ସଂପାଦନା କରିଥିବାରୁ ଭାଷାର ଅପବ୍ୟବହାର ପ୍ରବନ୍ଧଟି ପୁସ୍ତକରେ ପୁନରାବୃତ୍ତି ହୋଇଛି । ଭାଷାର ଅପବ୍ୟବହାର ଶୀର୍ଷକରେ ପୁନଶ୍ଚ ବାଲ୍ୟଶିକ୍ଷା ପ୍ରବନ୍ଧରେ ଅଙ୍ଗୀଭୂତ ହୋଇ ଏହା ଦୁଇଥର ପ୍ରକାଶ ପାଇଛି । ଡକ୍ଟର ନାୟକ ବିବିଧ ପ୍ରସଙ୍ଗର ପ୍ରଥମ ଓ ଦ୍ୱିତୀୟ ସଂସ୍କରଣ ବା ସମ୍ବଲପୁର ହିତୈଷିଣୀର ମୂଳପାଠ ବା ନିଜ ପାଣ୍ଡୁଲିପିକୁ ଧ୍ୟାନର ସହିତ ପଢିଥିଲେ ଏହି ତ୍ରୁଟିକୁ ସୁଧାରି ପାରିଥାନ୍ତେ ।

ଏଣୁ ଡକ୍ଟର ଶ୍ରୀନିବାସ ମିଶ୍ର ବିବିଧ ପ୍ରସଙ୍ଗର ଯେଉଁ ୪ଟରୋଟି ପ୍ରବନ୍ଧ ୨ୟ ସଂସ୍କରଣରେ ବାଦପଡିବା କଥା ସ୍ୱୀକାର କରିଛନ୍ତି ପ୍ରକୃତରେ ତିନୋଟି ପ୍ରବନ୍ଧ ବାଦ ପଡିଛି ଏବଂ ଭାଷାର ଅପବ୍ୟବହାର ପ୍ରବନ୍ଧଟି ବାଲ୍ୟଶିକ୍ଷା ପ୍ରବନ୍ଧ ସହିତ ମିଶିଯାଇଛି । ତେଣୁ ପ୍ରକୃତରେ ବିବିଧ ପ୍ରବନ୍ଧରୁ କଚେରିଆଭାଷା, ଧର୍ମ ଓ ଆମୋଦ ଏବଂ ବିଷମ ସଂକଟ ଦ୍ୱିତୀୟ

ସଂସ୍କରଣରେ ସଂପୂର୍ଣ୍ଣ ରୂପେ ବାଦ ପଡିଛି । ଅନ୍ୟ ପକ୍ଷରେ ଦ୍ୱିତୀୟ ସଂସ୍କରଣରେ ସାହିତ୍ୟ ଓ ଜୀବନ, ରଘୁବଂଶର ଦିଲୀପ, ଜାତୀୟ ଜୀବନରେ ସାହିତ୍ୟର ସ୍ଥାନ ଓ ଭାଷା ଚର୍ଚ୍ଚା ନୂତନ ଭାବରେ ସଂଯୋଜିତ ହୋଇଛି । ଯା ଫଳରେ ପ୍ରଥମ ଓ ଦ୍ୱିତୀୟ ସଂସ୍କରଣର ପ୍ରବନ୍ଧ ସଂଖ୍ୟା କୋଡିଏ ହିଁ ରହିଛି ।

ବାଲ୍ୟଶିକ୍ଷା ପ୍ରବନ୍ଧରେ ଭାଷାର ଅପବ୍ୟବହାର ପ୍ରବନ୍ଧକୁ ଅଙ୍ଗୀଭୂତ କରିବାରେ ବିଶ୍ୱନାଥ କରଙ୍କ ଉଦ୍ଦେଶ୍ୟ ସମ୍ବଲପୁର ହିତୈଷିଣୀ ପତ୍ରିକା ପାଠ କଲେ ସ୍ପଷ୍ଟ ହୁଏ । ବାଲ୍ୟଶିକ୍ଷା ସମ୍ବଲପୁର ହିତୈଷିଣୀ ୧୦.୫.୧୮୯୩ ସଂଖ୍ୟାରେ ପ୍ରକାଶିତ । ଏହି ପ୍ରବନ୍ଧର ଏକ ଦୀର୍ଘ ପ୍ରତିବାଦ ୧୬.୩.୧୮୯୩ ସମ୍ବଲପୁର ହିତୈଷିଣୀର ପ୍ରାପ୍ତପତ୍ର ସ୍ତମ୍ଭରେ ପ୍ରକାଶ ପାଏ । ପ୍ରତିବାଦଟିରେ ଲେଖକ ନାମ ନାହିଁ । ପ୍ରତିବାଦରେ ବିଶ୍ୱନାଥ କରଙ୍କ ଲେଖାଟିକୁ ବାସି ଲେଖା ଓ ବୃଥା ପ୍ରଳାପ ରୂପେ ପ୍ରତିବାଦୀ ଦର୍ଶାଇଛନ୍ତି - "....ଗତମାସ ୧୦ ତାରିଖ ହିତୈଷିଣୀରେ ପ୍ରକାଶିତ ବାବୁ ବିଶ୍ୱନାଥ କରଙ୍କ ବାଲ୍ୟଶିକ୍ଷା ନାମକ ଦୀର୍ଘ ପ୍ରବନ୍ଧଟି ଅନେକ ଥର ପଢିଲୁ ଗୋଲକ ଧନ୍ଦାପରି ବୋଧହେଲା । କିଛି ସାରକଥା ବୁଝିପାରିଲୁନାହିଁ । ବାଲ୍ୟଶିକ୍ଷା କିଛି ନୂତନ ଆବିଷ୍କୃତ ଉପାଦେୟ ନୁହେଁ - ଅନେକ ଦିନର ବାସି । ବାସି ଜିନିଷ କେହି ଛୁଇଁବେ ନାହିଁ । ସେଥିରେ କିଞ୍ଚିତ୍ ସାରାଂଶ ଥିଲେ ସିନା ହୁଅନ୍ତା । ଯେକିଛି ଥିଲା ଆଧୁନିକ ସଭ୍ୟ ସମାଜ ତାହା ଅନେକ ଦିନରୁ ଆସ୍ୱାଦନ କରି ଫିଙ୍ଗି ଦେଇଅଛନ୍ତି । ଏପରି ପଦାର୍ଥ ପୁଣି ସାଉଁଟି ଆଣି ବିପଣୀରେ ସଜାଇବାରେ କିଛିଲାଭନାହିଁ ଯାହାତାହା ରଖି କେହି ବଡ ମହାଜନ ବୋଲାଇବ ନାହିଁ । ବୃଥା ପ୍ରଳାପ, ଲେଖକ ମଣ୍ଡଳୀରେ ଅଗ୍ରଗଣ୍ୟ କରିବା ପାଇଁ କାହାରି ମୁଣ୍ଡରେ ପାଗ ବନ୍ଧାଇ ପାରିବନାହିଁ । ଏଥିରେ ପାଠକ ମାନଙ୍କର କିଲାଭ ହେବ ?...ପ୍ରବନ୍ଧଟି ଏପରି ଅସପୂର୍ଣ୍ଣ ଓ ଅପ୍ରଶସ୍ତ ଜ୍ଞାନରେ ଲିଖିତ ହୋଇଅଛିଯେ ତାହାର ସମାଲୋଚନା ନକରି ରହିପାରିଲୁନାହିଁ ।"

ଅଜ୍ଞାତନାମା ଲେଖକଙ୍କର ଏହି ପ୍ରତିବାଦକୁ ଖଣ୍ଡନ କରି ବିଶ୍ୱନାଥ କର ସମ୍ବଲପୁର ହିତୈଷିଣୀ ୫।୭।୧୮୯୩ ସଂଖ୍ୟାରେ ବାଲ୍ୟଶିକ୍ଷା ସମ୍ବନ୍ଧୀୟ ପ୍ରତିବାଦର ଉତ୍ତର ରଚନା କରନ୍ତି । ଏଥିରେ ନିଜ ମତକୁ ବଳିଷ୍ଠ ଭିତ୍ତିରେ ପ୍ରତିଷ୍ଠା ଦିଅନ୍ତି ବିଶ୍ୱନାଥ । ପୁନଶ୍ଚ ହିତୈଷିଣୀ ୬।୯।୧୮୯୩ରେ ଭାଷାର ଅପବ୍ୟବହାର ପ୍ରବନ୍ଧର ରଚନା କାଳବେଳେ ସେହି ବ୍ୟକ୍ତବ୍ୟକୁ ସ୍ମରଣ କରି ବିଶ୍ୱନାଥ କୁହନ୍ତି "ଏଥି ପୂର୍ବେ ଆମ୍ଭେମାନେ ବାଲ୍ୟଶିକ୍ଷା ପ୍ରବନ୍ଧରେ ଏ ଦେଶୀୟ ଭାଷାର ଅପବ୍ୟବହାର ଉଲ୍ଲେଖ କରିଥିଲୁ । ଅତ୍ୟନ୍ତ ପରିତାପର ବିଷୟ ଯେ ଜଣେ କୃତବିଦ୍ୟ ଯୁବକ ଆପଣାର ଶିକ୍ଷା ଓ ସମ୍ମାନ ପ୍ରତି ଆଦୌ ଦୃଷ୍ଟି ନଦେଇ ଏବଂ ଆମ୍ଭମାନଙ୍କ ଉକ୍ତି ଓ ଉଦ୍ଦେଶ୍ୟର ମର୍ମ ଗ୍ରହଣ କରିବାକୁ ଆଦୌ ଚେଷ୍ଟା ନକରି ତାହାର ପ୍ରତିବାଦରେ ପ୍ରବୃତ୍ତ ହେଲେ ।" ବାଲ୍ୟଶିକ୍ଷାର ବକ୍ତବ୍ୟକୁ ଭାଷାର

ଅପବ୍ୟବହାର ପୂର୍ଣ୍ଣତଃ ସମର୍ଥନ କରୁଥିଲା ଏବଂ ବିସ୍ତାରିତ କରୁଥିଲା । ଏଣୁ ବିଶ୍ୱନାଥ ସଜ୍ଞାନ ଚିତ୍ତରେ ଏହାକୁ ବାଲ୍ୟଶିକ୍ଷାର ଅଙ୍ଗୀଭୂତ କରିଛନ୍ତି ।

ଭାଷାର ଅପବ୍ୟବହାରର ପ୍ରଥମ ପାରା ସହିତ କିଛି ଶବ୍ଦ ୨ୟ ସଂସ୍କରଣ ବିବିଧ ପ୍ରବନ୍ଧରେ ବାଦ ପଡିଛି । ବାଲ୍ୟଶିକ୍ଷାର ନିମ୍ନ ଅଂଶଟି ମଧ୍ୟ ସମ୍ବଲପୁର ହିତୈଷିଣୀ ଓ ବିବିଧ ପ୍ରବନ୍ଧ (୧ମ ସଂ) ରେ ଥିଲା । କିନ୍ତୁ ଦ୍ୱିତୀୟ ସଂସ୍କରଣରେ ବାଦ ପଡିଛି - "ଶିକ୍ଷିତ ହିନ୍ଦୁ ଗୃହରେ କପଟ, ମିଥ୍ୟା ଶିକ୍ଷାର ଆଉ ଗୋଟିଏ ନୂତନ ସୁଗମ ପନ୍ଥା ଆବିଷ୍କୃତ ହୋଇଅଛି । କୁକ୍କୁଟ ମାଂସ ଓ ପାଉଁରୋଟି ବିସ୍କୁଟ ପ୍ରଭୃତି ହିନ୍ଦୁର ଅଖାଦ୍ୟ, କିନ୍ତୁ ସୁଖାଦ୍ୟ ଅତି ଅଳ୍ପ ଅଛି । ଶିକ୍ଷିତ ରସନା ସେ ଲୋଭ ବା ଉପକାର କେତେକେ ଛାଡିପାରେ ? ତାହା ହଜମ କରିବା ପାଇଁ କେତେକ ଆଡିଶନେଲ ରିଫାଇଣ୍ଡ୍ ମିଥ୍ୟା କଥାର ପ୍ରୟୋଜନ । ଦ୍ରବ୍ୟର ପ୍ରଚଳନ ସଂଗେ ସଂଗେ ମିଥ୍ୟାର ଆମଦାନୀ ମଧ୍ୟ ଯଥେଷ୍ଟ ହୋଇଅଛି । ତେବେ ବର୍ତ୍ତମାନ କେତେକ ଦେଶ ହିତୈଷୀ ବିଶୁଦ୍ଧ ହିନ୍ଦୁ ରୀତିରେ କୁକ୍କୁଟ ମାଂସ ରନ୍ଧନ ଓ ରୋଟୀ ବିସ୍କୁଟ ପ୍ରଭୃତି ପ୍ରସ୍ତୁତ କରିବାକୁ ଆରମ୍ଭ କରିଛନ୍ତି । ଏହା ଦେଖି ଆମ୍ଭମାନଙ୍କର ଜଣେ ବିଜ୍ଞ ବନ୍ଧୁ (ହିନ୍ଦୁ) ଅନେକଥର ଆକ୍ଷେପକରି କହିଅଛନ୍ତି 'ଆଉ ହିନ୍ଦୁ ଗୋମାଂସ କେବେ ବାହାରିବ ?' ଇତ୍ୟାଦି କୀର୍ତ୍ତି ବର୍ଣ୍ଣନ କରିବାକୁ ବସିଲେ ପୋଥି ବଢିଯିବ ।"

ଏମିତି ବାଲ୍ୟଶିକ୍ଷାକୁ ସାମାନ୍ୟ ସଂଶୋଧନ କରି ତା ସହିତ ଭାଷାର ଅପବ୍ୟବହାରକୁ ବିଶ୍ୱନାଥ ଯୋଡି ଦେଇଛନ୍ତି ।

ବିଶ୍ୱନାଥଙ୍କର ଅନେକ ପ୍ରବନ୍ଧ ସମ୍ବଲପୁର ହିତୈଷିଣୀରେ ପ୍ରକାଶିତ । ଉତ୍କଳ ସାହିତ୍ୟ (୧୮୯୭) ପ୍ରକାଶ ପର୍ଯ୍ୟନ୍ତ ସେ ଧାରାବାହିକ ସମ୍ବଲପୁର ହିତୈଷିଣୀରେ ଲେଖୁଥିଲେ । ସେ ସମସ୍ତ ପ୍ରବନ୍ଧ ଏ ଯାବତ୍ ସଂକଳିତ ହୋଇପାରିନାହିଁ । ଦୃଷ୍ଟାନ୍ତ ରୂପେ ଶାସ୍ତ୍ର ଓ ସଂସ୍କାର (ସ.ହି ୧୧-୧୨-୧୮୯୫)ସ୍ୱର୍ଗୀୟ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର (ସ.ହି. ୨୫.୧.୧୮୯୩ରୁ ଧାରାବାହିକ) ବନ୍ୟ ପୁଷ୍ପାଞ୍ଜଳି ସମାଲୋଚନା (ସହି ୨୨-୩-୧୮୯୩) ବାଲ୍ୟଶିକ୍ଷା ସମ୍ବନ୍ଧୀୟ ପ୍ରତିବାଦର ଉତ୍ତର (ସ.ହି. ୫.୭.୧୮୯୭) ଉତ୍କଳ ପ୍ରଭାର ଦୁର୍ଦ୍ଦଶା (ସହି ୩୧.୮.୧୮୯୨)ଜାତିଭେଦ ସହି (୧୯.୭.୧୮୯୩) ପ୍ରଭୃତି ପ୍ରବନ୍ଧକୁ ସ୍ମରଣ କରାଯାଇପାରେ । ବିଶ୍ୱନାଥ କରଙ୍କ ଯେଉଁ ଚାରୋଟି ଦୁର୍ଲଭ ପ୍ରବନ୍ଧ ବିବିଧ ପ୍ରବନ୍ଧ ପ୍ରଥମ ସଂସ୍କରଣରେ ଥିଲା କିନ୍ତୁ ୨ୟ ସଂସ୍କରଣରେ ବାଦ ପଡିଲା ସେହି ଚାରୋଟି ପ୍ରବନ୍ଧକୁ ଏଠାରେ ପୁନଃ ପ୍ରକାଶିତ କରାଗଲା । ଭାଷାର ଅପବ୍ୟବହାର ପ୍ରବନ୍ଧଟି ବାଲ୍ୟଶିକ୍ଷା ପ୍ରବନ୍ଧ ସହିତ ଏକୀଭୂତ ହୋଇଥିଲେ ମଧ୍ୟ ସାମଗ୍ରିକ ଭାବେ ପ୍ରବନ୍ଧଟିର ମାଧୁର୍ଯ୍ୟ ଉପଭୋଗ କରିବାପାଇଁ ଏଠାରେ ଉପସ୍ଥାପିତ କରାଗଲା । ପ୍ରବନ୍ଧ ଗୁଡିକର ମୂଳସୂତ୍ର ସମ୍ବଲପୁର ହିତୈଷିଣୀ । ଉକ୍ତ ପତ୍ରିକାର ତା ୨୯.୭.୯୩ ସଂଖ୍ୟାରେ ଧର୍ମ ଓ

ଆମୋଦ ତା ୬.୯.୧୮୯୩ ସଂଖ୍ୟାରେ ଭାଷାର ଅପବ୍ୟବହାର ତା ୧୧.୪.୧୮୯୪ସଂଖ୍ୟାରେ ବିଷମସଂକଟ ଓ ତା ୨୫.୪.୧୮୯୪ ସଂଖ୍ୟାରେ କଚେରିଆ ଭାଷା ପ୍ରକାଶିତ । ସେହି ଚାରୋଟି ପ୍ରବନ୍ଧ ତଳେ ଉଦ୍ଧୃତ ହେଲା । ବିବିଧ ପ୍ରବନ୍ଧରେ ପ୍ରକାଶିତ କ୍ରମ (ଭାଷାର ଅପବ୍ୟବହାର, କଚେରୀଆ ଭାଷା, ଧର୍ମ ଓ ଆମୋଦ, ବିଷମ ସଂକଟ) ଅନୁସାରେ ପ୍ରବନ୍ଧ ଗୁଡିକ ସ୍ଥାନିତ ନକରି ସମ୍ବଲପୁର ହିତୈଷିଣୀରେ ପ୍ରକାଶିତ ସମୟ ଅନୁସାରେ କ୍ରମାନ୍ୱୟରେ ପତ୍ରସ୍ଥ କରାଗଲା ।

## ଧର୍ମ ଓ ଆମୋଦ :

ଆମୋଦପ୍ରମୋଦ ସ୍ପୃହା ମନୁଷ୍ୟମନରେ ସ୍ୱଭାବତଃ ପ୍ରବଳ । ସ୍ପୃହା ଚରିତାର୍ଥ କରିବାପାଇଁ, ଯାତ୍ରା, ତାମାସା, ବାଜି, ଭେଲ୍କି ପ୍ରଭୃତି ଶତସହସ୍ର ଉପାୟ ଉଦ୍ଭାବିତ ହୋଇଅଛି । ଏହି ସ୍ପୃହା ବେଶି ବଳି ପଡିଲେ ମନୁଷ୍ୟ ଅତି ଘୃଣିତ କାର୍ଯ୍ୟମାନ ଅନୁଷ୍ଠାନ କରେ । ପୃଥିବୀର ଅତି ଭୟାନକ ପାପମାନଙ୍କର ମୂଳ ଅଧିକାଂଶ ସ୍ଥଳରେ ଏହି । ଟିକିଏ ଆନନ୍ଦ ପାଇବାର ଆଶାରେ ପ୍ରଥମେ ମନୁଷ୍ୟ ଏ ପଥରେ ପଦାର୍ପଣ କରେ, କିନ୍ତୁ ଅବଶେଷରେ ସେ ଏତେଦୂର ଚାଲିଯାଏ ଯେ, ଆଉ ସହଜରେ ଫେରି ଆସିବା ଅସମ୍ଭବ ହୋଇପଡେ । ଏଥିପାଇଁ ଏକ ଶ୍ରେଣୀର ନୀତିଜ୍ଞବ୍ୟକ୍ତିମାନେ ଆମୋଦ-ପ୍ରମୋଦର ନାମରେ ଖଡ୍ଗହସ୍ତ । ଆମ୍ଭେମାନେ କିନ୍ତୁ ଆମୋଦପ୍ରମୋଦର ସମ୍ପୂର୍ଣ୍ଣ ବିରୋଧୀ ନୋହୁଁ-ବିଧିପ୍ରଦତ୍ତ ସ୍ୱଭାବର ବିପର୍ଯ୍ୟୟ ଘଟାଇବାରେ କାହାରି ଅଧିକାର ନାହିଁ । ବରଂ ଏକଥା ଅତି ସତ୍ୟ ଯେ, ବଳପୂର୍ବକ ନିରୋଧ କଲେ ସମୟରେ ପ୍ରତିକ୍ରିୟା(Reaction) ପ୍ରଭାବରେ ମନୁଷ୍ୟ ଘୋର ସ୍ୱେଚ୍ଛାଚାରୀ ହୋଇ ଉଠେ । ଯେଉଁଠାରେ ବେଶି କଡାକଡି ନିୟମ ଜାରୀ, ସେହିଠାରେ ବେଶି ନିୟମର ବ୍ୟଭିଚାର । ସେକଥା ପ୍ରତିପନ୍ନ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ସୁତରାଂ ସେ ସମ୍ବନ୍ଧରେ ଅଧିକ କଥା କହିବୁ ନାହିଁ । କେବଳ ଏତିକି ବକ୍ତବ୍ୟ ଯେ, ଭଲମନ୍ଦ ଦୁଇଟି ମଧ୍ୟରୁ ମନୁଷ୍ୟ ସାଧାରଣତଃ ମନ୍ଦଟିକୁ ଶୀଘ୍ର ଏବଂ ସହଜରେ ଗ୍ରହଣ କରେ, ଭଲଭାବକୁ ଜୀବନରେ ଗ୍ରହଣ କରି କାର୍ଯ୍ୟରେ ପ୍ରୟୋଗ କରିବା ସାଧନାସାପେକ୍ଷ - ତେଣୁ ପୃଥିବୀରେ ଏତେ ବିଧି, ବ୍ୟବସ୍ଥା ଆଇନକାନୁନ୍ ସତ୍ତ୍ୱେ ପାପ ଏବଂ ଅପରାଧର ସଂଖ୍ୟା ଏତେ ବେଶି । ସୁତରାଂ ଅତି ସାବଧାନ ହୋଇ ଏ ପଥରେ ପଦାର୍ପଣ କରିବା ଆବଶ୍ୟକ ଯହିଁରେ ବିନ୍ଦୁମାତ୍ର ଅପବିତ୍ରତାର ସଂସ୍ପର୍ଶ ଅଛି ବୁଦ୍ଧିମାନ୍ ମନୁଷ୍ୟମାତ୍ରକେ ତାହା ବିଷବତ୍ ପରିତ୍ୟାଗ କରିବେ । ସକଳ ବିଷୟରେ ଗୋଟିଏ ଲେଖାଏଁ ସୀମା ଅଛି । ସେହି ସୀମା ଅତିକ୍ରମ କଲେ ମନୁଷ୍ୟ ପଦେ ପଦେ ବିଡମ୍ବିତ ହୁଏ । ସ୍ୱଭାବର ଅନୁସରଣ କର, ଭୋଗ୍ୟବସ୍ତୁମାନ ତୁମ୍ଭ ନିମିତ୍ତ ସୃଷ୍ଟି ହୋଇଅଛି, ସୁଖରେ ଉପଭୋଗ କର, କିନ୍ତୁ ସାବଧାନ । ସୀମା ଲଂଘନ କରନା, ଏହାହିଁ ଆବାଳବୃଦ୍ଧବନିତା

ସମସ୍ତଙ୍କ ପ୍ରତି ଆଦେଶ । କେବଳ ସୁଖ ଭୋଗ- କେବଳ ଆମୋଦପ୍ରମୋଦକୁ ଯେ ଜୀବନର ଲକ୍ଷ୍ୟ ବୋଲି ମନେ କରେ ସେ ନିତାନ୍ତ କୃପାପାତ୍ର ।

ଧର୍ମ ମନୁଷ୍ୟ ଜୀବନର ଶ୍ରେଷ୍ଠବସ୍ତୁ । ପୃଥିବୀରେ ଅନେକ ପ୍ରକାର ଆନନ୍ଦ ଅଛି; କିନ୍ତୁ ଧର୍ମର ପବିତ୍ର ଆନନ୍ଦ ସଙ୍ଗେ କେଉଁ ଆନନ୍ଦ ତୁଳନୀୟ ? ସେ ଆନନ୍ଦ ଉପଭୋଗ କରିବାର ଶକ୍ତି କମିଗଲେ ମନୁଷ୍ୟ ନାନାପ୍ରକାର ଅସାର ଆନନ୍ଦ ଖୋଜିବୁଲେ । ବିଶ୍ୱାସ ଭକ୍ତିର ଅଭାବରେ ମନୁଷ୍ୟ କିପରି ଧର୍ମର ଆନନ୍ଦ ସମ୍ଭୋଗ କରିପାରିବ ? ଜନସମାଜର ବିକୃତ ଅବସ୍ଥାରେ ଧର୍ମୋତ୍ସବ ସଙ୍ଗେ ନାନାପ୍ରକାର ବାହ୍ୟ ଆମୋଦପ୍ରମୋଦ ସଂଶ୍ଲିଷ୍ଟ ହୁଏ । ଯେତେବେଳେ ଦେଖାଯାଏ ଯେ ମନୁଷ୍ୟର ମତି ସହଜରେ ଧର୍ମଆଡକୁ ଯାଉନାହିଁ ସେତେବେଳେ ନାନାପ୍ରକାର କୃତ୍ରିମ ଉପାୟର ପ୍ରୟୋଜନ ହୋଇଥାଏ । ଏହା ଅତି ଚତୁର ବ୍ୟକ୍ତିର କାର୍ଯ୍ୟ । ଅତି ଚତୁରତାର ଫଳ ଯେପରି ସର୍ବତ୍ର ହୋଇଥାଏ ଏ ବିଷୟରେ ମଧ୍ୟ ସେହିପରି ହୋଇଅଛି । ଧର୍ମୋତ୍ସବମାନଙ୍କରେ ମନୁଷ୍ୟ ପ୍ରକୃତ ଲକ୍ଷ୍ୟ ହରାଇ କେବଳ ବାହ୍ୟ ବ୍ୟାପାରକୁ ସାର କରି ଧରିଅଛି- ଧର୍ମର ନାମରେ ନାନା ଅବାଚ୍ୟ ଅଶ୍ରାବ୍ୟ ବ୍ୟାପାରମାନ ଅଭିନୀତ ହେଉଅଛି- ଅଥଚ ନିର୍ବିବାଦରେ ସମାଜପତି ଦଳପତିମାନେ ସେ ସମସ୍ତ ପ୍ରଶ୍ରୟ ଦେଉଅଛନ୍ତି । ମୁସଲମାନମାନଙ୍କର ପ୍ରଧାନ ଧର୍ମୋତ୍ସବ ମହରମରେ କିପରି ବିଭତ୍ସକାଣ୍ଡ ମାନ ଅଭିନୀତ ହୁଏ, ତାହା କିଏ ପ୍ରତ୍ୟକ୍ଷ କରି ନାହିଁ । ଖ୍ରୀଷ୍ଟିଆନ୍‌ମାନଙ୍କ ଧର୍ମୋତ୍ସବରେ ପ୍ରକାଶ୍ୟ ଆମୋଦ ପ୍ରମୋଦ କିଛି କମ ଥିଲା, କିନ୍ତୁ ଦିନକୁଦିନ ପ୍ରବଳ ହେବାର ଦେଖାଯାଉଅଛି । ପବିତ୍ର ଦିବସର ପବିତ୍ରତା ଓ ଗାମ୍ଭୀର୍ଯ୍ୟ ନଷ୍ଟ ହେଲେ ଏହା ନରକର ପଥ ପରିଷ୍କାର କରିଦିଏ । ଧର୍ମ ସଙ୍ଗେ ଆମୋଦ ପ୍ରମୋଦ ମିଶ୍ରିତ ହେବା ବଡ ଭୟଙ୍କର କଥା ।

ହିନ୍ଦୁସମାଜର ଧର୍ମୋତ୍ସବର କଥା ଆମ୍ଭମାନଙ୍କର ଏ ପ୍ରବନ୍ଧରେ ବିଶେଷ ଆଲୋଚ୍ୟ । ଧର୍ମୋତ୍ସବର ଅପବ୍ୟବହାର ଏ ସମାଜରେ ଯେପରି ହୋଇଅଛି, ଏପରି ଅନ୍ୟତ୍ର ନାହିଁ । ବ୍ରତ, ନିୟମ, ନିଷ୍ଠାର କଠୋର ବିଧି ହିନ୍ଦୁସମାଜରେ ଯେପରି ଅଛି, ସେପରି ଆଉ କେଉଁଠାରେ ଅଛି ? କିନ୍ତୁ ସେ ସମସ୍ତ ବିଧି ସମସ୍ତ କ୍ରିୟାକଳାପ ଜୀବନ ଶୂନ୍ୟ ହୋଇ ପଡିଅଛି-ଯାହାକିଛି ଆସ୍ଥା ଦେଖାଯାଏ, ସେ କେବଳ ସ୍ତ୍ରୀଜାତି ମଧ୍ୟରେ; କ୍ୱଚିତ ଅଶିକ୍ଷିତ ପୁରୁଷମାନଙ୍କ ମଧ୍ୟରେ, ଅନ୍ୟତ୍ର ଧର୍ମୋତ୍ସବମାନ କେବଳ ଆମୋଦପ୍ରମୋଦର ଲୀଳାସ୍ଥଳ । ଦୁର୍ଗୋତ୍ସବ ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନପର୍ବ-କିପରିଭାବରେ ଏହା ପାଳିତ ହେଉଅଛି, ତାହା ବିଶେଷଭାବରେ ବର୍ଣ୍ଣନା କରିବାର ପ୍ରୟୋଜନ ନାହିଁ, ମଜଲିସ୍ ଦୁର୍ଗୋତ୍ସବର ପ୍ରଧାନ ଅଙ୍ଗ- ଦୁର୍ଗାପୂଜା, ମଜଲିସ ହୋଇନାହିଁ; ତେବେ ସେ ବି ଦୁର୍ଗୋତ୍ସବ ? ବଡ ଲଜ୍ଜାର କଥା । ସମ୍ବାଦପତ୍ରମାନଙ୍କରେ ଆଲୋଚନା ହୁଏ, କେବଳ ମଜଲିସର କଥା- ଆମୋଦପ୍ରମୋଦର କଥା । ପୁଣି ବେଶ୍ୟା ଶୁଭାଗମନ ଛଡା ଆଜିକାଲି ମଜଲିସ୍ ମଜଲିସ୍

ନାମର ଯୋଗ୍ୟ ନୁହେଁ -ଯେ ଯେତେ ଧନୀ ତାହାର ତେତେ ବେଶି-ତାହା ନ ହେଲେ ଧନର ସାର୍ଥକତା କେଉଁଠାରେ ? ଅନ୍ୟାନ୍ୟ ଯାତ୍ରା ତାମସା କଥା କିଏ ପଗ୍ଭରେ ? ଏଥି ଉପରେ ପୁଣି ବିଭତ୍ସ ପାର୍ବଣଗାନ- ମାନ୍ୟାମାନ୍ୟ ଜ୍ଞାନ ଏକାବେଳେକେ ଉଠି ଯାଇଅଛି - ମନୁଷ୍ୟର ବିକୃତ କଳ୍ପନା ଯେତେଦୂର ଉଡିପାରେ ତା ଉପରେ କୌଣସି ବିଧି ନିଷେଧ ନାହିଁ; ସ୍ଥାନାସ୍ଥାନ ପାତ୍ରାପାତ୍ର କିଛି ବାରଣ ନାହିଁ ।

ସମ୍ମୁଖରେ ଦୋଳତ୍ସବ- ବସନ୍ତର ଆନନ୍ଦରେ ବିଭୁନାମ କୀର୍ତ୍ତନ ପରିବର୍ତ୍ତରେ ଏକି ବ୍ୟାପାର ? ଏ ନଗରୀରେ ଆମ୍ଭେମାନେ ଦେଖୁଅଛୁ, କେବଳ ରଙ୍ଗରସ । କେବଳ କୁତ୍ସିତ ଆମୋଦ । କେବଳ ଅଭଦ୍ର ବ୍ୟବହାର । ସେ ଅଶ୍ରାବ୍ୟ ଗାନ । ଯେଉଁଠାରେ ବେଶ୍ୟା ବା କୌଣସି ଦୁଷ୍ଚରିତ୍ରା ସ୍ତ୍ରୀଲୋକର ଗୃହ, ସେହିଠାରେ ଅବିରଖେଳର ଚରମସୀମା । ଧର୍ମ ସଙ୍ଗେ ଆମୋଦପ୍ରମୋଦର ସମିଶ୍ରଣର ଫଳ ଏହିପରି ହୋଇଥାଏ । ଏହି ସମସ୍ତ କୁତ୍ସିତ ବ୍ୟାପାର ବିରୁଦ୍ଧରେ କଥା କହିଲେ, ଧର୍ମପ୍ରତି ଆକ୍ରମଣ କରିବାର ହେବ । ଏକ ସମୟରେ ଆମ୍ଭେମାନେ ଚନ୍ଦନଯାତ୍ରାରେ ବେଶ୍ୟାନାଚର ଦୋଷ ଦେଖାଇ କୌଣସି ପତ୍ରିକାକୁ ଖଣ୍ଡିଏ ପତ୍ର ଲେଖିଲୁଁ ବୋଲି ବିଜ୍ଞ ସମ୍ପାଦକ ମହାଶୟ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ଅପରାଧୀ ସାବ୍ୟସ୍ତ କରିଦେଲେ । ଆମ୍ଭେମାନେ ବିନୀତ ଭାବରେ କହୁଁଅଛୁଁ ଧର୍ମ ବା ସମ୍ପ୍ରଦାୟ ବିଶେଷକୁ ଆକ୍ରମଣ କରିବା ଆମ୍ଭର ଉଦ୍ଦେଶ୍ୟ ନୁହେଁ । ସେପରି କାର୍ଯ୍ୟକୁ ଆମ୍ଭେମାନେ ଅନ୍ତରର ସହିତ ଘୃଣା କରୁଁ । ଆଜିକାଲି ଏ ଉଦାରତାର ଯୁଗରେ କେଉଁଟି ଆକ୍ରମଣ କେଉଁଟି ଆକ୍ରମଣ ନୁହେଁ ତାହା ନିର୍ଣ୍ଣୟ କରିବା ସୁକଠିନ । ଯାହା ଅସତ୍ୟ ଯାହା ଅନ୍ୟାୟ ଓ ଅପବିତ୍ର ତାହା ଦେଖାଇ ଦେବା କି ଧର୍ମାକ୍ରମଣ ନାମରେ ଅଭିହିତ ହେବ ? ସେ ଯାହା ହେଉ, ଧର୍ମର ପବିତ୍ର ନାମରେ ଏ କଳଙ୍କ ଅସହ୍ୟ ବୋଧ ହେଉଅଛି - ତେଣୁ ଆମ୍ଭେମାନେ ବାରମ୍ବାର ଅଯଥା ତିରସ୍କୃତ ହୋଇ ସୁଦ୍ଧା ଏପରି କାର୍ଯ୍ୟରେ ପ୍ରବୃତ୍ତ ହେଉଅଛୁଁ । ଏହି ସମସ୍ତ ଏବଂ ଆହୁରି ଅନେକ କୁତ୍ସିତବ୍ୟାପାର ହୁଏନାହିଁ; ଏକଥା କି କେହି କହିପାରେ ? ଅଥବା ଧର୍ମ ସଙ୍ଗେ ଏହି ସମସ୍ତ ବ୍ୟାପାରର କିଛି ସଂପର୍କ ଅଛି ଏହା କି କେହି ସପ୍ରମାଣ କରିପାରେ ? ତେବେ କେଉଁ ଯୁକ୍ତି ବଳରେ ଆମ୍ଭେମାନେ ଧର୍ମାକ୍ରମଣ ଅପରାଧରେ ଅପରାଧୀ ହେବୁ ଜୋର କରି କହିଲେ ନାଗ୍ଭର ।

ବ୍ୟକ୍ତିଗତ ଜୀବନରେ ବା ସମାଜରେ ଦୋଷ ଦୁର୍ବଳତା ନଥିବ ଏହା କିଏ କହିପାରେ ? ଯେଉଁ ବ୍ୟକ୍ତି ବା ସମାଜ ନିଜ ଦୋଷ ଅନୁସନ୍ଧାନ କରିବାକୁ ଯତ୍ନବାନ୍ ହୁଏ, ସେହି ପ୍ରକୃତ ଜୀବିତ- ସେହି ଏକା ଉନ୍ନତିର ଅଧିକାରୀ । ଆହୁରି ଯେ ସର୍ବଦା ନିଜର ଦୋଷ ସଂଶୋଧନରେ ତତ୍ପର, ଅପର ବ୍ୟକ୍ତି ତାହାର ଦୋଷ ପ୍ରଦର୍ଶନରେ ଅବସର ସୁଦ୍ଧା ପାଏନାହିଁ । ଅନ୍ଧ ଆତ୍ମପ୍ରଶଂସା ଅବନତିର ସୋପାନ ମୃତ୍ୟୁର ପୂର୍ବଲକ୍ଷଣ । ସମାଜର ପ୍ରକୃତ ବନ୍ଧୁ କିଏ ? ଯେଉଁ ବ୍ୟକ୍ତି ସମାଜର ସମସ୍ତ ଦୋଷ ଘୋଡାଇ ରଖି କେବଳ

ଗୁଣକୀର୍ତ୍ତନ କରେ ସେ କଦାଚ ପ୍ରକୃତ ବନ୍ଧୁ ବା ହିତୈଷୀ ହୋଇ ନପାରେ । ଯେ ରୋଗ ନିର୍ଣ୍ଣୟ କରେ ଏବଂ ଚିକିତ୍ସାର ବ୍ୟବସ୍ଥା କରେ ସେହି ବନ୍ଧୁକୁ ଯେ ଶତ୍ରୁ ଭାବେ, ସେ ନିତାନ୍ତ ବିକାରଗ୍ରସ୍ତ । ହିନ୍ଦୁସମାଜରୁ ଯେତେବେଳେ ଏହି ସବୁ ଘୃଣିତ ଆଚାରର ବ୍ୟବହାରର ତୀବ୍ର ପ୍ରତିବାଦ ଏବଂ ପ୍ରତିକାରର ଚେଷ୍ଟା ହେବ, ତେତେବେଳେ ପ୍ରକୃତ ଜୀବନ ସଞ୍ଚାର ହେଲା ବୋଲି ମନେ କରିବାକୁ ହେବ । ଆମ୍ଭେମାନେ ଜାଣୁ ହିନ୍ଦୁସମାଜ ମଧ୍ୟରେ ଅନେକ ସଦାଶୟ ବ୍ୟକ୍ତି ଅଛନ୍ତି ଯେଉଁମାନେ ଏହାକୁ ଅନ୍ତରର ସହିତ ଘୃଣା କରନ୍ତି-କିନ୍ତୁ ସେମାନେ ନୀରବ । ସେମାନଙ୍କର ଏ କଥା ସ୍ମରଣ ରଖିବା ଉଚିତ ଯେ ଏହା ବନ୍ଧୁର ଉଚିତ କାର୍ଯ୍ୟ ନୁହେଁ । ଧର୍ମର ମହତ୍ତ୍ୱ ରକ୍ଷା କରିବାକୁ ଯେବେ ଇଚ୍ଛା ଥାଏ ତେବେ ଏହି କଳଙ୍କ ଯଦ୍ଦ୍ୱାରା କ୍ଷାଳିତ-ହେବ, ଶୀଘ୍ର ତାହାର ଉପାୟ ବିଧାନ କର, ନତୁବା ଧର୍ମ ସଙ୍ଗେ ସଙ୍ଗେ, ସମାଜର ସର୍ବବିଧ ଉନ୍ନତିର ଆଶା ଉନ୍ମୂଳିତ ହେବ । ଏକଥା ସ୍ୱୀକାର କରୁଥିବା ମନୁଷ୍ୟ ସ୍ୱଭାବତଃ ଆମୋଦପ୍ରୟାସୀ-ଆମୋଦପ୍ରମୋଦ ବିନା ସମାଜ କେବଳ କଠୋର ନୀତି ଓ କର୍ତ୍ତବ୍ୟରେ ଅନୁଗତ ହୋଇ ଦିନ କଟାଇ ନପାରେ- ସେଥିପାଇଁ ବିଶୁଦ୍ଧ ପନ୍ଥା ଉଦ୍‌ଘାଟନ କର, ପବିତ୍ରତା ରକ୍ଷା କରି ଯଦ୍ଦ୍ୱାରା ଆନନ୍ଦ ଉପଭୋଗ କରାଯାଇପାରେ ଏପରି ଉପାୟ ମାନ ସ୍ଥିର କର । କିନ୍ତୁ ଧର୍ମକୁ ଆଉ କ୍ରୀଡାସାମଗ୍ରୀ ତୁଲ୍ୟ ବ୍ୟବହାର କରନା । ଧର୍ମ ବଡ ବିଷମପଦାର୍ଥ, ଯେ ତାହା ସଙ୍ଗେ କ୍ରୀଡା ଆରମ୍ଭ କରେ, ସେ ତାହାର ଉପଯୁକ୍ତ ଶାସ୍ତି ନିଶ୍ଚୟ ବିଧାନ କରିବ ।

## ଭାଷାର ଅପବ୍ୟବହାର :

ଏଥିପୂର୍ବେ ଆମ୍ଭେମାନେ "ବାଲ୍ୟଶିକ୍ଷା" ପ୍ରବନ୍ଧରେ ଏ ଦେଶୀୟ ଭାଷାର ଅପବ୍ୟବହାର ଉଲ୍ଲେଖ କରିଥିଲୁ । ଅତ୍ୟନ୍ତ ପରିତାପର ବିଷୟ ଯେ, ଜଣେ କୃତବିଦ୍ୟ ଯୁବକ ଆପଣାର ଶିକ୍ଷା ଓ ସମ୍ମାନ ପ୍ରତି ଆଦୌ ଦୃଷ୍ଟି ନଦେଇ ଏବଂ ଆମ୍ଭମାନଙ୍କ ଉକ୍ତି ଓ ଉଦ୍ଦେଶ୍ୟର ମର୍ମ ଗ୍ରହଣ କରିବାକୁ ଆଦୌ ଚେଷ୍ଟା ନକରି ତାହାର ପ୍ରତିବାଦରେ ପ୍ରବୃତ୍ତ ହେଲେ । ଯେଉଁମାନେ ଦେଶର ଆଶା ଭରସା । ମାତୃଭୂମି ଓ ମାତୃଭାଷାର ଉନ୍ନତି ଯେଉଁମାନଙ୍କ ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭର କରୁଅଛି, ସେମାନଙ୍କ ମୁଖରୁ ଉକ୍ତବିଧ ଅସାରଯୁକ୍ତି ଶୁଣିଲେ ଲଜ୍ଜାରେ ଓ କ୍ଷୋଭରେ ମସ୍ତକ ଅବନତ ହୋଇଯାଏ । ଭାଷା ଓ ଭାବ ଏକତ୍ର ଅବସ୍ଥାନ କରନ୍ତି- ପ୍ରତ୍ୟେକ କଥା କହିବା ବେଳେ ବା ଶୁଣିବା ବେଳେ ଅବଶ୍ୟ ଆମ୍ଭମାନଙ୍କ ମନରେ ଗୋଟିଏ ଭାବ ଜାତ ହୁଏ । ବାରମ୍ବାର ଆବୃତ୍ତି ଦ୍ୱାରା ସେହିଭାବ ମନରେ ଦୃଢ ରୂପେ ମୁଦ୍ରିତ ହୁଏ । ଏହିପରି ଅପରିଣତାବସ୍ଥାରେ ନାନାପ୍ରକାର କଦର୍ଯ୍ୟ କଥା ଶୁଣିଲେ ବା ଉଚ୍ଚାରଣ କଲେ ମନ କଳୁଷିତ ହୁଏ । କୁଭାବମାନ ମନର ସମକ୍ଷରେ ଉପସ୍ଥିତ ହୋଇ ତାହାକୁ ବିକାରଗ୍ରସ୍ତ କରେ । ଦୃଷ୍ଟାନ୍ତଦ୍ୱାରା ବୁଝାଇବାର

ଉପାୟ ନାହିଁ । ସର୍ବତ୍ର ବ୍ୟବହୃତ କଦର୍ଯ୍ୟ କଥାମାନଙ୍କରୁ ଗୋଟିଏ ଧରି ବିଚାର କଲେ, ଆମ୍ଭମାନଙ୍କ ଉକ୍ତିର ସାରବତ୍ତା ସହଜରେ ଉପଲବ୍ଧ ହେବ ।

ସେ କଥା ଥାଉ ମନୁଷ୍ୟ ଲୁଗା ପିନ୍ଧେ କାହିଁକି ? ସ୍ୱାଭାବିକ ଲଜ୍ଜାଶୀଳତା ମନୁଷ୍ୟ ଜୀବନର ଗୋଟିଏ ଶ୍ରେଷ୍ଠଭୂଷଣ । ଯାହାର ଲଜ୍ଜା ନାହିଁ, ସେ ସର୍ବଥା ଅବଜ୍ଞାର ପାତ୍ର । ପ୍ରକୃତିସ୍ଥ ମନୁଷ୍ୟ କାହାରି କୌଣସି ଲଜ୍ଜାଶୂନ୍ୟ ଆଚରଣ ଦେଖିଲେ ଦ୍ୱିତୀୟବାର ତେଣିକି ମୁହଁ ଟେକି ଅନାଇ ପାରନ୍ତି ନାହିଁ । କିନ୍ତୁ ମନୁଷ୍ୟ ପ୍ରକୃତିର ଗୋଟିଏ ନିୟମ ଏହି ଯେ, କୌଣସି ବିଷୟ ଯେତେ ଅରୁଚିକର ହେଉ ପଛକେ ବାରମ୍ବାର ନିକଟସ୍ଥ ହେଲେ ତାହା ଅନେକ ପରିମାଣରେ ସହିଯାଏ । ଉକ୍ତ କାର୍ଯ୍ୟପ୍ରତି ହୃଦୟର ସ୍ୱାଭାବିକ ଘୃଣା ଆଉ ରହେ ନାହିଁ । ଏକ ସମୟରେ ମନୁଷ୍ୟ ବନପଶୁତୁଲ୍ୟ ନଗ୍ନାବସ୍ଥାରେ କାଳ କଟାଉଥିଲା । କ୍ରମେ ଜ୍ଞାନ ଓ ସଭ୍ୟତା ବୃଦ୍ଧିସହକାରେ ଲଜ୍ଜା ସମ୍ଭ୍ରମ ପ୍ରଭୃତି ମନୁଷ୍ୟୋଚିତ ଭାବଗୁଡ଼ିକ ପରିସ୍ଫୁଟ ହେଲା । ଖ୍ରୀଷ୍ଟିୟାନ ଧର୍ମଶାସ୍ତ୍ର ବାଇବେଲ କହେ ଆଦି ନରନାରୀ ଆଦମ ଓ ହବା ନିଷିଦ୍ଧ ଜ୍ଞାନବୃକ୍ଷର ଫଳ ଭକ୍ଷଣ କରି ସମସ୍ତ ମାନବଜାତିକୁ ଶାପଗ୍ରସ୍ତ କଲେ । ସେହି ଦିନୁ ମନୁଷ୍ୟସନ୍ତାନର ଅଧଃପତନ ହେଲା । ଆମ୍ଭେମାନେ କହୁଁ; ସେହିଦିନୁ ମନୁଷ୍ୟଜାତିର ଉନ୍ନତିର ସୂତ୍ରପାତ ହେଲା । ତଦ୍‌ଭାବରେ ମନୁଷ୍ୟ ଆଜି ପର୍ଯ୍ୟନ୍ତ ବନ୍ୟପଶୁ ମାତ୍ର ଥାଆନ୍ତା । ଏହି ଲଜ୍ଜା ମନୁଷ୍ୟକୁ ବସ୍ତ୍ର ପିନ୍ଧାଇ ଅଛି । ଯେଉଁ ସମାଜରେ ଯେତେ ସଭ୍ୟତାର ବିକାଶ, ସେ ସମାଜରେ ତେତେ ଅଧିକ ବସ୍ତ୍ରର କାରବାର । ଇଉରୋପୀୟ ସମାଜରେ ସର୍ବାଙ୍ଗ ସୁନ୍ଦରରୂପେ ଆବୃତ ନ କରି କାହାରି ନିକଟରେ ଉପସ୍ଥିତ ହେବା ଘୋର ବର୍ବରତା । କିନ୍ତୁ ଆମ୍ଭେମାନେ ଅର୍ଦ୍ଧନଗ୍ନାବସ୍ଥାରେ ଯଥାତଥା ନିର୍ବିବାଦରେ ବିଚରଣ କରୁଁ । ଏହି କେତେକ ବର୍ଷ ମଧ୍ୟରେ ଇଂରାଜୀ ଶିକ୍ଷିତ ମଣ୍ଡଳୀ ମଧ୍ୟରେ ଏ ବିଷୟରେ ମଧ୍ୟ ଅନେକ ପରିବର୍ତ୍ତନ ସଂଘଟିତ ହୋଇଅଛି । ଅବଶ୍ୟ ଆମ୍ଭମାନଙ୍କ ସମାଜ ସର୍ବାଂଶରେ ଇଉରୋପୀୟ ସମାଜ ହୋଇଯିବ ନାହିଁ ଏବଂ ତାହା ହେବା ବାଞ୍ଛନୀୟ ମଧ୍ୟ ନୁହେଁ । କିନ୍ତୁ ପୂର୍ବାବସ୍ଥାରେ ପରିବର୍ତ୍ତନ ଏକାନ୍ତ ବାଞ୍ଛନୀୟ । ଏ ସମ୍ବନ୍ଧରେ ବିସ୍ତୃତ ଆଲୋଚନାର ସ୍ଥଳ ଏ ନୁହେଁ । ଲଜ୍ଜାସମ୍ଭ୍ରମ ରକ୍ଷା ନିମିତ୍ତ ଯେପରି ବସ୍ତ୍ର ବ୍ୟବହାରର ପ୍ରୟୋଜନ ଭାଷାର ମଧ୍ୟ ସେହିପରି ସଦ୍‌ବ୍ୟବହାର ପ୍ରୟୋଜନ । ଭାଷା ମଧ୍ୟରେ 'କୁ' 'ସୁ' ସକଳପ୍ରକାର ବ୍ୟବହାର୍ଯ୍ୟ ବିଷୟର ଶବ୍ଦ ଅବଶ୍ୟ ରହିବ, କିନ୍ତୁ ତାହା ବୋଲି ସକଳପ୍ରକାର କଥାର ଯଥେଚ୍ଛା ବ୍ୟବହାର କି ସୁସଙ୍ଗତ ? ପୁଣି ଏକାର୍ଥବୋଧକ ଦୁଇ କିମ୍ବା ତତୋଽଧିକ ଶବ୍ଦ ମଧ୍ୟରେ ବ୍ୟବହାରଗୁଣରେ ସମାଜ ମଧ୍ୟରେ କେଉଁଟି ମାର୍ଜନୀୟ କେଉଁଟି ବା ଦୂଷଣୀୟ ହୋଇଅଛି । ଏଥିପ୍ରତି **ଦୃଷ୍ଟି** ନ ରଖି କେବଳ ଏକାର୍ଥବୋଧକ ଗୋଟିଏ ଶବ୍ଦ ସ୍ଥାନରେ ଅପରଟି ବ୍ୟବହାର **କରିବା** ସମ୍ପୂର୍ଣ୍ଣରୂପେ ଅଯୌକ୍ତିକ । ଅସାଧୁପ୍ରୟୋଗ ସର୍ବଥା ପରିହାର୍ଯ୍ୟ । ସମାଜ ମଧ୍ୟରେ ଏହି ପ୍ରକାର ଅସାଧୁ ପ୍ରୟୋଗର ବାହୁଲ୍ୟ ଘୋର ନିନ୍ଦାର କଥା । ଏଥିରେ ପୁଣି **ଅସ୍ଥାନ-ପ୍ରୟୋଗ** ଦୋଷ ଅଛି ।

ଏ ଦିଓଟି ଦୋଷ ଆମ୍ଭମାନଙ୍କ ସମାଜରେ ପୂର୍ଣ୍ଣମାତ୍ରାରେ ରହିଅଛି । ପାତ୍ରାପାତ୍ର, କାଳାକାଳଜ୍ଞାନଶୂନ୍ୟ ହୋଇ ଆମ୍ଭମାନଙ୍କ ଦେଶରେ ଲୋକ ଭାଷାର ଯେପରି ଅପବ୍ୟବହାର କରିଅଛନ୍ତି ଓ ବର୍ତ୍ତମାନ ମଧ୍ୟ କରୁଅଛନ୍ତି, ତାହା କାହାରି ଅବିଦିତ ନାହିଁ । ଭାଇ ଭାଇକି ପିତାପୁତ୍ରକୁ ଯେପରି ଅପକଥାରେ ଗାଳି ଦିଅନ୍ତି ଏବଂ ଯେପରି ସର୍ବସମକ୍ଷରେ ଲୋକେ ଅପକଥା ବ୍ୟବହାର କରନ୍ତି, ତାହା ସମାଜପକ୍ଷରେ ଘୋର କଳଙ୍କର କଥା, ସନ୍ଦେହ ନାହିଁ ।

ସୁଖର ବିଷୟ ଶିକ୍ଷିତ ଓ ଅଶିକ୍ଷିତ ମଧ୍ୟରେ ଏ ବିଷୟରେ ଅନେକ ପ୍ରଭେଦ ଦେଖାଯାଏ, ପୁଣି ଶିକ୍ଷିତ ବୃଦ୍ଧ ଓ ଶିକ୍ଷିତ ଯୁବକ ମଧ୍ୟରେ ସୁଦ୍ଧା ପ୍ରଭେଦ ଦୃଷ୍ଟ ହୁଏ । ଏଥିରୁ ସୁସ୍ପଷ୍ଟ ବୋଧ ହେଉଅଛି, ଶିକ୍ଷିତ ରସନା କ୍ରମେ ସଂଯତ ହୋଇ ଆସୁଅଛି ।

ଆମ୍ଭମାନଙ୍କର ଭାଷାକୁ କୁତ୍ସିତଭାଷାର ଖଣି କହିଲେ ଚଳେ । କଳ୍ପନାପ୍ରିୟ ଜାତି ଯେଉଁ ଆଡକୁ ଯେତେବେଳେ ଦୃଷ୍ଟି ଦେଇଅଛନ୍ତି, ସେ ଆଡେ କିଛି ନୂତନ ଭାବ ଓ ଭାଷା ଉତ୍ପନ୍ନ ହୋଇଅଛି । ଏକ ଆଡେ ଉତ୍କୃଷ୍ଟ ଭାବର ପରାକାଷ୍ଠା, ଅନ୍ୟ ଆଡେ ଅପକୃଷ୍ଟ ଭାବର କିଛି ବାକି ନାହିଁ । ଏକ ଏକ ଭାବ ବିଭିନ୍ନ ମହାପୁରୁଷଙ୍କ ହସ୍ତରେ ବିଭିନ୍ନ ରୂପ ଧାରଣ କରି ଜନସାଧାରଣଙ୍କ ସମ୍ମୁଖରେ ଆସି ଉପସ୍ଥିତ ହୋଇଅଛି । କ୍ରମେ ଶାଖାପ୍ରଶାଖା ବିସ୍ତାରିତ ହୋଇ ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଅଛି । ନୀଚ ପ୍ରବୃତ୍ତିଘଟିତ ବ୍ୟାପାରମାନ ଯେପରି ଏ ଦେଶୀୟ କବିମାନଙ୍କଦ୍ୱାରା ବିଷଦରୂପେ ବ୍ୟାଖ୍ୟାତ ହୋଇଅଛି, ଏପରି ଅନ୍ୟ କୌଣସି ଦେଶରେ ଅଛି ବୋଲି ଆମ୍ଭମାନଙ୍କୁ ଜଣା ନାହିଁ । କବିମାନେ ଉପମା ଉପରେ ଉପମା ଅଜାଡି ଦେଇଅଛନ୍ତି; କାବ୍ୟ ପ୍ରିୟ ପାଠକଗଣ ପଢି ଶୁଣି ମୁଗ୍ଧ । ପୁଣି ପ୍ରଚଳିତ କଥାରେତ ବାକି ନାହିଁ । କୁକଥା ଶୁଣି ଶୁଣି କର୍ଣ୍ଣ ବଧିର ହୋଇ ଗଲାଣି । ପଥ ଚାଲିବାବେଳେ ଗୃହରେ ବସିଲାବେଳେ କର୍ମକ୍ଷେତ୍ରରେ କର୍ମକଲା ବେଳେ, କୌଣସି ବିଷୟରେ ତ୍ରାହି ନାହିଁ -ଏମନ୍ତକି ଧର୍ମମନ୍ଦିରମାନ ମଧ୍ୟ ପରିତ୍ରାଣ ପାଇ ନାହିଁ ।

ଅଶ୍ଳୀଳତା ନିବାରଣ ପାଇଁ ଗବର୍ଣ୍ଣମେଣ୍ଟଙ୍କ ବ୍ୟବସ୍ଥାଶାସ୍ତ୍ରରେ ବିଧି ଅଛି । ମାତ୍ର ବିଧି ପରିଚାଳିତ କରିବି କିଏ ? ଦେଶର ସମସ୍ତ ଲୋକେତ ଅଳ୍ପାଧିକେ ପରିମାଣରେ ଏକା ଅପରାଧରେ ଅପରାଧୀ, ପୋଲିସ କର୍ମଚାରୀମାନଙ୍କଦ୍ୱାରା ଏହାର ଅନେକ ପ୍ରତିବିଧାନର ଆଶା କରାଯାଆନ୍ତା । ଦୁର୍ଭାଗ୍ୟର ବିଷୟ ଯେ, ସେହି ପୁଲିସ କର୍ମଚାରୀମାନେ ଏ ବିଷୟରେ ଅପର ସାଧାରଣଙ୍କର ଆଦର୍ଶ ଅଟନ୍ତି- କଦର୍ଯ୍ୟ ଗାଳି ଯେତେପ୍ରକାର ହୋଇପାରେ, ସେ ସମସ୍ତ ପୁଲିସର ଗୋଟିଏ ପ୍ରଧାନ ଅସ୍ତ୍ର ମଧ୍ୟରେ ଗଣ୍ୟ । ଦେଶର ଲୋକେ ଯେ ପାଞ୍ଚଜଣ ଦଶଜଣ ମିଳି ଏହାର ଦମନର ଚେଷ୍ଟା କରିବେ, ସେ ଆଶା ମଧ୍ୟ ଅତିଅଳ୍ପ । ନାନା ଅସାର ବିଷୟରେ ଶକ୍ତି ସାମର୍ଥ୍ୟ ଅପବ୍ୟୟ କରୁଅଛନ୍ତି, ଅଥଚ ପ୍ରକୃତ ଅନିଷ୍ଟ ନିବାରଣ ବା ଇଷ୍ଟସାଧନରେ ଏକୀଭୂତ ହୋଇ କାର୍ଯ୍ୟ କରିବାର ଦୃଷ୍ଟାନ୍ତ ଏଦେଶରେ ବିରଳ ।

ଆମ୍ଭେମାନେ ବାରମ୍ବାର କହିଅଛୁଁ ଔଦାସୀନ ଆମ୍ଭମାନଙ୍କ ବର୍ତ୍ତମାନ ଜାତୀୟ ଚରିତ୍ର ହୋଇଅଛି । ଜାଣି ଶୁଣି ଆଖି ବୁଜିବା ପୁଣି ସମୟ ପଡିଲେ ସର୍ବପ୍ରକାର ବିଷୟକୁ ଆଧ୍ୟାତ୍ମିକ ଓ ବୈଜ୍ଞାନିକ ତତ୍ତ୍ୱ ବାହାର କରିବା ଏଦେଶର ଶିକ୍ଷିତ ଲୋକଙ୍କର ଗୋଟିଏ ରୋଗ । ସଦୁଦ୍ୟମର ଦୃଷ୍ଟାନ୍ତ ଅତି ବିରଳ । ଅଭାବ ରାଶି ରାଶି, ଦୋଷ ରାଶି ରାଶି, ତଥାପି ସମ୍ମିଳିତ ଚେଷ୍ଟା, ବା ସତ୍କାର୍ଯ୍ୟରେ ପ୍ରବୃତ୍ତି ଅତି ବିରଳ । ସମାଜସ୍ଥ ଯାବତୀୟ ଅପକୃଷ୍ଟ ବିଷୟ ପ୍ରତି ତୀକ୍ଷ୍ଣଦୃଷ୍ଟି ନ ଦେଲେ, ତାହାର ଉଚ୍ଛେଦସାଧନରେ ବଦ୍ଧପରିକର ନହେଲେ ସମାଜର କଳଙ୍କ ଦୂର ହୁଏ ନାହିଁ, ଉନ୍ନତିର ମାର୍ଗ ପରିଷ୍କୃତ ହୁଏ ନାହିଁ । ଭାଷାର ଏହି କଦର୍ଯ୍ୟ ବ୍ୟବହାର ଗୋଟିଏ ସାମାନ୍ୟ କଳଙ୍କ ନୁହେଁ । ଆମ୍ଭେମାନେ ଆଶା କରୁ ଯେଉଁମାନେ ଏହା ଲଜ୍ଜାକର ଓ ଘୃଣାଜନକ ଜ୍ଞାନ କରନ୍ତି, ସେମାନେ ଏହାର ପ୍ରତିବିଧାନରେ ଯତ୍ନବାନ୍ ହେବେ । ଯଦ୍ଦ୍ୱାରା ଭାଷାର ମର୍ଯ୍ୟାଦା ଓ ଜାତିର ମର୍ଯ୍ୟାଦା ଉଭୟ ରକ୍ଷିତ ହେବ, ତତ୍ପ୍ରତି ଔଦାସୀନ୍ୟ ପ୍ରକାଶ କରିବା କଦାଚ ମନୁଷ୍ୟତ୍ୱର ଲକ୍ଷଣ ନୁହେଁ ।

**ବିଷମ ସଙ୍କଟ :**

ଆଜିକାଲି ଧର୍ମ ଓ ନୀତିର ଆନ୍ଦୋଳନ ସର୍ବତ୍ର ଦେଖାଯାଏ- ଆନ୍ଦୋଳନଟା ବର୍ତ୍ତମାନ ଯେପରି ଆକାର ଧାରଣ କରିଅଛି, ପୂର୍ବେ ସେପରି କଦାଚ ହୋଇନଥିଲା । ବର୍ତ୍ତମାନ ସକଳ ସମ୍ପ୍ରଦାୟର ଲୋକ ଅତ୍ୟଧିକ ପରିମାଣରେ ଜାଗ୍ରତ ହୋଇଉଠିଅଛନ୍ତି- ଆପଣା ସଂପ୍ରଦାୟ ମଧ୍ୟରେ ଉତ୍କୃଷ୍ଟ ବସ୍ତୁ ଯାହା ଅଛି, ତାହା ଜଗତକୁ ଦେଖାଇବାକୁ ପ୍ରବୃତ୍ତ ହୋଇଅଛନ୍ତି । ଏହା ଅତି ଆନନ୍ଦର କଥା । ପୃଥିବୀରେ ଯେତେ ଧର୍ମର ଚର୍ଚ୍ଚା ହୁଏ, ତେତେ ମଙ୍ଗଳ । ଅନ୍ୟ ଦେଶ ଓ ଅନ୍ୟ ସମ୍ପ୍ରଦାୟର କଥା ଛାଡି ବର୍ତ୍ତମାନ କେବଳ ଆମ୍ଭେମାନେ ଏ ଦେଶର କଥା କିଞ୍ଚିତ୍ ଆଲୋଚନା କରିବୁଁ । ନିଦ୍ରିତ ହିନ୍ଦୁସମାଜ ଜାଗ୍ରତ ହୋଇଅଛି, ଏହା ପ୍ରାୟ ସମସ୍ତେ ପ୍ରତ୍ୟକ୍ଷ କରୁଅଛନ୍ତି । ଏଦେଶୀୟ ଯୁବକମାନଙ୍କୁ ଧର୍ମପରାୟଣ ଓ ନୀତିପରାୟଣ କରିବା ପାଇଁ ଅନେକ ସଚେଷ୍ଟ ହୋଇଅଛନ୍ତି । ଧର୍ମ ଛାଡି ନୀତି ଶିକ୍ଷା ଦେବା କେତେଦୂର ସଙ୍ଗତ, ତାହା ଚିନ୍ତାଶୀଳ ବ୍ୟକ୍ତିମାନେ ଭଲରୂପେ ବୁଝି ପାରିଅଛନ୍ତି । ସୁତରାଂ ଅସମ୍ପ୍ରଦାୟିକଭାବରେ ଧର୍ମ ଶିକ୍ଷା ଦେବା ସେମାନେ ଅତ୍ୟାବଶ୍ୟକ ବୋଲି ମନେ କରନ୍ତି । ଅସାମ୍ପ୍ରଦାୟିକଭାବରେ ଧର୍ମଶିକ୍ଷା ଦେବାର ଅର୍ଥ କଣ, ଟିକିଏ ଭଲ କରି ଦେଖାଯାଉ । ଧର୍ମର ଯେଉଁ ମୂଳସୂତ୍ରଗୁଡିକ ସକଳ ସମ୍ପ୍ରଦାୟରେ ଏକ ଏବଂ ଅଭିନ୍ନ ତାହାହିଁ ଅସାମ୍ପ୍ରଦାୟିକ ଧର୍ମ ନାମରେ ଅଭିହିତ । ଯଥା, ଈଶ୍ୱରବିଶ୍ୱାସ, ପ୍ରାର୍ଥନା, ମାନବପ୍ରୀତି ଇତ୍ୟାଦି । ଜିଜ୍ଞାସା କରୁଁ, ଅସାମ୍ପ୍ରଦାୟିକଭାବରେ ଯାହାର ପ୍ରକୃତ ଧର୍ମଶିକ୍ଷା ହେବ, ସେ ବ୍ୟକ୍ତି ପୁଣି ସାମ୍ପ୍ରଦାୟିକ ହେବ କିପରି ? ସେ ବ୍ୟକ୍ତି ଆପଣାକୁ ସାମ୍ପ୍ରଦାୟିକ ସୀମା ମଧ୍ୟରେ ଆବଦ୍ଧ କରି ଅନ୍ୟ ସମ୍ପ୍ରଦାୟପ୍ରତି ଉପହାସ, ବିଦ୍ରୁପ, କଟୂକ୍ତି ପ୍ରୟୋଗ

କରିପାରିବ କିପରି ? ଏହା ନିତାନ୍ତ ଅସଙ୍ଗତ ଓ ଅସମ୍ଭବ କଥା । ଯେବେ ଏପରି ଦୃଷ୍ଟାନ୍ତ କୌଣସିଠାରେ ଦେଖାଯାଏ, ତେବେ କଣ ମନେ କରିବାକୁ ହେବ ? ଏହା ନିସଃନ୍ଦିଗ୍‌ଧରୂପେ ବୁଝିବାକୁ ହେବ, ସେ ବ୍ୟକ୍ତିର ଅସାମ୍ପ୍ରଦାୟିକ ବା ସାମ୍ପ୍ରଦାୟିକ କୌଣସି ପ୍ରକାର ଧର୍ମଶିକ୍ଷା ହୋଇନାହିଁ । ସେ ବ୍ୟକ୍ତି ଧର୍ମକୁ ସମ୍ମାନ କରିବାକୁ ଶିକ୍ଷା କରି ନାହିଁ ଏବଂ ତାହାର ଜୀବନ ସଙ୍ଗେ ଧର୍ମର କିଛି ସମ୍ପର୍କ ନାହିଁ ।

ଆମ୍ଭେମାନେ ବର୍ତ୍ତମାନ ଏଦେଶୀୟ ଯୁବକ ଓ ବାଳକମାନଙ୍କ ଜୀବନରେ ଏହିପରି ଅସଙ୍ଗତ ଓ ଅସ୍ୱାଭାବିକ ପ୍ରବୃତ୍ତି ଦେଖି ବାସ୍ତବ ମର୍ମାହତ ହୋଇଅଛୁଁ ।

ବିଭିନ୍ନ ସମ୍ପ୍ରଦାୟର ଉପାସନାମନ୍ଦିରରେ ଯେତେବେଳେ ଦୁଇ ଚାରୋଟି ଯୁବକ ବା ବାଳକ ପ୍ରବେଶ କରନ୍ତି ସେତେବେଳେ ସେମାନଙ୍କର ଭାବଭଙ୍ଗୀ, ହାସ୍ୟ ପରିହାସାଦି ଦେଖିଲେ କେଉଁ ହୃଦୟବାନ୍ ବ୍ୟକ୍ତି ଅନ୍ତଃକରଣରେ ବ୍ୟଥାପ୍ରାପ୍ତ ନ ହେବ ? ଯାହାର କୌଣସି ପ୍ରକାର ଧର୍ମରେ ଆସ୍ଥା ଅଛି ସେ କି ଅନ୍ୟ ବ୍ୟକ୍ତି ବା ସମ୍ପ୍ରଦାୟର ଉପାସନା ସ୍ଥଳରେ ଏପରି ଗର୍ହିତ କାର୍ଯ୍ୟ କରିପାରେ ? ଈଶ୍ୱରଙ୍କ ପବିତ୍ର ନାମ ଯେଉଁଠାରେ ଉଚ୍ଚାରିତ ହେଉଅଛି, ସେଠାରେ ତାହାର ପ୍ରାଣରେ ସ୍ୱତଃ ଭକ୍ତିର ଉଦ୍ରେକ ହେବ । ସେ କଥା ଚୁଲିକି ଯାଉ ଭଦ୍ରତାର ଅନୁରୋଧରେ ହେଲେ ସେସ୍ଥଳରେ ସସମ୍ଭ୍ରମ ବ୍ୟବହାର କର୍ତ୍ତବ୍ୟ । ଆମ୍ଭେମାନେ ଶୁଣିଅଛୁ, କୌଣସି ଭକ୍ତିଭାଜନ ବ୍ୟକ୍ତି ଉପାସନା କରୁଥିବା ସମୟରେ ତାଙ୍କର କୌଣସି ବନ୍ଧୁଙ୍କର ଦ୍ୱାଦଶ ବର୍ଷୀୟ ପୁତ୍ର ଅନ୍ୟ ଗୃହରେ ଥାଇ କହୁଅଛି- କେନ ଏତ ଚେଚାଁ ଛେନ ? କି ଭୟାନକ କଥା ? ଏହି ବାଳକ ସେତେବେଳେ ବୟଃପ୍ରାପ୍ତ ହେବ, ଯେତେବେଳେ ସେ ଧର୍ମର ଆଦର କରିବାକୁ ଶିକ୍ଷା କରିବଟିକି ? ଆମ୍ଭମାନଙ୍କ ଦେଶରେ ସହସ୍ର ବାଳକ ଓ ଯୁବକଙ୍କର ଏହି ଦଶା । କେହି ଏହାର ପରିଣାମ ଚିନ୍ତା କରିବାକୁ ନାହିଁ । ନିଜ ପୁତ୍ର କନ୍ୟାମାନେ କିପରି ଭକ୍ତିମାନ ଓ ଭକ୍ତିମତୀ ହେବେ, ସେ ବିଷୟ ପ୍ରତି ପ୍ରାୟ କାହାରି ଦୃଷ୍ଟି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିରେ ଧର୍ମରକ୍ଷା ଓ ନୀତିରକ୍ଷା ହେବ କିପରି । ବାଲ୍ୟବୟସ ଯେଉଁମାନଙ୍କର ଏପରି ଶୋଚନୀୟ, ସେମାନଙ୍କର ପରିଣାମ ଚିନ୍ତା କଲେ ହୃତକମ୍ପ ଉପସ୍ଥିତ ହୁଏ । ଆମ୍ଭେମାନେ ଅନ୍ୟଜାତି ନିକଟରେ ଗର୍ବ କରି କହିଥାଉଁ, ଭାରତ ଧର୍ମପ୍ରାଣ, ଭକ୍ତିପ୍ରଧାନ ଦେଶ । ଏହା କି ତାହାର ନିଦର୍ଶନ ? କେବେ ପିତୃ ପିତାମହଙ୍କ ଅମଳରେ ଭକ୍ତି, ବିଶ୍ୱାସ, ନିଷ୍ଠା ଥିଲା ବୋଲି ଆଜି ଅହଙ୍କାର କରି ବୁଲିଲେ ହେବ ନାହିଁ କିମ୍ବା ଶାସ୍ତ୍ର ଫିଟାଇ ଉଚ୍ଚଭାବ, ଉଚ୍ଚତତ୍ତ୍ୱ ଦେଖାଇଲେ ଚଳିବ ନାହିଁ । ଆମ୍ଭମାନଙ୍କର ପ୍ରକୃତ ଅବସ୍ଥାନଭିଜ୍ଞ ବିଦେଶୀମାନଙ୍କଠାରୁ ସମ୍ମାନ ଓ ଶ୍ରଦ୍ଧା ଲାଭ କରିବାପକ୍ଷେ ଏହା ଯଥେଷ୍ଟ ହୋଇ ପାରେ ମାତ୍ର ଆତ୍ମୋନ୍ନତି ସଂଗେ ଏହାର କିଛିମାତ୍ର ସଂପର୍କ ନାହିଁ ବରଂ ତଦ୍ୱାରା ଏକ ପ୍ରକାର ଅଯଥା ଆତ୍ମାଭିମାନ ଜାତ ହୋଇ ମନୁଷ୍ୟର ସର୍ବପ୍ରକାର ଉନ୍ନତି ପିପାସା ନଷ୍ଟ କରିଦିଏ । ଫଳରେ ଆମ୍ଭମାନଙ୍କ ଦେଶରେ ତାହ

ହୋଇଅଛି- ଆମ୍ଭେମାନେ କେବଳ ଲୋକମୁଖରେ ପ୍ରଶଂସା ଶୁଣି ପରିତୃପ୍ତ । କେହି ଯେବେ କହେ ତୁମ୍ଭମାନଙ୍କ ପରି ଧର୍ମପରାୟଣ ଜାତି ଆଉ ପୃଥିବୀରେ ନାହିଁ । ତୁମ୍ଭମାନଙ୍କ ଶାସ୍ତ୍ର ପରି ଉଚ୍ଚଶାସ୍ତ୍ର ଭୂମଣ୍ଡଳରେ କାହିଁ ନାହିଁ, ତେବେ ତ ଆମ୍ଭମାନଙ୍କ ତତ୍କ୍ଷଣାତ୍ ସ୍ୱର୍ଗଲାଭ । ପ୍ରକୃତ ପକ୍ଷେ ଆମ୍ଭେମାନେ କଣ, ସେକଥା ଭାବିବାର ଅବସର କାହିଁ? ପ୍ରୟୋଜନ ବା କଣ ? ପ୍ରତ୍ୟକ୍ଷ ଦେଖାଯାଉଅଛି ଧର୍ମ ସମ୍ବନ୍ଧରେ ଭାରତ ବର୍ତ୍ତମାନ ଦୁର୍ଗତିର ଚରମ ସୀମାରେ ଉପନୀତ । କେବଳ ଔଦାସୀନ୍ୟ, କେବଳ କପଟତା, କେବଳ ବାହ୍ୟାଡମ୍ବର ବିଶ୍ୱାସ, ସାଧକର ସଂଖ୍ୟା ନାହିଁ କହିଲେ ଚଳେ । ଆପଣା ଭିତରେ ବା ଆପଣା ସଂପ୍ରଦାୟ ଭିତରେ ଯେ କିଛି ଦୋଷ ଅଛି ବା ଥାଇପାରେ ସାଧାରଣତଃ ଭାରତବାସୀ ଏକଥା ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି ।

ଏ ପ୍ରକାର ଅବସ୍ଥାରେ ଆମ୍ଭେମାନେ ବାଳକ ବାଳିକା ବା ଯୁବକ ଯୁବତୀ ମାନଙ୍କଠାରୁ କି ପ୍ରକାର ଧର୍ମଭାବ ଆଶା କରିପାରୁଁ ? ପିତା ପୁତ୍ରର ପାଠୋନ୍ନତି ପାଇଁ ପ୍ରାଣପ୍ରଣେ ଯତ୍ନର ତ୍ରୁଟି କରୁନାହାନ୍ତି । ମାତ୍ର ମୁହୂର୍ତ୍ତକ ପାଇଁ ସୁଦ୍ଧା ଈଶ୍ୱରଙ୍କ କରୁଣା ବା ପ୍ରେମର କଥା ତାକୁ ଶୁଣାନ୍ତି ନାହିଁ - ଦିନାନ୍ତେ ନିଶାନ୍ତେ ନିଜେ ଈଶ୍ୱରଙ୍କ ଧ୍ୟାନ ଧାରଣାରେ ଘଣ୍ଟାଏ କି ଅଧଘଣ୍ଟାଏ ସମୟ ଦିଅନ୍ତି ନାହିଁ । ପୁତ୍ରର ପ୍ରାଣରେ ଶୂନ୍ୟରୁ ଧର୍ମଭାବ ଜାଗ୍ରତ ହେବ ?

ଦୁର୍ଭାଗ୍ୟ, ଭାରତ ପକ୍ଷରେ ଏହା ଏକ ବିଷମ ସଙ୍କଟର ଅବସ୍ଥା । ଏ ସଙ୍କଟରୁ ତ୍ରାହି ନପାଇଲେ ଭାରତର ମଙ୍ଗଳ ନାହିଁ । ଧର୍ମ୍ମ ବିନା କଣ କୌଣସି ଜାତିର ପ୍ରକୃତ ଉନ୍ନତି ଓ ସୁଖଶାନ୍ତି ସମ୍ଭବ ? ଆମ୍ଭେମାନେ ଏ ସମ୍ବନ୍ଧରେ କିଛି ଉପାୟ ନିର୍ଦ୍ଦେଶ କରି କେବଳ ସମାଜର ମୁଖପାତ୍ର ମାନଙ୍କର ଦୃଷ୍ଟି ଏଥିପ୍ରତି ଆକର୍ଷଣ କରୁଅଛୁଁ - ସେମାନେ ଥରେ ଏ ବିଷୟରେ ଭଲକରି ଚିନ୍ତା କରି ଦେଖନ୍ତୁ ।

## କଚେରୀଆ ଭାଷା :

ଭାଷାର ଏକପ୍ରକାର ଅପବ୍ୟବହାର ପୂର୍ବେ ପ୍ରକାଶିତ ହୋଇଅଛି-ତାହାର ନିଦର୍ଶନ ଆମ୍ଭମାନଙ୍କ ଦେଶରେ ସର୍ବତ୍ର ରହିଅଛି । ବର୍ତ୍ତମାନ ଆମ୍ଭେମାନେ ଆଉ ଏକପ୍ରକାର ଭାଷାର ଅପବ୍ୟବହାର ଦେଖାଇବୁ । ଏହା ପ୍ରଥମଶ୍ରେଣୀ ପରି ଘୃଣ୍ୟ ଓ ଲଜ୍ଜଜନକ ନ ହେଲେ ହେଁ ନିନ୍ଦାର କଥା ଏଥିରେ ଯଥେଷ୍ଟ ଅଛି । ଅଶିକ୍ଷିତ ଲୋକମାନେ ବ୍ୟାକରଣର ମସ୍ତକ ଚର୍ବଣ କରି ଯେପରି ଭାଷା ଅନେକ ସମୟରେ ବ୍ୟବହାର କରନ୍ତି ଶିକ୍ଷିତ ନାମରେ ଯେଉଁମାନେ ପରିଚିତ, ସେମାନେ ଯେବେ ସେହିପରି କରିବେ ଏବଂ ମାଳମାଳ ବର୍ଣ୍ଣାଶୁଦ୍ଧି ଆପଣା ଆପଣା ଲେଖାମଧ୍ୟରେ ରଖିବେ, ତେବେ ଆଉ ଭାଷାର ସଦ୍‌ବ୍ୟବହାର କିଏ କରିବ ? ଏଥିର ନିଦର୍ଶନ କଚେରୀମାନଙ୍କର ସିରସ୍ତାର ଭାଷା । ସାଧାରଣତଃ ଲୋକଙ୍କର ବିଶ୍ୱାସ ଯେ କଚେରୀକି ଗଲେ ଆଉ କୌଣସି ବନ୍ଧା ନିୟମ ମାନି ଚଳିବା ଆବଶ୍ୟକ

ହୁଏନାହିଁ । କୌଣସି ପ୍ରକାରର ଅର୍ଥ ପ୍ରକାଶ ପାଉଥିବ, ଏହିପରି ଭାଷା ବ୍ୟବହାର କରିପାରିଲେ ପାଠ ସରିଗଲା । ଲେଖିଲାବେଳେ ସେ ବର୍ଣ୍ଣାଶୁଦ୍ଧି ପରିହାର କରିବା ପକ୍ଷରେ ବିଶେଷଦୃଷ୍ଟିଦେବାକୁ ହେବ ଏକଥା କାହାରି ମନରେ ଉଦିତ ହୁଏ ନାହିଁ । ଆମ୍ଭମାନଙ୍କ ମତରେ ଏହା ଯେ କୌଣସି ଜାତି ପକ୍ଷରେ ଘୋର କଳଙ୍କର କଥା ।

ପ୍ରଥମ କଥା ଏହି ଯେ ଅନେକ କାଳରୁ କଚେରୀର କେତେଗୁଡିଏ ନିତାନ୍ତ ଅର୍ଥଶୂନ୍ୟ ବନ୍ଧାଗତ ଚଳିଆସୁଅଛି । ସେଗୁଡିକ ଶୁଣିଲେ ହାସ୍ୟ, ସମ୍ବରଣ କରି ହୁଏନାହିଁ, ଦୃଷ୍ଟାନ୍ତସ୍ୱରୂପ ଉଲ୍ଲେଖ କରାଯାଇପାରେ, ଦଲିଲ ଦସ୍ତାବିଜମାନଙ୍କର 'କାର୍ଯ୍ୟଂଚଲେ' ଯେ କେତେଗୁଡିଏ ଗତ ବ୍ୟବହୃତ ହୁଏ; ସେଗୁଡିକ ନିତାନ୍ତ ହାସ୍ୟଜନକ ଓ ଅର୍ଥଶୂନ୍ୟ; ଅଥଚ ଏମାନ ପରିହାର କଲେ ଦଲିଲ ବିସ୍ତାବିଜ ଯେ ଅସମ୍ପୂର୍ଣ୍ଣ ହୋଇଯିବ ଏପରି କିଛି କଥା ନାହିଁ । ପୁଣି ସ୍ତ୍ରୀଲୋକମାନଙ୍କର ନାମ ଉଲ୍ଲେଖ ସମୟରେ ଦେଖାଯାଏ 'ଅମୂକ ଦେବ୍ୟା' ଏହିପରି ଲେଖା ହୋଇଥାଏ । ଅଶିକ୍ଷିତ ଲୋକମାନେ ମନେ କରନ୍ତି ବୋଧ ହୁଏ ଏପରି ଶୁଦ୍ଧଭାଷା ଆଉ କିଛି ନାହିଁ । ଆଜିକାଲି ସମ୍ବାଦପତ୍ରମାନଙ୍କରେ ବିଜ୍ଞାପନ ଇତ୍ୟାଦିରେ ସ୍ୱାକ୍ଷର କଲାବେଳେ ମଧ୍ୟ 'ଅମୁକଦେବ୍ୟା' ବୋଲି ଅନେକ ସମୟରେ ଲେଖିବାର ଦେଖାଯାଏ । ଅଥଚ ଦେବ୍ୟା ଯେ କାହିଁକି ହେବ ଏକଥା କେହି ଭାବନ୍ତି ନାହିଁ । ପ୍ରକୃତପକ୍ଷେ ଅମୁକଦେବୀଙ୍କର ନିବେଦନ ଏହି ଅର୍ଥରେ ଦେବ୍ୟାଃ ଏହି ଷଷ୍ଠୀବିଭକ୍ତ୍ୟନ୍ତ ପଦ ବ୍ୟବହୃତ ହେଉଥିଲା । ତାହାର କଙ୍କାଳସ୍ୱରୂପ ଦେବ୍ୟା କଥାଟା ରହି ଯାଇଅଛି । ଆମ୍ଭମାନଙ୍କ ମତରେ ଭାଷାର ଏପରି ବ୍ୟବହାରମାନ ଉଠାଇ ଦେବା ସର୍ବତୋଭାବେ ବିଧେୟ । ଅନୁନ୍ନତ ଅବସ୍ଥାରେ ବିଦେଶିମାନଙ୍କ ଗୁରୁଗିରିରେ କେତେଗୁଡିଏ ଅପକଥା ଭାଷାରେ ପ୍ରବେଶ କରିଥିଲା ବୋଲି ତାହାର କୌଣସି ପ୍ରକାର ପରିବର୍ତ୍ତନ ସାଧନ ନ କରି ଯତ୍ନ ପୂର୍ବକ ସେଗୁଡିକ ରକ୍ଷା କରିବାକୁ ହେବ, ଏହା କଦାଚ ଯୁକ୍ତିସଙ୍ଗତ ହୋଇ ନପାରେ । କୌଣସି ଉନ୍ନତ ଜାତିର ଭାଷାରେ ଏପରି ଅସଙ୍ଗତ ବ୍ୟବହାର ଦେଖାଯାଏ ନାହିଁ; ତେବେ ଆମ୍ଭମାନଙ୍କ ଭାଷାରେ କାହିଁକି ରହିବ ? ବ୍ୟାକରଣ କଣ କେବଳ ପୋଥିର ଭାଷା ପାଇଁ ସୃଷ୍ଟି ହୋଇଅଛି ?

ଦୁଃଖର ସହିତ ଏଠାରେ କହିବାକୁ ହେଉଅଛି ଯେ ଓଡିଶାରେ ସମ୍ବାଦପତ୍ରମାନଙ୍କର ଭାଷା ମଧ୍ୟ କଚେରୀଆ ଭାଷାର ଅନୁକରଣରେ ଗଠିତ । ସମ୍ବାଦପତ୍ରମାନଙ୍କର ଭାଷା ସରଳ, ସୁବୋଧ ଅଥଚ ନିର୍ଦ୍ଦୋଶ ହେବା ଉଚିତ୍ । ଉତ୍କଳମୟ ସମ୍ବାଦପତ୍ରମାନଙ୍କରେ ଅବ୍ୟାକରଣ ପଦ ଓ ବଙ୍ଗଳାର ବିକୃତ ଅନୁବାଦ ମାଳ ମାଳ । ଦୃଷ୍ଟାନ୍ତସ୍ୱରୂପ ଦୁଇ ଚରିଟା କଥା ଉଲ୍ଲେଖ କରାଯାଇପାରେ । ଯଥା-ଦୃଷ୍ଟେ, ବିନୟତା, ସୌଜନ୍ୟତା, ଉତ୍କର୍ଷତା, ପାୟା ଯାଉନାହିଁ, କରା ଉଚିତ ଇତ୍ୟାଦି । ସମ୍ବାଦପତ୍ର ଯେ ଜନସାଧାରଣଙ୍କୁ କେବଳ ବିଷୟ ଶିକ୍ଷା ଦେବ ତାହା ନୁହେଁ, ବିଶୁଦ୍ଧ ଲିଖନପ୍ରଣାଳୀ ମଧ୍ୟ ଶିକ୍ଷା ଦେବ । ମାତ୍ର ସେତ ନିଜେ ଦୋଷର ଖଣି ଅନ୍ୟକୁ ଗୁଣଶିକ୍ଷା କିପରି ଦେବ ?

ଭାଷାରେ ବହୁପରିମାଣରେ ବର୍ଣ୍ଣାଶୁଦ୍ଧି ରହିବା ଆହୁରି ନିନ୍ଦାର କଥା । କଚେରୀମାନଙ୍କରେ ବର୍ଣ୍ଣାଶୁଦ୍ଧି ଦୋଷ ବୋଲି ଧରାଯାଏ ନାହିଁ, ଏହି କାରଣରୁ ଶିକ୍ଷା ସମୟରେ ଛାତ୍ରମାନଙ୍କର ଦୃଷ୍ଟି ତେଣିକି ଆଦୌ ଯାଏ ନାହିଁ । ତନ୍ମଧ୍ୟରେ କେବଳ ଯେଉଁମାନଙ୍କର ଜାତୀୟ ସାହିତ୍ୟ ଚର୍ଚ୍ଚା ଆଡକୁ ମତିଯାଏ, ସେହିମାନେ ବର୍ଣ୍ଣାଶୁଦ୍ଧି ପରିହାର କରିବାକୁ ଯତ୍ନଶୀଳ ହୁଅନ୍ତି ଏବଂ ଅନେକ ପରିମାଣରେ କୃତକାର୍ଯ୍ୟ ମଧ୍ୟ ହୁଅନ୍ତି । ସେ ଦୃଷ୍ଟି ଯାହାର ନଥାଏ, ସେ ଦଶଧାଡି ଲେଖିବାକୁ ବସିଲେ କି ବ୍ୟାକରଣ କି ବର୍ଣ୍ଣାଶୁଦ୍ଧି ସମସ୍ତ ବିଷୟରେ କମ୍ବଳ ବୁଣି ବସନ୍ତି । ଅନେକ ଦିନ ହେଲା କଚେରୀଆମାନେ କମ୍ବଳ ବୁଣି ଆସୁଅଛନ୍ତି, ବର୍ତ୍ତମାନ ଯେଉଁମାନେ ପ୍ରବେଶ କରୁଅଛନ୍ତି ସେମାନେ ମଧ୍ୟ ଚିରାଗତ ପ୍ରଥା ଅନୁସରଣ କରୁଅଛନ୍ତି । ଇଂରାଜୀ ଲେଖିଲା ବେଳେ ଲୋକେ ଯେତେ ସାବଧାନ ହୁଅନ୍ତି, ନିଜର ମାତୃଭାଷା ଲେଖିଲା ବେଳେ ତାହାର ଶତାଂଶର ଏକାଂଶ ପରିମାଣରେ ସାବଧାନ ହେଉଥିଲେ, କଦାଚ ଏପରି ହେଉ ନଥାନ୍ତା ମାତ୍ର ଇଂରାଜୀ ବିଷୟରେ ବଡ ବଡ ହାକିମମାନଙ୍କର ଯେପରି ତୀକ୍ଷ୍ଣଦୃଷ୍ଟି, ମାତୃଭାଷା ବିଷୟରେତ ସେପରି ଥାଏ ନାହିଁ । ନିମ୍ନଶ୍ରେଣୀର କର୍ମଚାରୀମାନେ ସେ ବିଷୟରେ ଏତେ କଷ୍ଟ ସ୍ୱୀକାର କରିବେ କାହିଁକି ? ଯେଉଁ ଦେଶୀୟ ଲୋକମାନେ ଉଚ୍ଚପଦରେ ନିଯୁକ୍ତ ହେଉଅଛନ୍ତି ସେହିମାନେ ଏହି କଳଙ୍କ ପାଇଁ ବିଶେଷଭାବରେ ଦାୟୀ, ସେମାନେ ସମସ୍ତେ ନିଜେ ମାତୃଭାଷାର ଚର୍ଚ୍ଚା ବଡ ବେଶି କରନ୍ତି ନାହିଁ, ଅନ୍ୟମାନଙ୍କର ଦୋଷ ସଂଶୋଧନ କରି ପାରିବେ କିପରି ? ଅନେକ ବଡ ବଡ ଇଂରାଜୀ ପାଶକରା ବାବୁମାନଙ୍କର ଓଡିଆ ଲେଖାରେ ସତର ଗଣ୍ଡା ଭୁଲ ଦେଖାଯାଏ । ଯେଉଁମାନେ କଚେରୀରେ ପ୍ରବେଶ କରନ୍ତି ସେମାନଙ୍କର ସମସ୍ତ ଦାୟିତ୍ୱ ଚାଲିଯାଏ । ଶିକ୍ଷାବିଭାଗରେ ଯେଉଁମାନେ ପ୍ରବେଶ କରନ୍ତି ସେମାନଙ୍କର ବିଡମ୍ବନା କହିଲେ ସରିବ ନାହିଁ । ଆମ୍ଭମାନଙ୍କର ବିଶ୍ୱାସ ଏ ସମ୍ବନ୍ଧରେ ଓଡିଶା ଅନ୍ୟାନ୍ୟ ପ୍ରଦେଶଠାରୁ ଅଧିକ ଦୋଷୀ । ଉତ୍କଳଭୂମି ସାହିତ୍ୟଚର୍ଚ୍ଚାରେ ଯେପରି ହୀନ, ସେ ଦେଶର ଭାଷାର ଏପରି ଅପବ୍ୟବହାର ହେବା ବଡ ବିଚିତ୍ର ନୁହେଁ । ବର୍ତ୍ତମାନ ଶିକ୍ଷିତବ୍ୟକ୍ତିମାନଙ୍କ ମଧ୍ୟରେ ସାହିତ୍ୟାନୁରାଗ କିଞ୍ଚିତ୍ ଦୃଷ୍ଟ ହେଉଅଛି, ସୁତରାଂ ଭାଷାର ଏହି ଅପବ୍ୟବହାର ଦୂର କରିବା ପକ୍ଷରେ ଉତ୍କଳତନୟମାନେ ସଚେଷ୍ଟା ହେଲେ ଗୋଟିଏ କଳଙ୍କ ଦୂର ହୋଇପାରିବ ଏବଂ ଭବିଷ୍ୟତକୁ ମାତୃଭାଷା ଶୁଦ୍ଧ କରି ଲେଖିବାର ପ୍ରବୃତ୍ତି ମଧ୍ୟ ବଢିବ । ଆମ୍ଭେମାନେ ଆଶାକରୁଁ ସମସ୍ତେ ଏଥିପ୍ରତି ମନୋଯୋଗୀ ହେବେ ।

(ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ବିବିଧ ପ୍ରବନ୍ଧର ୧ମ ସଂସ୍କରଣ ଯୋଗାଇ ମୋତେ ଅନୁଗୃହୀତ କରିଛନ୍ତି)

# ନିତ୍ୟାନନ୍ଦଙ୍କ ସମ୍ପାଦନାର ମହିମ୍ନ ସ୍ୱାକ୍ଷର : ଓଡ଼ିଆ ସାହିତ୍ୟର ଅଗ୍ରଦୂତ ଡଗର

୧୯୩୭ ଓଡ଼ିଆ ପତ୍ରିକା ପ୍ରକାଶନର ସ୍ୱର୍ଣ୍ଣିମ ଅଧ୍ୟାୟ । ଏହି ସମୟକୁ ଓଡ଼ିଆ ପାଠକୀୟତା ଉତ୍କର୍ଷତାର କୋଟିକୁ ସ୍ପର୍ଶ କରିଥିଲା । ଉତ୍କଳ ସାହିତ୍ୟ, ମୁକୁର, ରସଚକ୍ର, ସତ୍ୟବାଦୀ,ନବଭାରତ, ଯୁଗବୀଣା, ସହକାର, ବାରୁଣୀ ପ୍ରଭୃତି ପତ୍ରପତ୍ରିକା ପ୍ରକାଶ ପାଇ ଓଡ଼ିଆ ପତ୍ରିକାର ଏକ ସୁବର୍ଣ୍ଣଯୁଗ ସୃଷ୍ଟି କରିଥିଲା । ପ୍ରକାଶନ ଦୃଷ୍ଟିରୁ ଯଦିଓ ଏହି ସମୟକୁ ସ୍ୱର୍ଣ୍ଣଯୁଗ ରୂପେ ଅବିହିତ କରାଯାଇପାରେ, କିନ୍ତୁ ଏହା ଥିଲା ବୈଚିତ୍ର୍ୟହୀନ । ଗତାନୁଗତିକ ଗଳ୍ପ, କବିତା ଓ ସମାଲୋଚନାକୁ ନେଇ ଓଡ଼ିଆ ପତ୍ରିକା ନିଜର କଳେବର ମଣ୍ଡନ କରୁଥିଲା । ମୁଖ୍ୟତଃ ଏଗୁଡିକ ଥିଲା ଏକ ଆୟାମ ବିଶିଷ୍ଟ । ଗୋଟିଏ ପ୍ରକାରର ପାଠକର ଆବଶ୍ୟକତା ପରିପୂରଣ ଥିଲା ଏମାନଙ୍କର ଆଭିମୁଖ୍ୟ ଏବଂ ସେମାନେ ଥିଲେ ଶିକ୍ଷିତ ବିଦଗ୍ଧ ପାଠକ । ଏହି ଆଭିମୁଖ୍ୟରେ ବୈଚିତ୍ର୍ୟ ଆଣିଲା 'ଡଗର' । ସବୁ ଶ୍ରେଣୀର ପାଠକଙ୍କୁ ଖୋରାକ୍ ଯୋଗାଇ ପାଠକୀୟତାକୁ ଏହା କେବଳ ପ୍ରସାରିତ କଲା ନୁହେଁ, ବରଂ କଲା ବୈଚିତ୍ର୍ୟ ମଣ୍ଡିତ । ଏହି ନୂତନତାର ବାର୍ତ୍ତାବହ ବା ଅଗ୍ରଦୂତ ସାଜିଥିବା ଡଗର ନିତ୍ୟାନନ୍ଦ ମହାପାତ୍ରଙ୍କ ସାରସ୍ୱତ ପ୍ରତିଭା ଦ୍ୱାରା ସୁସମ୍ପାଦିତ ଓ ସୁସମାହିତ । ପିତା ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ପ୍ରତିଷ୍ଠିତ ଏବଂ ତାଙ୍କ ଆଭିମୁଖ୍ୟ ଦ୍ୱାରା ପରିଚାଳିତ 'ଡଗର'କୁ ନିତ୍ୟାନନ୍ଦ ବହୁ ଆୟାମ ବିଶିଷ୍ଟ କରିଥିଲେ । କାନ୍ତକବିଙ୍କ କେବଳ ହାସ୍ୟ ଆଭିମୁଖ୍ୟକୁ ନେଇ ପ୍ରାରମ୍ଭିକ ପର୍ଯ୍ୟାୟରେ ପ୍ରକାଶିତ ଡଗର ନିତ୍ୟାନନ୍ଦ ମହାପାତ୍ରଙ୍କ ଦ୍ୱାରା ବ୍ୟଙ୍ଗ, ରଙ୍ଗରସ ତଥା ଅନ୍ୟାନ୍ୟ ଉପାଦାନକୁ ନେଇ ଏକ ସ୍ୱୟଂସଂପୂର୍ଣ୍ଣ ପତ୍ରିକା ରୂପେ ପ୍ରତିଭାତ ହୋଇଥିଲା । ସାଧାରଣ ଜନଜୀବନକୁ ଏକ ମହନୀୟ ଜୀବନଚର୍ଯ୍ୟା ଅଭିମୁଖେ ଗଢ଼ି ତୋଳିବାର ବଜ୍ର ଶପଥ ନେଇ ଓଡ଼ିଆ ସାହିତ୍ୟରେ ଡଗରର ହୋଇଥିଲା ଶୁଚିଶୁଭ୍ର ପ୍ରକାଶ । ଲେଖାର ଅଭାବ ସମୟରେ ବହୁସ୍ରାବୀ ଲେଖକ ନିତ୍ୟାନନ୍ଦ 'ଡଗର'ର ଅଭାବକୁ ନିଜସ୍ୱ ଲେଖନୀ ଦ୍ୱାରା ଦୂରିଭୂତ କରୁଥିଲେ । ଡଗରର ବହୁ ସଂଖ୍ୟାରେ ଦେଖାଦେଇଥିବା ଅନେକ ଲେଖକ ଓଡ଼ିଆ ସାହିତ୍ୟରେ ପୂର୍ବରୁ ବା ପରେ କେବେ ଦେଖା ଦେଇନାହାନ୍ତି । ଏତଦ୍‌ବ୍ୟତୀତ ଅନେକ ଛଦ୍ମନାମରେ ପ୍ରକାଶିତ ରଚନା ସମୂହ ନିତ୍ୟାନନ୍ଦ ମହାପାତ୍ରଙ୍କ ରଚିତ ବୋଲି ପ୍ରତିପନ୍ନ ହୁଏ । ନିତ୍ୟାନନ୍ଦ ଜଣେ

ଭର୍ସାଟାଇଲ୍ ଜିନିଅସ୍, ଏକ ସ୍ୱତନ୍ତ୍ର ପ୍ରତିଭାର ଅଧିକାରୀ । ଲେଖିବା ସହିତ ପ୍ରେସ୍ ଦାୟିତ୍ୱ, ପ୍ରୁଫ୍ ଦେଖିବା, ଟ୍ରେଡେଲ୍ ମେଶିନ ପାଖରେ ଠିଆ ହୋଇ ଡଗରକୁ ପୂର୍ଣ୍ଣତା ଦେବାର ନିଷ୍ଠା ବିସ୍ମୟକର ଓ ଅନନ୍ୟ ।

କ୍ରାନ୍ତଦ୍ରଷ୍ଟା ନିତ୍ୟାନନ୍ଦ ଡଗରକୁ ଏକ ସ୍ୱୟଂସଂପୂର୍ଣ୍ଣ ଅନୁପମ ପତ୍ରିକା ରୂପେ ଗଢ଼ିତୋଳିଥିଲେ । ବିଭିନ୍ନ ଲେଖକଙ୍କ ବିଶେଷାଙ୍କର ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରିବାର ପରମ୍ପରା ତାଙ୍କ ଦ୍ୱାରା ସୃଷ୍ଟ । ପୂର୍ବରୁ କୌଣସି ମହାନ୍ ପ୍ରତିଭାଙ୍କ ତିରୋଧାନରେ ସ୍ୱତନ୍ତ୍ର ସଂଖ୍ୟାମାନ ପ୍ରକାଶ ପାଉଥିଲା । କିନ୍ତୁ ପ୍ରଥମଥର 'ଡଗର'ରେ ବହୁ ପୂର୍ବରୁ ମୃତ ସାହିତ୍ୟିକମାନଙ୍କ ସ୍ୱତନ୍ତ୍ର ବିଶେଷାଙ୍କ ପ୍ରକାଶ ପାଇ ଓଡ଼ିଆ ସାହିତ୍ୟ ଜଗତରେ ଚମକ୍ ସୃଷ୍ଟି କରିଥିଲା । 'ମୁଁ କାହିଁକି ଲେଖେ' ନିତ୍ୟାନନ୍ଦଙ୍କର ଏକ ବିସ୍ମୟକର ଆବିଷ୍କାର । ଏହି ଲେଖାର ସ୍ୱାତନ୍ତ୍ର୍ୟ ସୁସ୍ପଷ୍ଟ । ଆଧୁନିକ ଲେଖକ ଗଣ 'ଡଗର' ମାଧ୍ୟମରେ ନିଜକୁ ପ୍ରତିଷ୍ଠିତ କରିବାର ସୁଯୋଗ ଲଭିଥିଲେ । ପୂର୍ବରୁ ଉତ୍କଳ ସାହିତ୍ୟ, ସହକାର ବା ପରବର୍ତ୍ତୀ ପର୍ଯ୍ୟାୟରେ ଝଙ୍କାରରେ ପ୍ରକାଶିତ ଲେଖା ହିଁ ସାହିତ୍ୟିକର ସ୍ୱୀକୃତି ବା ଉତ୍କୃଷ୍ଟ ଲେଖାର ମାନଦଣ୍ଡ ବୋଲି ବିବେଚିତ ହେଉଥିଲା । ସେହି ପରମ୍ପରାର ଏକ ବଳିଷ୍ଠ ଓ ଦୃଢ଼ଭିତ୍ତି ସୃଷ୍ଟି କରିଥିଲା 'ଡଗର' । 'ଡଗର'ରେ ପ୍ରକାଶିତ ସାହିତ୍ୟିକ ରଚନା, ଜଣେ ସାହିତ୍ୟିକ ଜୀବନର ଉତ୍କର୍ଷତାର ପ୍ରତୀକ ରୂପେ ବିବେଚିତ ହେଉଥିଲା । ଅନେକ ସମ୍ପାଦକ ପତ୍ରିକାକୁ ନିଜର ଜମିଦାରୀ ସମ୍ପତ୍ତି ରୂପେ ବ୍ୟବହାର କରୁଥିଲେ । କିନ୍ତୁ ନିତ୍ୟାନନ୍ଦ 'ଡଗର'କୁ ଜନସାଧାରଣଙ୍କ ସମ୍ପତ୍ତି ରୂପେ ଏହାର ସମସ୍ତ ଦ୍ୱାର ଉନ୍ମୁକ୍ତ କରି ରଖିଥିଲେ ।

ଡଗର ୧୯୩୭(ଜ୍ୟେଷ୍ଠ-୧, ୧୩୪୪ ସାଲ) ବେଳକୁ ଆତ୍ମପ୍ରକାଶ କରେ । 'ଡଗର' ଅନ୍ତରାଳରେ ଫକୀରମୋହନଙ୍କ କାଳଜୟୀ ଚିନ୍ତନ, ଗୋପାଳ ପ୍ରହରାଜଙ୍କ ହାସ୍ୟ ମଧୁର ଶବ୍ଦସଜ୍ଜା, ରାଧାନାଥଙ୍କ ପରିବ୍ୟାପ୍ତ ଦୃଷ୍ଟିଭଙ୍ଗୀ ଏବଂ କାନ୍ତକବିଙ୍କ ହାସ୍ୟ ଓ ବ୍ୟଙ୍ଗ ସୁପ୍ରଚ୍ଛନ୍ନ । କାନ୍ତକବିଙ୍କ ଦ୍ୱାରା ପ୍ରତିଷ୍ଠିତ କିନ୍ତୁ ନିତ୍ୟାନନ୍ଦ ମହାପାତ୍ରଙ୍କ ଦୂରଦୃଷ୍ଟି ଓ ସାରସ୍ୱତ ଅନ୍ତର୍ଦୃଷ୍ଟିର ସୁମହାନ ପ୍ରକାଶ 'ଡଗର' । ଡଗର ଓଡ଼ିଆ ସାହିତ୍ୟର ତିନୋଟି ବିଶେଷ ହୀତ ସାଧନ କରିଛି । ପ୍ରଥମତଃ ପୁରୁଣା ଲେଖକଙ୍କ ସାରସ୍ୱତ କୃତିକୁ ପରିଚିତ ପରବର୍ତ୍ତୀ ଲେଖକଙ୍କ ଦ୍ୱାରା ମୂଲ୍ୟାୟନ । 'ମୁଁ କାହିଁକି ଲେଖେ' ଶୀର୍ଷକର ଉଦ୍ଦେଶ୍ୟ ହେଲା ପୁରୁଣା ଜୀବିତ ଲେଖକଙ୍କଠାରୁ ତାଙ୍କ ସମ୍ପର୍କରେ ଶୁଣିବା ତାଙ୍କ ଅନୁଭୂତିମୟ ଦିଗନ୍ତକୁ ସର୍ବଜନୀନ କରିବା । ମୋ ପ୍ରିୟ ଲେଖକ ଶୀର୍ଷକରେ ଜଣେ ଲେଖକଙ୍କ ଦୃଷ୍ଟିରେ ଅନ୍ୟ ଏକ ଲେଖକର ନିବିଡ ମୂଲ୍ୟାୟନ । ଦ୍ୱିତୀୟତଃ ସାହିତ୍ୟର ଇତିହାସ ପ୍ରଣୟନ ଓ ସେ ସମ୍ପର୍କରେ ଗବେଷଣା ଓ ଅଧ୍ୟୟନର ସୁଯୋଗ ସୃଷ୍ଟି । ତୃତୀୟତଃ ନୂତନ ଲେଖକ ଆବିଷ୍କାର । ଏହି ତିନୋଟି ପ୍ରସଙ୍ଗରେ ଡଗର ଏବଂ ଡଗର ଅନ୍ତରାଳରେ ନିତ୍ୟାନନ୍ଦ ମହାପାତ୍ରଙ୍କ ଉଦ୍ୟମ ସଫଳ ହୋଇଛି ।

ଡଗର ଏକ ସୁସମ୍ପାଦିତ ପତ୍ରିକା । 'ବିଲୁଆ ବିଚାର' ଶୀର୍ଷକରେ ଏହାର ସମ୍ପାଦକୀୟ ଜନସାଧାରଣଙ୍କୁ ମନ୍ତ୍ରମୁଗ୍ଧ କରୁଥିଲା । ପରେ ପରେ 'ବିଲୁଆ ବିଚାର' ଏକ ସ୍ୱତନ୍ତ୍ର ସ୍ତମ୍ଭ ରୂପେ ପ୍ରକାଶ ପାଇଲା ଏବଂ ସମ୍ପାଦକୀୟ ସ୍ୱତନ୍ତ୍ର ଭାବେ ସ୍ଥାନିତ ହେଲା । ଏହାର ଉଦ୍ଦେଶ୍ୟ ସମ୍ପର୍କରେ ସମ୍ପାଦକ ଘୋଷଣା କରନ୍ତି, "ଡଗରର ଉଦ୍ଦେଶ୍ୟ ରସ ସୃଷ୍ଟି । ପ୍ରତ୍ୟେକ ବିଷୟକୁ ଲଘୁ ଦୃଷ୍ଟିରେ ଦେଖି ଦଳଗତ କିମ୍ବା ବ୍ୟକ୍ତିଗତ ଦ୍ୱେଷ ରହିତ ବିଦ୍ରୂପରେ ଆନନ୍ଦର ସଂଚାର କରିବା ତା'ର ଉଦ୍ଦେଶ୍ୟ" ଏହି ଉଦ୍‌ଘୋଷଣାକୁ ପ୍ରମାଣିତ କରେ ସମ୍ପାଦକୀୟର ପ୍ରଥମ ପଂକ୍ତି ।

ଷଣ୍ଢ (John Bull) ଦେଶର ବଡ ଲାଟ ସାହେବ ଭାରତକୁ ବହୁତ ପ୍ରଜନକ ଷଣ୍ଢ (Stud Bull) ଦାନ କରୁଛନ୍ତି । ତାଙ୍କର ଏହି ଗୋ-ପ୍ରେମ ଦେଖି ଭଗବାନ ତାଙ୍କ ନାମ ଶେଷରେ 'ଗୋ' ଶବ୍ଦ ଯୋଗ କରିଛନ୍ତି ପରା ! ଜୀର୍ଣ୍ଣଶୀର୍ଣ୍ଣ ଓଡ଼ିଆ ଗୋ-ଜାତି ଉପରେ ତାଙ୍କର କେବେ ସୁଦୃଷ୍ଟି ପଡୁଛି ? (ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାର ସମ୍ପାଦକୀୟ)

ସମ୍ପାଦକୀୟ ବ୍ୟତୀତ ଗଳ୍ପ, କବିତା, ଡଗର ଶବ୍ଦଧନ୍ଦା, ହସଖୁସି, ଟାକୁଆ ଗାଲ, ବହିପତ୍ର ପ୍ରଭୃତି ବିଭାଗ ପ୍ରକାଶ ପାଉଥିଲା । ବହିପତ୍ର ଶୀର୍ଷକରେ ମୁଖ୍ୟତଃ ସମକାଳୀନ ପତ୍ରପତ୍ରିକାର ରୁଚିପୂର୍ଣ୍ଣ ସମାଲୋଚନା କରାଯାଉଥିଲା । ଏ ପ୍ରସଙ୍ଗରେ ସହକାର, ନବଭାରତ, ରସଚକ୍ର, ପ୍ରଦୀପ, ଭଞ୍ଜ ପ୍ରଦୀପ ପ୍ରଭୃତି ପତ୍ରିକାର ଆଲୋଚନା ଦୃଷ୍ଟିଗୋଚର ହୁଏ । ଏଥିସହିତ ଅନେକ ବିରଳ ପୁସ୍ତକର ସମୀକ୍ଷା ମଧ୍ୟ ଏହି ପ୍ରସଙ୍ଗରେ ପ୍ରକାଶିତ । ଡଗର ପ୍ରଥମ ସଂଖ୍ୟାରୁ କାହାଣୀ ବିଭାଗରେ ଯତୀନ୍ଦ୍ର ମୋହନ ମୁଖାର୍ଜୀଙ୍କର ଡିଟେକ୍ଟିଭ୍ ଉପନ୍ୟାସ 'ବହୁରୂପୀ' ଧାରାବାହିକ ଭାବେ ପ୍ରକାଶିତ ହୁଏ । ଏହି ସଂଖ୍ୟାରେ 'ଭୋଟ୍-ଅପ୍‌ଶୋଷ' ବ୍ୟଙ୍ଗ କବିତାଟି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଯୌନ ଓ ଯୌବନ ବିଭାଗରେ ସ୍ୱାସ୍ଥ୍ୟ, ବିବାହପ୍ରଥା, ଯୌନ ତତ୍ତ୍ୱ ସମ୍ପର୍କିତ ଲେଖାମାନ ପ୍ରକାଶ ପାଉଥିଲା । ଗ୍ରାହକମାନଙ୍କ ରୋଗ ସମ୍ପର୍କିତ ପ୍ରଶ୍ନର ଉତ୍ତର ଦେବାର ବ୍ୟବସ୍ଥା ଥିଲା ।

'ଡଗର'ର 'ମୁଁ କାହିଁକି ଲେଖେଁ' ଏକ ସୃଜନାତ୍ମକ ଏବଂ ଅଭିନବ ପଦକ୍ଷେପ । ୧୪ଶ ବର୍ଷ ପ୍ରଥମ ସଂଖ୍ୟା(୧।୭।୧୯୫୦)ଠାରୁ ଏହି ଶୀର୍ଷକର ଅୟମାରମ୍ଭ । ଯେଉଁ ସଂଖ୍ୟାରେ ଯେଉଁ ସ୍ରଷ୍ଟାଙ୍କର 'ମୁଁ କାହିଁକି ଲେଖେଁ' ପ୍ରକାଶିତ ସେହି ସଂଖ୍ୟାର ପ୍ରଥମେ ତାଙ୍କ ଉପରେ ଏକ ବ୍ୟଙ୍ଗ ଟିପ୍ପଣୀ ଚିତ୍ର ସହ ପ୍ରଦତ୍ତ ହେଉଥିଲା । ପ୍ରଥମ ସଂଖ୍ୟାରେ ମାୟାଧର ମାନସିଂହଙ୍କର 'ମୁଁ କାହିଁକି ଲେଖେ' ସ୍ଥାନିତ ହୋଇଛି ଏବଂ ପତ୍ରିକାର ସମ୍ପାଦକୀୟ ପୃଷ୍ଠାରେ 'ଏହି ସହକାର ତଳେ - ମାନସିଂହ' ବ୍ୟଙ୍ଗ ଟିପ୍ପଣୀ ପ୍ରକାଶିତ । ଏଥିସହିତ ଏକ ଫଳପୂର୍ଣ୍ଣ ସହକାର ବୃକ୍ଷକୁ ମାନସିଂହ ବାମ ହାତରେ ଟେକି ଧରିଥିବା ଏବଂ ଡାହାଣ ହାତର ଅଙ୍ଗୁଳି ନିର୍ଦ୍ଦେଶ କରୁଥିବାର ଚିତ୍ର ପ୍ରଦର୍ଶିତ । ମାନସିଂହଙ୍କ ଉପରେ ବ୍ୟଙ୍ଗ ଟିପ୍ପଣୀରେ କୁହାଯାଇଛି "ଆପଣ ଏବ ଯୁଗର କବିସମ୍ରାଟ ଆଖ୍ୟା ପାଇଛନ୍ତି -

'ଧୂପ' କାଠିରେ ସାରା ଓଡ଼ିଶାକୁ ମହକିତ କରିଦେବାର କିମିଆ ଏକା ଆପଣଙ୍କୁ ଜଣାଥିଲା । ନୀରସା ଦେଶରେ ପାଦପ ପଇଦା କରିବାର ପୌରୁଷ ଏକା ଆପଣଙ୍କର ଅଛି । ତା ନ ହେଲେ ଆଧୁନିକ କବିତା ବହି ବଜାରରେ ବିକ୍ରି ହେବାର ସ୍ୱପ୍ନ ବି ଓଡ଼ିଆ କବି ଦେଖୁ ନ ଥିଲେ । କବି କେବଳ କଳ୍ପନା ବିଳାସୀ ବୋଲି ଯେଉଁ ଦୁର୍ନ୍ନାମ ଥିଲା ଆପଣ ତାହା ଲିଭାଇ ଦେଇ ପାଠକଙ୍କୁ ସିଧା ସହକାର ତଳର ଇଙ୍ଗିତ ଦେଇଛନ୍ତି । ଆପଣ କେବଳ କଳ୍ପନାକୁ ବାସ୍ତବ କରି ନାହାନ୍ତି- ବାସ୍ତବ ସୁଖର ଚରମ ଅନୁଭୂତି ପାଇଁ ଆପଣ ପୁଣି କଳ୍ପନାର ପଥ ଦେଖାଇ ଏବେ ଚରିତ୍ର ଗଠନ ବା ଯୋଗ ସାଧିବା ପାଇଁ ନିର୍ଦ୍ଦେଶ ଦେଲେଣି । ଅତୀତ ସହିତରେ ହିସାବ ନିକାଶ କରି ବର୍ତ୍ତମାନ ସହିତ ଦରଦସ୍ତୁର ଚଳାଇବା ସଂଗେ ସଂଗେ ଭବିଷ୍ୟତରେ ଗଛ ମେ କାଠାଲ୍ ଓଠ ମେ ତେଲ ଦେଇ ବସିବାର ଧୈର୍ଯ୍ୟ ଆପଣଙ୍କର ଅଛି । ଆପଣଙ୍କ ଦମ୍ଭିଲା ବପୁ ଖଣ୍ଡାୟତରେ ଖଣ୍ଡାକୁ ଯୋଗ୍ୟହେଲେ ହେଁ- କଳା ଦେହ ଗୋପକୃଷ୍ଣଙ୍କର କଳାର ସୂଚନା ଦେଇଥାଏ । ଆପଣ ରସି ରସାଇ ପାରନ୍ତି- ଖସି ଖସାଇ ପାରନ୍ତି - ଧସି ଧସାଇ ପାରନ୍ତି - କିନ୍ତୁ ଭୁସି ଭୁସାଇ ପାରନ୍ତି ନାହିଁ- ହାରେ ନିରୀହ ଗୋବିଚାରୀ କବି- ଆପଣଙ୍କୁ ନମସ୍ତେ । ଆପଣଙ୍କୁ ଡଗର ଆଜି ପ୍ରୀତି ଉପହାର ଦେଉଛି -

ଏହି ସହରର ତଳେ,
ପ୍ରିୟାର ପୟରେ କୋୟର ହେବି ମୁଁ
ଯୋଗ ସାଧନାର ବଳେ- ।" (ଡଗର - ୧୪/୧, ୧.୭.୧୯୫୦)

ସେହି ସଂଖ୍ୟାରେ ମାନସିଂହଙ୍କ 'ମୁଁ କାହିଁକି ଲେଖେଁ ' ପ୍ରକାଶିତ । ସେହିକ୍ରମରେ ସେହି ବର୍ଷର ଦ୍ୱିତୀୟ ସଂଖ୍ୟାରେ 'ମାଟିର ମଣିଷ କାଳିନ୍ଦୀ ଚରଣ', ତୃତୀୟ ସଂଖ୍ୟାରେ 'ସର୍ବହରାର କବି ସଚ୍ଚି ରାଉତରାୟ', ଚତୁର୍ଥ ସଂଖ୍ୟାରେ 'ଅମୃତର ସନ୍ତାନ ଗୋପୀନାଥ' କ୍ରମରେ ସେହି ସ୍ରଷ୍ଟାମାନଙ୍କର 'ମୁଁ କାହିଁକି ଲେଖେଁ ' ପ୍ରକାଶିତ । ଏତଦ୍‌ବ୍ୟତୀତ ଚନ୍ଦ୍ରମଣି ଦାସ, ସରଳା ଦେବୀ, କୁଞ୍ଜବିହାରୀ ଦାଶ, ରାଧାମୋହନ ଗଡ଼ନାୟକ, ସୁରେନ୍ଦ୍ର ମହାନ୍ତି ପ୍ରଭୃତି ଲେଖକଙ୍କର ମୁଁ କାହିଁକି ଲେଖେ ମଧ୍ୟ ସ୍ଥାନିତ ହୋଇଥିଲା । 'ମୁଁ କାହିଁକି ଲେଖେଁ 'ଶୀର୍ଷକର ରଚନାଗୁଡିକ ବେଶ୍ ଲୋକପ୍ରିୟ ଏବଂ ଓଡ଼ିଆ ସାହିତ୍ୟର ଅମଳିନ ସମ୍ପଦ ରୂପେ ଜାଜ୍ଜ୍ୱଲ୍ୟମାନ ।

ଡଗରକୁ ଲୋକାଭିମୁଖୀ କରିବା ପାଇଁ 'ଡଗର କାହିଁକି ପଢ଼ିବେ' ଶୀର୍ଷକରେ ସମ୍ପାଦକ ନିମ୍ନଲିଖିତ କାରଣଗୁଡିକ ଦର୍ଶାଇଥିଲେ । ଯେଉଁଗୁଡିକ ସାଧାରଣତଃ ନିର୍ମଳ ହାସ୍ୟର ଖୋରାକ ଯୋଗାଏ ।

୧) ଆପଣଙ୍କ ମନ ଭଲ ନାହିଁ - ଡଗର ଆପଣଙ୍କୁ ହସାଇ ହସାଇ ଭୁଲାଇ ଦେବ । (ମଜାକଥା, ହସଖୁସି ବିଭାଗ)

୨) ଆପଣଙ୍କ ସମୟ କଟୁନାହିଁ- ଡଗର କଥା ଛଳରେ ଆପଣଙ୍କୁ ବହଲାଇଦେବ । (କାହାଣୀ ବିଭାଗ)

୩) ଆପଣଙ୍କ ଦେହ ଭଲ ନାହିଁ - ଡଗର ଆପଣଙ୍କୁ ସୁପଥ୍ୟ ଦେଇ ସୁସ୍ଥ କରି ଦେବ । (ଯୌନ ଓ ଯୌବନ ବିଭାଗ)

୪) ଆପଣ ଜୀବନ ସଂଗ୍ରାମରେ ହତାଶ ହୋଇ ପଡିଛନ୍ତି - ଡଗର ଆପଣଙ୍କର ଉଜ୍ଜ୍ୱଳ ଭବିଷ୍ୟତର ରଶ୍ମୀରେଖା ଦେଖାଇ ଉଦ୍‌ଜୀବିତ କରିବ । (ଭାଗ୍ୟଫଳ ବିଭାଗ)

୫) ଆପଣ ବେକାର ହୋଇ ବସିଛନ୍ତି - ଡଗର ଆପଣଙ୍କୁ ଦାନା ଯୋଗାଇ ଦେବ । (ଶବ୍ଦ ଧନ୍ଦା ବିଭାଗ)

୬) ଆପଣଙ୍କ ପିଲାଏ ମନଲଗାଇ ପାଠ ପଢୁନାହାନ୍ତି- ଡଗର ତାଙ୍କୁ ବାଟକୁ ନେଇ ଆସିବ । (ନାଗବାଚା ବିଭାଗ)

୭) ଦେଶର ଉକ୍ରଟ ରାଜନୀତି ଆପଣଙ୍କ ଜୀର୍ଣ୍ଣ ହେଉନାହିଁ - ଡଗରର ସମ୍ପାଦକୀୟ ଆପଣଙ୍କ ପାଇଁ ଖାଣ୍ଟି ସନ୍ଧବ ଲବଣର ବ୍ୟବସ୍ଥା କରିବ ।

'ଡଗର କାହିଁକି ପଢ଼ିବେ'ରୁ ଡଗର ସମ୍ପର୍କରେ ସବିଶେଷ ବିବରଣୀ ପ୍ରାୟତଃ ଜଣାପଡିଥାଏ । ଶବ୍ଦଧନ୍ଦା ବିଭାଗ ପାଇଁ ୨୫ ଟଙ୍କାର ପୁରସ୍କାର ଘୋଷଣା କରାଯାଉଥିଲା । ଏହି ଶବ୍ଦଧନ୍ଦାଗୁଡିକ ମୁଖ୍ୟତଃ ନିତ୍ୟାନନ୍ଦ ମହାପାତ୍ର ପ୍ରସ୍ତୁତ କରୁଥିଲେ ।

'ଯେସାକୁ ତେସା' ଶୀର୍ଷକରେ ବିଭିନ୍ନ ପ୍ରଶ୍ନର ବ୍ୟଙ୍ଗାତ୍ମକ ଉତ୍ତର ଦିଆଯାଉଥିଲା । ଏହାର ଲେଖକ ଥିଲେ ଚୁଚୁନ୍ଦ୍ରି ଚନ୍ଦ୍ର, ଯାହାକି ନିତ୍ୟାନନ୍ଦଙ୍କର ଏକ ଛଦ୍ମନାମ । 'ଯେସାକୁ ତେସା'ର ନିମ୍ନ ଉଦ୍ଧୃତିରୁ ଏହାର ରସାଳତାକୁ ଏବଂ ଶାଣୀତ ଶାବ୍ଦିକତାକୁ ଅନୁଭବ କରାଯାଇପାରେ ।

ପ୍ର - ପ୍ରେମ ଆଉ ପ୍ରୀତି ଏକ ଜାତୀୟ ଶବ୍ଦ ହେଲେ ମଧ୍ୟ ଭାବରେ ବିଭିନ୍ନତା ଥାଏ କି ?

ଉ - ପ୍ରେମଟା ଆଲୁଅରେ ଆଉ ପ୍ରୀତିଟା ଅନ୍ଧାରରେ ହୁଏ ।

ପ୍ର - ବିବାହିତ ଯୁବକ ଯୁବତୀଙ୍କ ପ୍ରଣୟ ଓ ଅବିବାହିତ ଯୁବକ ଯୁବତୀଙ୍କ ପ୍ରଣୟ ମଧ୍ୟରେ ପ୍ରଭେଦ କେଉଁଠି ?

ଉ - ପ୍ରଥମଟିରେ ପୁରୁଷର ଲାଭ (ଯୌତୁକ ଗ୍ରହଣରେ)- ଦ୍ୱିତୀୟଟିରେ ସ୍ତ୍ରୀର ଲାଭ (ଉପହାରାଦିରେ) । (ଡଗର -୧୪/୭)

'ନାଗବାଚା' ଦଳରେ ୧୬ ବର୍ଷରୁ କମ୍ ବୟସର ପିଲାମାନଙ୍କୁ ଅନ୍ତର୍ଭୁକ୍ତ କରାଯାଉଥିଲା । ଏମାନଙ୍କର ସୃଜନୀ ଶକ୍ତିର ଶ୍ରୀବୃଦ୍ଧି ସାଧନ ସହିତ କିଶୋରପ୍ରାଣରେ ନବଜାଗରଣ, ଜ୍ଞାନର ପରିସର ବୃଦ୍ଧି, ଡଗର ମଧ୍ୟସ୍ଥତାରେ ପତ୍ର ବିନିମୟ ଦ୍ୱାରା ପରସ୍ପର ଭାବର ଆଦାନ ପ୍ରଦାନ, ମାତୃଭାଷା ଓ ସାହିତ୍ୟ ପ୍ରତି ଅନୁରାଗ ଜାଗ୍ରତ ତଥା ସତ୍ୟ,

ସେବା, ଅହିଂସା ବ୍ରତ ସାଧନରେ ଉଦ୍‌ବୁଦ୍ଧ କରିବା ଏହି ବିଭାଗର ମୂଳଲକ୍ଷ୍ୟ । ଡଗର ପ୍ରଥମ ବର୍ଷ ୧୫ଶ ସଂଖ୍ୟାରୁ ନାଗବାଚା ଦଳଙ୍କ ନାମ ମୁଦ୍ରିତ ହେଉଥିଲା ଯଥା:- ୧)ଶ୍ରୀମାନ ସୂର୍ଯ୍ୟକାନ୍ତ ଦ୍ୱାଶ, ଭବାନୀପାଟଣା ହାଇସ୍କୁଲ, କଳାହାଣ୍ଡି, ୨) ଶ୍ରୀମାନ ଦେବେନ୍ଦ୍ରନାଥ ପଟ୍ଟନାୟକ, ନୂତନ ଛାତ୍ରାବାସ, ବାରିପଦା, ୩) ଶ୍ରୀମାନ ଅନାଦୀ ଚରଣ ଦାଶ, ନୂତନ ଛାତ୍ରାବାସ, ବାରିପଦା । ଏହି ତାଲିକା କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇଥିଲା । 'ନାଗବାଚା' ଦଳରେ ଅନ୍ତର୍ଭୁକ୍ତ ହେବା ପାଇଁ ଏକ 'ନାଗବାଚା କୁପନ' ଡଗରରେ ପ୍ରକାଶ ପାଉଥିଲା । ଏହି କୁପନଟି ହେଲା -

## ନାଗବାଚା କୁପନ :

ଅଜା,

ଆମ୍ଭେମାନେ ଆପଣଙ୍କ ନାତି ହେବାକୁ ଚାହୁଁ । ଆମ୍ଭମାନଙ୍କ ବୟସ ୧୮ ବର୍ଷରୁ ଊଣା । ଆମ୍ଭମାନଙ୍କ ଜନ୍ମ ତାରିଖ ତଳେ ଦେଲୁଁ । ଆମ୍ଭେମାନେ ସତ୍ୟ, ସାହାସ ଓ ସେବା ଦ୍ୱାରା ଅହିଂସା ପାଳନ କରିବାକୁ ଚେଷ୍ଟା କରିବୁଁ । ଦୟାକରି ନାଗବାଚା ଦଳରେ ଆମ୍ଭମାନଙ୍କ ନାମ ଲେଖାଇ ଦେବେ । ଆମ୍ଭେମାନେ ପ୍ରତ୍ୟେକ ଏଥିସହ ଚାନ୍ଦା ନିମନ୍ତେ ଟ୦୯ ଲେଖାଏଁ ଡାକଟିକଟ ଦେଲୁଁ । ଜୟହିନ୍ଦ୍ । ସ୍ନେହର ନାତି ।

ନିତ୍ୟାନନ୍ଦଙ୍କ ଜାତୀୟବାଦୀ ଚେତନାରେ ଉଦ୍‌ବୁଦ୍ଧ ହୋଇ ନାଗବାଚା ଦଳ ଚାନ୍ଦା ଦେଇ ନାଗବାଚା ଫଣ୍ଡ ସୃଷ୍ଟି କରିଥିଲେ । ଏହି ଫଣ୍ଡ ଦେଶସେବା ତଥା ବିଛିନ୍ନାଞ୍ଚଳ ଉତ୍କଳର ଉନ୍ନତିରେ ବ୍ୟୟିତ ହୋଇଥିବା ଜଣାପଡେ । ବର୍ତ୍ତମାନ ଓଡ଼ିଶାର ଅନେକ କୃତବିଦ୍ୟ ସାରସ୍ୱତ ସାଧକ ଏକଦା ଏହି ନାଗବାଚା ଦଳର ଅନ୍ତର୍ଭୁକ୍ତ ହୋଇ ନିଜର ଲେଖନୀ ମୂନକୁ ପରୀକ୍ଷା କରିବାର ଅପୂର୍ବ ସୁଯୋଗ ଲଭିଥିଲେ ।

ଡଗରର ବିଦ୍ରୁପାତ୍ମକ କବିତାଗୁଡିକ ବେଶ୍ ଲୋକପ୍ରିୟ ଓ ଚିତ୍ତାକର୍ଷକ ଥିଲା । ଲାଳିକା ରଚନାର ଏକ ଅନବଦ୍ୟ ପରମ୍ପରା ଡଗର ମାଧ୍ୟମରେ ସୃଷ୍ଟିହୋଇଥିଲା । ଏହି ପ୍ରସଙ୍ଗରେ 'ଆଗୋ ପ୍ରିୟ ସହି', 'ଫସିଆରେ ଫୁଲ ରସିଆ', 'ପୁଲିସ ପ୍ରେମ', 'ବାଲିଗଡିଆ ଚମ୍ପୁ' ପ୍ରଭୃତି ଅସଂଖ୍ୟ ଲାଳିକା ନିତ୍ୟାନନ୍ଦଙ୍କ ମହନୀୟ କବି ପ୍ରତିଭାର ଅପୂର୍ବ ଦୃଷ୍ଟାନ୍ତ । ବ୍ୟଙ୍ଗାତ୍ମକ କବିତା ରଚନାରେ କୁବେର ଦଳେଇ ଏବଂ ବ୍ୟଙ୍ଗାତ୍ମକ ଗଳ୍ପ ଲେଖିବାରେ ସୁନୀଲ ମିଶ୍ର ଓ ଫତୁରାନନ୍ଦଙ୍କ ଅବଦାନ ଅନନ୍ୟ । 'ଡଗର' (୫/୧୦)ରେ ମଠର ମହନ୍ତ ଓ ସେମାନଙ୍କ ରକ୍ଷିତା ମାତାମାନଙ୍କର କୁତ୍ସିତ ସମାଜଦ୍ରୋହୀ କାର୍ଯ୍ୟକୁ ଲକ୍ଷ୍ୟକରି କୁବେର ଦଳେଇଙ୍କ ମହନ୍ତ କବିତା ବେଶ୍ ବ୍ୟଙ୍ଗାତ୍ମକ ।

- ପୁଅଝିଅ ନାହିଁ ମହନ୍ତଙ୍କ ଖାଲି
ଚେଲାଗୋଟା କେତେ ପଟ ପୋଷ
ବାଡୁଅ ରହନ୍ତି ମହାରାଜା ପୋଷି
ବଛା ବଛା ମାତା ଆଠ ଦଶ

ଡଗରର ପ୍ରତିଟି ସଂଖ୍ୟାରେ ସ୍ୱନାମରେ ଏବଂ ଛଦ୍ମନାମରେ ନିତ୍ୟାନନ୍ଦ ମହାପାତ୍ରଙ୍କ ଲେଖା ପ୍ରକାଶିତ । ଅଜସ୍ର ଗଳ୍ପ ଓ କବିତା ଡଗର ପୃଷ୍ଠାରେ ସେ ଛାଡି ଯାଇଛନ୍ତି । କୁହାଳିଆ, ଶ୍ରୀ ଅବଧୂତ, ଶ୍ରୀଅନାମ, ଚୁଟିଆ ମୂଷା, ନକଲ ନବିସ, ହେବେ ମନ୍ତ୍ରୀ, ନଟବର, କଲେଜ ଛାତ୍ର ପ୍ରଭୃତି ଛଦ୍ମନାମରେ ସେ ଲେଖୁଥିବାର ଜଣାପଡେ । ଡଗରର ପ୍ରତିଟି ସଂଖ୍ୟାରେ ଜଣେ ଜଣେ ମହାପୁରୁଷଙ୍କ ଫଟୋ ସହିତ ସଂକ୍ଷିପ୍ତ ପରିଚୟ ଲିପିବଦ୍ଧ ହେଉଥିଲା । ପ୍ରଥମ ସଂଖ୍ୟାରେ ନଟବର ଶ୍ରୀ କୃଷ୍ଣ ପ୍ରସାଦ ବସୁ, ଦ୍ୱିତୀୟ ସଂଖ୍ୟାରେ ଜନନେତା ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସ, ତୃତୀୟ ସଂଖ୍ୟାରେ କୁମାରୀ ପ୍ରତିମା ରାୟ ଚୌଧୁରୀ, ଚତୁର୍ଥ ସଂଖ୍ୟାରେ ନାଟ୍ୟ ସମ୍ରାଟ ଅଶ୍ୱିନୀ କୁମାର ଘୋଷଙ୍କ ଫଟୋ ଓ ସଂକ୍ଷିପ୍ତ ପରିଚୟ ପ୍ରକାଶ ପାଇଥିଲା ।

ନିତ୍ୟାନନ୍ଦ ମହାପାତ୍ର ଡଗରର ସମ୍ପାଦକ ମଣ୍ଡଳୀଙ୍କ ନାମ ପ୍ରଥମ ବର୍ଷ ୪ର୍ଥ ସଂଖ୍ୟାରେ ନିମ୍ନ ପ୍ରକାରେ ପ୍ରଦାନ କରିଥିଲେ ।

ସମ୍ପାଦକୀୟ - ଦୀର୍ଘଗ୍ରୀବ
ମଜାକଥା- କୁହାଳିଆ
ଲାଳିକା- କପିବର
ହସଖୁସି- ନକଲନବିସ
କାହାଣୀ- ଶୁକଦେବ
ନାଗବାଚାଦଳ- ପ୍ରିୟଅଜା
ଯୌନ ଓ ଯୌବନ- ପୁଷ୍ପଧନ୍ୱା
ଭାଗ୍ୟଫଳ - ବୃହସ୍ପତି
କଳାକୌତୁକ- ଚିତ୍ରରଥ
ବହିପତ୍ର- ଶୁକ୍ରାଚାର୍ଯ୍ୟ
ଚିଟାଉ- ଗଣପତି
ଶବ୍ଦଧନ୍ଦା- ନାଗରାଜ
ଖବର ଅନ୍ତର- ଚାର

ଏହି ସମସ୍ତ ନାମକରଣ ହାସ୍ୟ ଓ ବ୍ୟଙ୍ଗ ସୃଷ୍ଟିରେ ସଫଳ ହୋଇଛି । ଡଗର ସମକାଳୀନ ଓଡ଼ିଶାର ପୁରପଲ୍ଲୀରେ ବିଶେଷ ପରିଚୟ ଲାଭ କରିଥିଲା । ଏହି ମହନୀୟ

ପତ୍ରିକାକୁ ଆଶିର୍ବାଦ ଜଣାଇ କବିଶେଖର ଚିନ୍ତାମଣି ମହାନ୍ତି ଲେଖନ୍ତି -

ସ୍ୱାଗତ ନବୀନ ବନ୍ଧୁ ହେ ଶିଶୁ ଡଗର
ଅର୍ପେ ନବୋତ୍କଳ କର୍ଣ୍ଣେ ମଙ୍ଗଳ ମନ୍ତର ।
ରାଜାଙ୍କର ହୁଅ ଦୂତ, ପ୍ରଜାଙ୍କର ମିତ୍ର
ଦେଖାଅ ଉନ୍ନତ ନବ ସାହିତ୍ୟର ଚିତ୍ର ।
ହୁଅ ତୁମେ ଦୀର୍ଘଜୀବୀ ସିଦ୍ଧ ମନୋରଥ
ପୁଷ୍ପାସ୍ତୃତ ହେଉ ତବ ପୁଣ୍ୟ ଗତିପଥ ।
ଲଭ ଶିଶୁ ସମାଦର ପ୍ରାସାଦେ କୁଟୀରେ
ବିଶ୍ୱବାଣୀ ଆଶିର୍ବାଦ ବର୍ଷୁ ତବ ଶିରେ । (ଡଗର- ୧/୧)

ନବରାମାୟଣ ଶୀର୍ଷକରେ ଏକ ବ୍ୟଙ୍ଗ ରାମାୟଣ ପ୍ରକାଶନର ବିଜ୍ଞାପନ ଡଗର ଦ୍ୱିତୀୟ ସଂଖ୍ୟାରୁ ପ୍ରକାଶ ପାଇ ପାଠକଙ୍କ ଉତ୍ସୁକତା ବଢ଼ାଇଥିଲା । ଏହି ନବରାମାୟଣ କାବ୍ୟଟି ପଞ୍ଚମ ସଂଖ୍ୟାରେ ପ୍ରକାଶଲଭି ଉତ୍କର୍ଷତାର କୋଟିକୁ ସ୍ପର୍ଶ କରିଥିଲା । ମୋ ବିଚାରରେ ଅମିତ୍ରାକ୍ଷର ଛନ୍ଦରେ ରଚିତ ଏହା ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ବ୍ୟଙ୍ଗ କାବ୍ୟ । ଏହାର କାଣ୍ଡ ବିଭାଗଗୁଡିକ ହାସ୍ୟ ଉଦ୍ରେକକାରୀ । ଯେମିତି ବେଙ୍ଗଳାଚରଣ (ମଙ୍ଗଳାଚରଣ), ଦୋମୁନାକାଣ୍ଡ, ତେଶିରାକାଣ୍ଡ ଇତ୍ୟାଦି । ବେଙ୍ଗଳାଚରଣର ପ୍ରାରମ୍ଭରେ କବିଙ୍କ ବକ୍ତବ୍ୟ-

ଉତ୍କଳ ଭାରତି ମାଗୋ, ଝଙ୍କଡ ବାସିନୀ
ପୂଜିବାକୁ ତୋର ପଦ ବଳାଇଛି ମନ
ମତାର୍ଣ୍ଣ ଫେଶନେ, ମାତ୍ର ପୂଜା ଆୟୋଜନ
କରୁଁ କରୁଁ ପାଇଲିଣି ବହୁ ତକଲିଫ
ମୁଣ୍ଡର ବରଫ ତଳ ହେଲାଣି ବରଫ
X X X X X
କୁତ୍ସା ମୋ କଲମ ମୁନ ଓକାଳୁ ନିରତେ
ନିପଟ, ନିରୋଳା, ଛଙ୍କା ବ୍ୟଙ୍ଗ ରସାବଳୀ
ଯାହାଗିଳି ସଡ଼ସଡ ରସିକ ଉତ୍କଳୀ
ଦଣ୍ଡେ ହେଲେ ପେଟଜ୍ୱାଳା ପିଠି ଜ୍ୱାଳା ଭୁଲି
ହାସ୍ୟଲାସ୍ୟ-ରସାମୋଦେ ଉଠନ୍ତୁ ଉଲ୍ଲସି ।

'ଡଗର' ମାଧ୍ୟମରେ ଲାଳିକା ଏକ ନୂତନ ରୂପ ଗ୍ରହଣ କରିଥିଲା । ଛନ୍ଦର ଅନୁକୃତି ଭିତରେ ଛନ୍ଦହୀନ ଛଦ୍ମ ବିଦ୍ରୁପ ଲାଳିକାର ମୁଖ୍ୟ ବିଭାଗ । ପ୍ରତିଷ୍ଠିତ ଓ ସମାହୃତ ଛାନ୍ଦର ରାଗ ଓ ତାଳକୁ ଲୟକରି ପରିଚିତର ଛାଞ୍ଚ ଭିତରେ ଅପରିଚିତକୁ ପରିବେଷଣ କରିବା ପାଇଁ ଲାଳିକା ଏକ ଉତ୍କୃଷ୍ଟ ମାଧ୍ୟମ ରୂପେ ସ୍ୱୀକୃତ ହୋଇଅଛି । ବିଶେଷତଃ ସାମାଜିକ ଓ

ରାଜନୈତିକ ପଙ୍ଗୁତା, ଅବିଚାର, ବ୍ୟବିଚାର ସମୂହର ମୂଳୋତ୍ପାଟନ ପାଇଁ ସାଧାରଣ ମଣିଷ ମନରେ ଚାଞ୍ଚଲ୍ୟ ସୃଷ୍ଟି କରିବା ଲାଳିକାର ଆଭିମୁଖ୍ୟ । ପ୍ରାଚୀନ ଛାନ୍ଦର ଛାଞ୍ଚକୁ ଧରି ଲାଳିକାର ସୃଷ୍ଟି ଅଭିନନ୍ଦନୀୟ ଓ ପ୍ରଶଂସାଯୋଗ୍ୟ । 'ଡଗର'ରେ ପ୍ରକାଶିତ ଗୋପୀଙ୍କ ଶୋକ, ହନୁ ମୋର ନାଟ କରିବ ଆଦି ଲାଳିକାଠାରୁ ଆରମ୍ଭ କରି ୧୯୬୧ ମସିହା ରାଧାନାଥ ବିଶେଷାଙ୍କରେ ପ୍ରକାଶିତ 'ନବ ଦରବାର' ଲାଳିକା ମାଧ୍ୟମରେ ଓଡ଼ିଆ ସାହିତ୍ୟର କ୍ରମିକ ଉନ୍ନତି ଅନୁଭବଯୋଗ୍ୟ । 'ହନୁ ମୋର ନାଟ କରିବ' ଶୀରୋନାମାରେ ସମକାଳୀନ ରାଜନୈତିକ ଓ ସାମାଜିକ ପ୍ରେକ୍ଷାପଟକୁ ବିଦ୍ରୂପ କରି ବହୁ ଲାଳିକା 'ଡଗର'ରେ ଧାରାବାହିକ ଭାବରେ ଆତ୍ମପ୍ରକାଶ କରିଛି । ଏ ସମସ୍ତ ଲାଳିକାର ସ୍ରଷ୍ଟା 'ରସରାଜ' ବା ଡଗରର ସମ୍ପାଦକ ନିତ୍ୟାନନ୍ଦ ମହାପାତ୍ର । ଏହି ଲାଳିକାଗୁଡିକର ଛନ୍ଦ ବୈଚିତ୍ର୍ୟ ସହିତ ଭାବ ବୈଚିତ୍ର୍ୟର ଅପୂର୍ବ ସଂଶ୍ଲେଷ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । 'ଗୋପୀଙ୍କ ଶୋକ', ଯୁଦ୍ଧ ଲାଳିକା, ଭୁଆଶୁଣୀର ଛିଙ୍କ, ଗାଁଉଲି ପେରେମ, ଦନ୍ତ ପ୍ରୀତି, ପୁଲିସ ପ୍ରେମ, ରାମପକ୍ଷୀ ମହାତ୍ମ୍ୟ, ବାଲି ଗଡିଆ ଚମ୍ପୂ ଆଦି ଲାଳିକା ଅନେକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବିଷୟବସ୍ତୁକୁ ଲାସ୍ୟ ମଧୁର ଧାରାରେ ପରିବେଷଣ କରିଛି । ପୁଲିସ ପ୍ରେମରେ ଆଧୁନିକ ଭାରତର ଶାନ୍ତିଶୃଙ୍ଖଳା ରକ୍ଷାକାରୀ ପୋଲିସମାନଙ୍କର ଅପକ୍ରିୟାର ବିଦ୍ରୂପ କରାଯାଇଛି ।

ରେ, ପୁଲିସ, ତୋରେ କହିବି କିସ !
ଦିନେ ନ ଦେଖା ତୋ ହୁରୁଡା ନିଶ ! !
(ବିନାମେଘେ ସୃଜିପାରୁ କୁଳୀଶ)
ମୁଁ ମଫସଲି, ସେ ରାଜ କଚେରୀ
ତୁହି ଦେଲୁ ସିନା ପରଚେ଼ କରି ।
ପୁଲିସିରେ, ତୋର ଧରୁଚି ଓଠ
ଆଉଦିନେ ଲଗାନାହିଁ ତୋ ଚୋଟରେ ।

ଏହି ପ୍ରସଙ୍ଗରେ ରଜତ ଜୟନ୍ତୀ ବିଶେଷାଙ୍କରେ ପ୍ରକାଶିତ ପୁଲିନ ବିହାରୀ ରାୟଙ୍କ ଲିଖିତ 'ତରୁଣ କିରାଣୀ ଆଶା' ଲାଳିକାକୁ ଉଦ୍ଧୃତ କରାଯାଇପାରେ । ଯାହାକି ମାନସିଂହଙ୍କର 'ତରୁଣ କବିର ଆଶା'ର ଲାଳିକା -

ଏଡେ ବିରାଟ ସେ, ପାଏ କି ଭାଷା
ହାୟରେ ତରୁଣ କିରାଣୀ ଆଶା !
ଭାବିଥିଲି ଯିବି ବିଦେଶେ କାହିଁ,
Foreign Degree ଆଣିବା ପାଇଁ,
ଚଢ଼ି ବ୍ୟୋମଯାନ ବିହଗ ତୁଲେ,
ବାହି ଗୋ ଦୂରେ ।

ଦାମୀ ସିଗାରେଟ ମୁହଁରେ ଗୁଞ୍ଜି
ଧରି ମୋଟା କିଛି ପକେଟ ପୁଞ୍ଜି
ଧୂପ ଧୂଆଁ ପରି ଯାଆନ୍ତି ମିଶି
ମୁଁ ଦଶ ଦିଶି ।

'ଡଗର'ର ଆଉ ଏକ ଆକର୍ଷଣ 'ରଙ୍ଗରସ' ବିଭାଗ । ଏଥିରେ ହାସ୍ୟରସ ସମ୍ବଳିତ ଉପଦେଶାତ୍ମକ ଗଳ୍ପ ଓ କବିତା ପରିବେଷଣ 'ଡଗରର' ଏକ ସାର୍ଥକ ପରିଚୟ । ଓଡ଼ିଆ ଭାଷାର ଅନ୍ୟ କୌଣସି ପତ୍ରିକାରେ ଏହି ସାଧୁ ଉଦ୍ୟମ ଏକାନ୍ତ ଦୁର୍ଲ୍ଲଭ । ଓଡ଼ିଆ ସାହିତ୍ୟରେ ଯେଉଁ କେତେଜଣ ହାସ୍ୟରସ ଗଳ୍ପ ସ୍ରଷ୍ଟା ଦେଖାଯାଆନ୍ତି ତାଙ୍କର ଭିତ୍ତିଭୂମି 'ଡଗର' ଦ୍ୱାରା ହିଁ ସୁପ୍ରତିଷ୍ଠିତ । ଏହି ପର୍ଯ୍ୟାୟର ଗଳ୍ପ ଓ କବିତାମାନଙ୍କରେ ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ସମସ୍ୟା ସମୂହର ଗଭୀର ମନନ ଓ ବିଶ୍ଲେଷଣ କରାଯାଇଛି । ଏହି ପ୍ରସଙ୍ଗର ରଚନାଗୁଡ଼ିକରେ ନିହିତ ଗଭୀର ଅନ୍ତର୍ଦୃଷ୍ଟି, ସମସ୍ୟା ସଚେତନତା ଓ ସାହିତ୍ୟିକ ରୁଚିବୋଧ ସୃଷ୍ଟିଗୁଡ଼ିକୁ ସର୍ବଜନୀନ ଏବଂ ସର୍ବକାଳୀକ କରିପାରିଛି ଏବଂ ଏହା ହିଁ ଅନ୍ୟ ପତ୍ରିକା ଅପେକ୍ଷା 'ଡଗର'ର ବିଶେଷତ୍ୱ । ସମସ୍ୟା ବିଧାୟକ ସଂସଦ, କଟକ ନଗର ବଡ ମହରଗ, ପାରଡା ପୋକ, ଦାଲଦାର କରାମତି, ସୁଟକେଶ୍ ଟେଲିଫୋନ, ଭୂଇଁଫୋଡ ନେତାଙ୍କ ବନ୍ୟାଞ୍ଚଳ ଉଦ୍‌ବୋଧନ, ନଈବଢ଼ି କାନ୍ଦଣା, ପୁରୁଷ ନାରୀଙ୍କଠାରୁ ଅଧିକ ଉଦାର, ଅଲ୍ ଇଣ୍ଡିଆ ଲଭ୍ ଇନ୍ସୁରେନ୍ସ କର୍ପୋରେସନ ଲିମିଟେଡ୍, ଖୋସାମଦ୍ର ବଣ - ଏକ ସଂଶୋଧନ, ଧର୍ମ ବକ ଓ କେଞ୍ଚୁଆ କବି, କବି ଖୁଣ୍ଟ, ଭାରତରେ ପଙ୍ଗପାଳ, କେଚଟ ସୁଣ୍ଡା, ନାରି ଚାରି ଜାତି ଆଦି କବିତା ଓ ଗଳ୍ପମାନଙ୍କୁ ଏହି ପ୍ରସଙ୍ଗରେ ସ୍ମରଣ କରାଯାଇପାରେ । ମର୍ଯ୍ୟାଦାବନ୍ତ କବିତା ଗଳ୍ପ ଓ ମନନଶୀଳ ପ୍ରବନ୍ଧ ଲେଖୁଥିବା ଅନେକ ସ୍ରଷ୍ଟାଙ୍କ ହାସ୍ୟ ଓ ବ୍ୟଙ୍ଗ ରଚନା ଡଗରରେ ପ୍ରକାଶ ପାଉଥିଲା । ଏହି ପ୍ରେକ୍ଷାପଟରେ ଜାନକୀ ବଲ୍ଲଭ ମହାନ୍ତି(ଭରଦ୍ୱାଜ) ଓ କୃଷ୍ଣଚରଣ ବେହେରାଙ୍କ ଡଗରରେ ପ୍ରକାଶିତ କିଛି ରଚନାକୁ ଉଦ୍ଧୃତ କରାଯାଇପାରେ -

ଦୁନିଆଁରେ ମୋର ନାହିଁ ପ୍ରେଷ୍ଟିଜ୍-ନାହିଁ ଆଗୋ ପୋଜିସନ
ଅରଜି ନାହିଁ ବି କିଛି କ୍ୱାଲିଫିକେସନ
ହେବା ପାଇଁ ପ୍ରିୟା କେବେ ତୁମ ହଜ୍‌ବ୍ୟାଣ୍ଡ
ଭାଗାବଣ୍ଡ ମୁହିଁ-ପୁରାପୁରି ଭାଗାବଣ୍ଡ ।

(ଭାଗାବଣ୍ଡ -କୃଷ୍ଣଚରଣ ବେହେରା)

ନୁହଁ ସାରୁ ବାଇଗଣ କନ୍ଦମୂଳ ଅଥବା କୁନ୍ଦୁରି
ହେ ନିଖିଳ ଜଗତ ବିହାରୀ

ତୁମେ ଗୋଲଆଳୁ
ପରିଚୟ ତୁମ ସାଥେ ମୋର
ଆଶୈଶବୁ ଅତି ବାଲ୍ୟକାଳୁ ।'

(ଗୋଲଆଳୁ - ଜାନକୀ ବଲ୍ଲଭ ମହାନ୍ତି)

'ଡଗର'ରେ ଅନେକ ଗବେଷଣାତ୍ମକ ଓ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ପ୍ରକାଶ ହୋଇଥିବା ଦେଖାଯାଏ । ଚିନ୍ତାମଣି ବେହେରାଙ୍କ 'ଅଭ୍ୟୁଦୟ ସାହିତ୍ୟ', ସରଳା ଦେବୀଙ୍କ ଭଞ୍ଜ ସାହିତ୍ୟ, ଗୌରୀକୁମାର ବ୍ରହ୍ମାଙ୍କର ତଥାପି କ'ଣ କଳସା ପ୍ରଥମ ରଚନା, ଜାନକୀ ମହାନ୍ତିଙ୍କର ଓଡ଼ିଆ ସାହିତ୍ୟର ସବୁଜ ଯୁଗ, ଲକ୍ଷ୍ମୀନାରାୟଣ ସାହୁଙ୍କ 'ମୋ ଜୀବନ କଥା (ଆତ୍ମଜୀବନୀ), ଚିତ୍ତରଞ୍ଜନ ଦାସଙ୍କର 'ସାଗର ଯାତ୍ରୀ'(ଭ୍ରମଣ କାହାଣୀ) ପ୍ରଭୃତି ଗଦ୍ୟ ରଚନା 'ଡଗର'ର ଅନୁପମ ଅବଦାନ ।

'ଡଗର' ଲାଳିକା ପାରୋଡି ବା ବ୍ୟଙ୍ଗ ସାହିତ୍ୟର କେବଳ ପୃଷ୍ଟପୋଷକତା କରୁ ନ ଥିଲା ବରଂ ଏହା ଗାମ୍ଭୀର୍ଯ୍ୟପୂର୍ଣ୍ଣ ବିଦଗ୍ଧ ସାହିତ୍ୟକୁ ମଧ୍ୟ ଉଚିତ ଦିଗ୍‌ଦର୍ଶନ ଦେଇଥିଲା । ଓଡ଼ିଆ ସାହିତ୍ୟର ପ୍ରତିଷ୍ଠିତ ଅନେକ କବି ସାହିତ୍ୟିକଙ୍କ ପ୍ରାରମ୍ଭିକ ପର୍ଯ୍ୟାୟର ଉତ୍କୃଷ୍ଟ କବିତା ଓ ଗଳ୍ପ ଡଗର ପୃଷ୍ଠାରେ ପ୍ରକାଶିତ । ସେମାନଙ୍କ ମଧ୍ୟରୁ ସଚ୍ଚି ରାଉତରାୟ, ନିତ୍ୟାନନ୍ଦ ମହାପାତ୍ର, ବିନୋଦ ଚନ୍ଦ୍ର ନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ ପ୍ରମୁଖ ପ୍ରଧାନ । ସଚ୍ଚି ରାଉତରାୟ ତାଙ୍କ କବି ଜୀବନରେ ଓଡ଼ିଶାରେ କାବ୍ୟ କବିତାର ଆଙ୍ଗିକ ଓ ଆତ୍ମିକ ପରିବେଶରେ ଉଲ୍ଲେଖଯୋଗ୍ୟ ବିପ୍ଳବ ଆଣିଛନ୍ତି । 'ଡଗର'ର ପ୍ରଥମ ତିନି ବର୍ଷରେ ରାଉତରାୟଙ୍କର କେତେକ କବିତା ପ୍ରକାଶିତ ହୋଇଥିଲା । ଡଗର ୧ମ ବର୍ଷ ୧୦-୧୧ ସଂଖ୍ୟାରେ ସଚ୍ଚି ରାଉତରାଙ୍କ 'ଦୁଇ ପଥ' କବିତା ପ୍ରକାଶିତ । ଏଥିରେ କବି ରୋମାଣ୍ଟିକ ଭାବାଳୁତାକୁ ପରିହାରକରି ନିଜକୁ ଦୁଃସ୍ଥ ଦଳିତର ଲିପିକାର ଭାବେ ଉଦ୍‌ଘୋଷଣା କରିଛନ୍ତି । -

ତୁମ ପାଇଁ ସଖି ସାଇତା ହୋଇଛି ଫଗୁଣର ମଧୁ ଫୁଲ ହାର
ମୋ ପାଇଁ ରହିଛି କଳାପାଣି ଆଉ ଅସୀମ କଷଣ କାରାଗାର
ତମ ପାଇଁ ସଖି କାନନେ କୁସୁମ ଧରିଛିତ ନୂଆ ପରିମଳ
ମୋ ପାଇଁ ନାଗର କଳା ଫଣା ତଳେ ସଞ୍ଚିତ ଯେତେ ହଳାହଳ
X X X X X X
"ଲକ୍ଷ୍ମୀଛଡା ମୁଁ ଚିର ହତଭାଗା ଦିନଦଳିତର ଲିପିକାର
ତବ ରୂପ ଲାଗି ଭାଷା ଯୋଗାଇବା ମୋ ପକ୍ଷରେ ପାଠ କାଠିକର
ତେଣୁ କହେ ସଖୀ ବିନୟ ହୋଇ ମୁଁ ତୁମ ପଥେ ଯାଅ ତୁମେ ଚାଲି
ମୋ ପଥ ଡାକଇ ମୋତେ ରହି ରହି ପାରିବ କି ତାହା ରୋଧକରି ?"

ସଚ୍ଚି ରାଉତରାୟଙ୍କ ଯାତ୍ରା କବିତା ଡଗର (୨/୧) ରେ ବିପ୍ଳବକୁ ଝଡ଼ ରୂପେ ବର୍ଣ୍ଣନା କରାଯାଇଛି ।

ଝଡର ଏହି ସ୍ୱୟଂବରେ
ମାଲ୍ୟତବ ଦେଲ ଗୋ ଯେବେ
ଆନତ ମୋର ଗଳାର ପରେ...
ନିଠୁର ପଦେ ଆସ ଗୋ ଚାଲି
ପଥ ମୋ ରଚେ ସାହାରା ବାଲି
ସେ ପଥେ ସଖି ସକଳ ଭୁଲି
ଯିବାକୁ ହେବ ଧରି ମୋ କରେ ।

(ଯାତ୍ରା - ସଚ୍ଚିତରାଉତରା ୨/୧)

ଆଧୁନିକ କବି ରମାକାନ୍ତ ରଥ, ଜଗନ୍ନାଥ ପ୍ରସାଦ ଦାସ, ଯଦୁନାଥ ଦାସ ମହାପାତ୍ର, କୃଷ୍ଣଚରଣ ବେହେରା, ରଜନୀକାନ୍ତ ଦାସ, ଅନ୍ନପୂର୍ଣ୍ଣା, , ଗୌରଚନ୍ଦ୍ର ମହାପାତ୍ର, ଦୁର୍ଗାଚରଣ ପରିଡା, ଗୋପାଳଚନ୍ଦ୍ର ମିଶ୍ର, ବେଣୁଧର ରାଉତ, ବିଭୁଦତ୍ତ ମିଶ୍ର, ଦୁର୍ଗାମାଧବ ମିଶ୍ର ପ୍ରମୁଖଙ୍କ ପ୍ରଥମ ପର୍ଯ୍ୟାୟର ଅନେକ କବିତା 'ଡଗର'ରେ ପ୍ରକାଶିତ ।

ନିତ୍ୟାନନ୍ଦ ମହାପାତ୍ର ଓଡ଼ିଆ ସାହିତ୍ୟର ଶତାୟୁ ପୁରୁଷ । ସବୁଜଯୁଗରୁ ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ସେ ଥିଲେ କର୍ମଚଞ୍ଚଳ, ସୃଜନମୁଖର ଏବଂ ସଂଯୋଗ ସେତୁ । କେବଳ ସାହିତ୍ୟିକ ନୁହଁନ୍ତି ଏକାଧାରାରେ ସେ ଥିଲେ ରାଜନୈତିକ, ସମାଜସେବକ, ଗାନ୍ଧୀବାଦୀ ଓ ଧାର୍ମିକ ଭାବଚେତନାର ମହନୀୟ ପ୍ରତୀଭୂ । ଏହି ଯୋଗଜନ୍ମା ପୁରୁଷଙ୍କ ସୁନିୟନ୍ତ୍ରଣରେ ଡଗର ଏକ ପୂର୍ଣ୍ଣାଙ୍ଗ ପତ୍ରିକାରୂପେ ପ୍ରତିଷ୍ଠା ଲାଭ କରିଥିଲା । ଏହାର ବିଭିନ୍ନ ବିଭାଗ ଥିଲା ଆକର୍ଷଣୀୟ, ପ୍ରାଣବାନ ଏବଂ ଲକ୍ଷ୍ୟଭେଦୀ । ଡଗରର ବିଶେଷାଙ୍କ ସମୂହ ଥିଲା ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ସାହିତ୍ୟ ବିଶେଷାଙ୍କ, ଗଳ୍ପ ବିଶେଷାଙ୍କ, ରାଧାନାଥ ବିଶେଷାଙ୍କ, ଗଙ୍ଗାଧର ବିଶେଷାଙ୍କ, ସମାଲୋଚନା ବିଶେଷାଙ୍କ, ରଜତ ଜୟନ୍ତୀ ବିଶେଷାଙ୍କ, ଆଧୁନିକ କବିତା ବିଶେଷାଙ୍କ ସମୂହକୁ ଏ ପ୍ରସଙ୍ଗରେ ସ୍ମରଣ କରାଯାଇପାରେ । 'ଡଗର' ୧୭/୮ ଫେବୃୟାରୀ ୧୯୫୪ ସଂଖ୍ୟାଟି ବିମ୍ବାଧର ସ୍ମୃତି ସଂଖ୍ୟା ରୂପେ ପ୍ରକାଶିତ । ଏଥିରେ ବିମ୍ବାଧର ବର୍ମାଙ୍କ ଉପରେ ଅନେକ ସ୍ମୃତିଚାରଣ ସହିତ ତାଙ୍କର ଚିତ୍ର ସମୂହ ପ୍ରକାଶ ପାଇଛି । ଡଗର ୨୦ଶ ବର୍ଷ ୧-୨ (ଜୁଲାଇ, ଅଗଷ୍ଟ ୧୯୫୬)ସଂଖ୍ୟାଟି ସାହିତ୍ୟ ବିଶେଷାଙ୍କ ରୂପେ ପ୍ରକାଶିତ । ଏହି ବିଶେଷାଙ୍କଟି ଓଡ଼ିଆ ସାହିତ୍ୟରେ ଏକ ବିଲକ୍ଷଣ ସୃଷ୍ଟି । ଏଥିରେ ଅର୍ତ୍ତବଲ୍ଲଭ ମହାନ୍ତିଙ୍କଠାରୁ ଆରମ୍ଭ କରି ହରେକୃଷ୍ଣ ମହତାବଙ୍କ ଗବେଷଣାପୂର୍ଣ୍ଣ ରଚନା ପ୍ରକାଶିତ । ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଆମର ସାଂସ୍କୃତିକ ବିକାଶ, ଗୋକୁଳାନନ୍ଦ ମହାପାତ୍ରଙ୍କ ଓଡ଼ିଆ ବିଜ୍ଞାନ ସାହିତ୍ୟ, ସୁରେନ୍ଦ୍ର ମହାନ୍ତିଙ୍କ ଦ୍ୱିତୀୟ

ମହାଯୁଦ୍ଧୋତ୍ତର କାଳରେ ଓଡ଼ିଆ କଥା ସାହିତ୍ୟ  ସହିତ ଅନ୍ୟାନ୍ୟ ପ୍ରାବନ୍ଧିକଙ୍କ ରଚନା ଏହି ସଂଖ୍ୟାର ପୃଷ୍ଠାମଣ୍ଡନ କରିଥିଲା । ସମ୍ପାଦକୀୟ ସ୍ତମ୍ଭରେ ସାମ୍ପ୍ରତିକ ସାହିତ୍ୟ ଶୀର୍ଷକରେ ନିତ୍ୟାନନ୍ଦ ମହାପାତ୍ର ବିଶ୍ୱ ସାହିତ୍ୟ ପ୍ରେକ୍ଷାପଟରେ ଓଡ଼ିଆ ସାହିତ୍ୟର ଦୈନ୍ୟ ଦର୍ଶାଇ ବିକାଶର ପଥ ସୂଚାଇଛନ୍ତି । ଏଥିରେ ତାଙ୍କର ସାହିତ୍ୟ ସମ୍ପର୍କରେ ଉଚ୍ଚ ଧାରଣା ପ୍ରତିଫଳିତ -

"କେବଳ  ମାତ୍ର ନବ ନବ ପ୍ରୟୋଗ - ପରୀକ୍ଷା ବା ଏକ୍ସପେରିମେଣ୍ଟ ହିଁ ଏକ ଯୁଦ୍ଧୋତ୍ତର ଯୁଗରେ ବା ସ୍ୱାଧୀନତା ପର କାଳରେ ଓଡ଼ିଆ ସାହିତ୍ୟରେ ବିଶେଷ ଭାବରେ ଦେଖିବାକୁ ମିଳେ । ଏହାହିଁ  ଆଧୁନିକ ସାହିତ୍ୟର ବିଶେଷତ୍ୱ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଭାଷା ଆଙ୍ଗିକରେ ବହୁଧା ନବ ପ୍ରୟୋଗ- ପରୀକ୍ଷା ଯେ କରିଛି, ଏଥିରେ ସନ୍ଦେହ ନାହିଁ ।  ମାତ୍ର ଅନ୍ତର୍ନିହିତ ଭାବରେ ବିଶେଷ ପରୀକ୍ଷା ବା ପ୍ରୟୋଗ ବୈଷ୍ଣବ ସାହିତ୍ୟରେ ମଧ୍ୟ ପ୍ରାଞ୍ଜଳ । ତଥାପି ଆଙ୍ଗିକ ଓ ଆତ୍ମିକରେ ତଥା ଶୈଳୀ ଓ ସମ୍ବୋଧିରେ ନାନା ପ୍ରୟୋଗ କୁଶଳତାର ସହିତ ବର୍ତ୍ତମାନ କରାଯାଉଛି । ମାତ୍ର ଏହାକୁ ପରଂପରାର ବିଚ୍ୟୁତି ବୋଲିବାକୁ ଗଲେ, ସତରେ ଅପଳାପ ରହିଯିବ । ଉଦାହରଣ ସ୍ୱରୂପ - କବିତାରେ ଅମିତ୍ରାକ୍ଷର, ଗଦ୍ୟ ଛନ୍ଦ ଓ ମୁକ୍ତ ଛନ୍ଦ (Blank Verse, Verse Libera, Verse Libre)କୁ  ଅଭିନବ ପ୍ରୟୋଗ ଆଖ୍ୟା ଦିଆଯାଇ ନ ପାରେ  । ସଂସ୍କୃତ ଶ୍ଳୋକ ତଥା ସୂକ୍ତାଦି ଏହି ପର୍ଯ୍ୟାୟଭୁକ୍ତ  । ଏପରିକି ଗ୍ରାମୀଣ ବିଚ୍ଛା-ସାପ ଝାଡ଼ିବା ମନ୍ତ୍ର ଆଦି ଠାରୁ କାନ୍ଦଣା-ବିଳାପ ତଥା ମୂଲିଆର ଉଦ୍‌ବୋଧନ, ସବାରି ବେହେରାଙ୍କ ଡାକ ଭିତରେ  ଏହି ଛନ୍ଦ ସମୂହର ପ୍ରାଚୁର୍ଯ୍ୟ ମିଳିଥାଏ । ସୁତରାଂ ଆଧୁନିକତମ ଗଦ୍ୟ ଶୈଳୀକୁ ଅତୀତର ପୁନରୁତ୍ଥାନ ବା ନବ ସଂସ୍କରଣ ହିଁ କହିବା ଯୁକ୍ତିସଙ୍ଗତ ।" (ସାହିତ୍ୟ ବିଶେଷାଙ୍କ)

ସାହିତ୍ୟ ବିଶେଷାଙ୍କରେ ଓଡ଼ିଆ ସାହିତ୍ୟର ଅନେକ ଯୁଗାନ୍ତକାରୀ ପୁସ୍ତକଗୁଡ଼ିକର ଏକ ତାଲିକା ପ୍ରଦାନ କରାଯାଇଛି  । ଲେଖକଙ୍କ ଫଟୋ କ୍ରମରେ ତିନୋଟି ପର୍ଯ୍ୟାୟରେ ଓଡ଼ିଶାର କୃତବିଦ୍ୟ ସାଧକମାନଙ୍କର ଫଟୋଚିତ୍ର ପ୍ରଦତ୍ତ ହୋଇଛି । ପ୍ରଥମରେ ଓଡ଼ିଆ ସାହିତ୍ୟରେ ଜାତୀୟ ଯୁଗର ପ୍ରବର୍ତ୍ତକ କ୍ରମରେ ମଧୁସୂଦନ ଦାସ, ପ୍ୟାରୀମୋହନ, ଗୋପବନ୍ଧୁ, ଗୋଦାବରୀଶ, ରାଧାନାଥ, ମଧୁ ରାଓ, ଗଙ୍ଗାଧର ପ୍ରମୁଖ ଦ୍ୱିତୀୟରେ ଆଧୁନିକ କାଳର ବିଶିଷ୍ଟ ଦୀପ୍ତିକ୍ରମରେ କାହ୍ନୁଚରଣ, ଆର୍ତ୍ତବଲ୍ଲଭ, ସଚ୍ଚିଦାନନ୍ଦ, କାଳନ୍ଦୀ ପ୍ରମୁଖ ତୃତୀୟରେ ଓଡ଼ିଆ ସାହିତ୍ୟାକାଶରେ ଉଦୀୟମାନ ଜ୍ୟୋତିପୁଞ୍ଜ ଶୀର୍ଷକରେ ବିନୋଦ ନାୟକ, ଗୋଲକବିହାରୀ ଧଳ, ଗୋପାଳ କାନୁନ୍‌ଗୋ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରମୁଖଙ୍କ ଫଟୋଚିତ୍ର ପ୍ରକାଶ ପାଇଛି  ।

ଡିସେମ୍ବର -ଜାନୁୟାରୀ-୧୯୬୦-୬୧, ୨୪ଶ ବର୍ଷ-୬-୭ ସଂଖ୍ୟା 'ରାଧାନାଥ ବିଶେଷାଙ୍କ' ରୂପେ ପ୍ରକାଶିତ । ସମକାଳୀନ ଓଡ଼ିଶାର ସମସ୍ତ ନବୀନ ଓ ପ୍ରବୀଣ

ଗବେଷକଙ୍କ ରାଧାନାଥ ସମ୍ପର୍କିତ ରଚନାରେ ଏହି ବିଶେଷାଙ୍କଟି ଋଦ୍ଧିମନ୍ତ । ଏହି ବିଶେଷାଙ୍କରେ ନଟବର ସାମନ୍ତରାୟଙ୍କ "ରାଧାନାଥଙ୍କ ରଚନାବଳୀ ଓ ସେମାନଙ୍କ ପ୍ରକାଶ ସମୟ ନିର୍ଣ୍ଣୟ''ଆଲୋଚନା, ବେଣୁଧର ରାଉତଙ୍କ "ପାଶ୍ଚାତ୍ୟ ସାହିତ୍ୟରୁ ରାଧାନାଥଙ୍କ ଆହରଣ ଓ ବୈଶିଷ୍ଟ୍ୟ' ପ୍ରଭୃତି ଆଲୋଚନା ପ୍ରକାଶିତ । ଏତଦ୍‌ବ୍ୟତୀତ କୁଞ୍ଜବିହାରୀ ଦାଶ, ପ୍ରହ୍ଲାଦ ପ୍ରଧାନ, ନରେନ୍ଦ୍ରନାଥ ମିଶ୍ର, ସିଦ୍ଧେଶ୍ୱର ହୋତା, ଦାଶରଥି ଦାଶ, ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚରଣ ବେହେରା, କୁଞ୍ଜବିହାରୀ ତ୍ରିପାଠୀ, ପଠାଣି ପଟ୍ଟନାୟକ, ଗୋପାଳଚନ୍ଦ୍ର ମିଶ୍ର, ଗୋବିନ୍ଦ ଉଦ୍‌ଗାତା, ନିତ୍ୟାନନ୍ଦ ଶତପଥୀ  ପ୍ରମୁଖଙ୍କ ରଚନା ସ୍ଥାନିତ ହୋଇଥିଲା । ଏହି ବିଶେଷାଙ୍କର ପ୍ରାରମ୍ଭରେ ନିତ୍ୟାନନ୍ଦଙ୍କ ସମ୍ପାଦକୀୟ ଥିଲା ଅତି ମୂଲ୍ୟବାନ ତଥା ରାଧାନାଥ ସାହିତ୍ୟର ଅପରୂପ ନିର୍ଯ୍ୟାସ, "ତଥାପି ରାଧାନାଥ ସାହିତ୍ୟ ପର ପଦାନତ ଓଡ଼ିଆ  ଜାତିର ପ୍ରାଣରେ ସ୍ୱମର୍ଯ୍ୟାଦା, ଜାତୀୟ ଭାବ ଉଦ୍ଦୀପନ କରିବାରେ ପ୍ରଭୂତ ସହାୟତା କରିଛି । ଓଡ଼ିଆ ସାହିତ୍ୟର ଜାତୀୟ ଯୁଗାରମ୍ଭର ପ୍ରାକ୍‌କାଳରେ  ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଯେଉଁମାନେ ସତର୍କ ହେଲେ ହେଁ ସଫଳ ପଦକ୍ଷେପ କରିପାରିଛନ୍ତି ସେମାନଙ୍କ ମଧ୍ୟରେ ରାଧାନାଥ ଅନ୍ୟତମ ।" ମୋ ଦୃଷ୍ଟିରେ ଡଗରର ସାହିତ୍ୟ ଓ ରାଧାନାଥ ବିଶେଷାଙ୍କ ଏକ ଏକ ଅନତିକ୍ରମଣ୍ୟ ସଂକଳନ ।

'ଡଗର' ୨୪ଶ ବର୍ଷର ୧୧ଶ ସଂଖ୍ୟା (ମଇ-୧୯୬୧) ରବୀନ୍ଦ୍ର ସ୍ମୃତିସଂଖ୍ୟା' ରୂପେ ପ୍ରକାଶିତ । ଏଥିରେ ବିଭିନ୍ନ ବଙ୍ଗଳା ରଚନାର ଓଡ଼ିଆ ଅନୁବାଦ ସହିତ କୁଞ୍ଜବିହାରୀ ଦାଶ, ଚିତ୍ତରଞ୍ଜନ ଦାସ ପ୍ରମୁଖଙ୍କ ମୌଳିକ ରବୀନ୍ଦ୍ର ସ୍ମୃତିଚାରଣ ବେଶ କଳାତ୍ମକ ଏବଂ ବୈଶିଷ୍ଟ୍ୟପୂର୍ଣ୍ଣ ।

'ଡଗର' ୨୬ଶ ବର୍ଷ ଦ୍ୱିତୀୟ ଓ ତୃତୀୟ ସଂଖ୍ୟା ଅଗଷ୍ଟ ଓ ସେପ୍ଟେମ୍ବର ୧୯୬୨ ପୃଥୁଳ ଶରୀରରେ 'ରଜତ ଜୟନ୍ତୀ ବିଶେଷାଙ୍କ' ରୂପେ ପ୍ରକାଶ ପାଏ । ଏଯାବତ୍ ଓଡ଼ିଆ ସାହିତ୍ୟରେ କୌଣସି ପତ୍ରିକା ଏପରି କଳାତ୍ମକ, ମୂଲ୍ୟବାନ ଏବଂ କାଳଜୟୀ ସଂକଳନ କରିଥିବାର ମୋ ଦୃଷ୍ଟିକୁ ଆସିନାହିଁ । ଏଥିରେ ୩୨ଟି ଉଚ୍ଚକୋଟିର ପ୍ରବନ୍ଧ ଆଲୋଚନା, ୯ଟି ଗଳ୍ପ, ୨୯ଟି କବିତା,ରଙ୍ଗରସ ବିଭାଗରେ ୧୧ଟି ରଚନା ଏବଂ ଅନ୍ୟାନ୍ୟ ବିଭାଗର ଅନେକ ରଚନା ସଂକଳିତ । ସମ୍ପାଦକୀୟରେ ନିତ୍ୟାନନ୍ଦ ମହାପାତ୍ରଙ୍କ '୨୫ ବର୍ଷର ପତନ ଓ ଅଭ୍ୟୁଦୟ ତା'ର କାହାଣୀ' ତାଙ୍କର ଓଡ଼ିଆ ସାହିତ୍ୟ ପ୍ରୀତିର ଅମ୍ଳାନ ସ୍ୱାକ୍ଷର । ଏ ପ୍ରସଙ୍ଗରେ ଓଡ଼ିଆ ସାହିତ୍ୟ ସେବା ପ୍ରତି ତାଙ୍କର ଉତ୍ସର୍ଗୀକୃତ ମନୋଭାବ ବିଜ୍ଞାପିତ । -

"ଆଜି 'ଡଗର'ର ଜୟନ୍ତୀ ଉତ୍ସବ ପାଳନ କରାଯାଉଛି । ଜୟନ୍ତୀ ପ୍ରକୃତ ପକ୍ଷେ ଉତ୍ସବ ନୁହେଁ- ଅଭିନନ୍ଦନ ମାତ୍ର । 'ଡଗର' ଏ ଅଭିନନ୍ଦନର ଯୋଗ୍ୟକି ନୁହେଁ, ତାହା ଏ ଦେଶର ସାହିତ୍ୟପ୍ରେମୀମାନଙ୍କର ବିଚାର୍ଯ୍ୟ । ଏତିକି କହିଲେ ଯଥେଷ୍ଟ ହେବ ଯେ, 'ଡଗର' ବ୍ୟବସାୟ ମନୋବୃତି ଘେନି ବର୍ତ୍ତିନାହିଁ । 'ଡଗର'ର ଆଜନ୍ମ ବରଣ କେବଳ

ସାହିତ୍ୟ ସେବା । ପତ୍ରିକାର (Journalism)ବୃତ୍ତିକୁ ଏକ ମହତ୍ତର ସ୍ଥାନ ଦେବା- ପତ୍ରିକାର ବୃତ୍ତିର ସମୁଚ୍ଚ ମାନ ନିର୍ଦ୍ଦେଶ କରିବା ତାର ଅବିରତ ଧ୍ୟାନ ହୋଇ ଆସିଛି । ସେତିକି ଯଦି ଗୁଣଗ୍ରାହୀ - ରସଗ୍ରାହୀ - ଚିହ୍ନରା ଗ୍ରାହକମାନଙ୍କ ବିଚାରରେ ସଫଳତାର ସହିତ କରାଯାଇପାରିଥାଏ - ତାହାହିଁ ଯଥେଷ୍ଟ - ଡଗରକୁ ଏଇ ଅଭିନନ୍ଦନର ଯୋଗ୍ୟ କରିବା ପାଇଁ ।"

ରଜତ ଜୟନ୍ତୀ ବିଶେଷାଙ୍କରେ ହରେକୃଷ୍ଣ ମହତାବଙ୍କ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତା'ର ରାଜନୈତିକ ପରିବର୍ତ୍ତନ', ଶ୍ରୀରାମଚନ୍ଦ୍ର ଦାସଙ୍କ 'ଓଡ଼ିଶାରେ ବିଗତ ୨୫ ବର୍ଷର ରାଜନୈତିକ ପରିଘୂର୍ଣ୍ଣନ', ପରମାନନ୍ଦ ଆଚାର୍ଯ୍ୟଙ୍କର 'ଓଡ଼ିଶାର ଅତୀତ ଉପରେ ବର୍ତ୍ତମାନର ଆଲୋକପାତ', କୁଞ୍ଜବିହାରୀ ତ୍ରିପାଠୀଙ୍କ 'ପଶ୍ଚିମବଙ୍ଗରେ ଗଗନେଶ୍ୱରରେ ଥିବା ପ୍ରାଚୀନ ଓଡ଼ିଆ ଶିଳାଲେଖ', ଲକ୍ଷ୍ମୀନାରାୟଣ ସାହୁଙ୍କ 'ଆଧୁନିକ ଓଡ଼ିଶାର ସାମାଜିକ ଜୀବନ ଓ ସମାଜସେବୀର ସଂକଟ' ପ୍ରଭୃତି ପ୍ରବନ୍ଧ ପ୍ରକାଶିତ । ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ମନୋଜ ଦାଶ ପ୍ରମୁଖଙ୍କ ଗଳ୍ପ ଏହି ସଂଖ୍ୟାରେ ବିଶେଷ ଆକର୍ଷଣ । ମାନସିଂହ, ସଚ୍ଚି ରାଉତରାୟ ପ୍ରମୁଖଙ୍କଠାରୁ ଆରମ୍ଭ କରି ସମକାଳୀନ ଅନେକ ବିଶିଷ୍ଟ କବିଙ୍କ କବିତା ସ୍ଥାନିତ ହୋଇଛି । ରଙ୍ଗରସ ବିଭାଗରେ ମହାପାତ୍ର ନୀଳମଣି ସାହୁ, ବିଦ୍ୟୁତ୍‌ପ୍ରଭା ଦେବୀ, ନିତ୍ୟାନନ୍ଦ ମହାପାତ୍ର , ଚୌଧୁରୀ ହେମକାନ୍ତ ମିଶ୍ର, ସୁନୀଲ ମିଶ୍ର, ଗୋଦାବରୀଶ ମହାପାତ୍ର ପ୍ରମୁଖଙ୍କ ରଚନା ପ୍ରକାଶ ପାଇଛି । ଏତଦ୍‌ବ୍ୟତୀତ ଅନେକ ଅନୁବାଦିତ ଗଳ୍ପ ଏହି ସଂଖ୍ୟାକୁ ଋଦ୍ଧିମନ୍ତ କରିଛି । 'ଡଗର'ର ଏହି ସାରସ୍ୱତ ଯାତ୍ରାକୁ ଅଭିନନ୍ଦନ ଜଣାଇ ନିଆଁଖୁଣ୍ଟାର ସମ୍ପାଦକ ଗୋଦାବରୀଶ ମହାପାତ୍ର ସୁମନାସ ଜଣାଇଛନ୍ତି । ଯାହାକି ଜଣେ ସତୀର୍ଥ ବିନ୍ଧାଣୀର ସାରସ୍ୱତ ଅଭିନନ୍ଦନ -

ହେ ପ୍ରିୟ ଡଗର !
ଘେନ ସୁମନାସ ଆଜି ଏ ନିଆଁଖୁଣ୍ଟାର ।
ବର୍ଷ ବର୍ଷ ଧରି ତୁମ ବିଲୁଆ ବିଚାର
କରିଅଛି ଏ ଉତ୍କଳେ ଯେ ସତ୍ୟ ପ୍ରଚାର,
ବିତରିଛି ରଙ୍ଗରସ ବିଭଙ୍ଗ ଚିତ୍ତରେ
ବୁହାଇଛି ହାସ -ଧାରା ଜନତା ହିତରେ ।
ପ୍ରତିଧ୍ୱନି ଉଠେ ତାର ପୁରଜନ ପଦେ
ତୁମକୁ ଚିହ୍ନନ୍ତି ଲୋକେ ତୁମରି ସଂପଦେ ।
କରିଅଛ ଦୁର୍ବିନୀତେ ତୁମେ ନତ ସଦା
ଦୁର୍ନୀତି ସମ୍ମୁଖେ ହୋଇ ଭୀମ ହସ୍ତ ଗଦା ।

ଶତାବ୍ଦୀର ଚାରି ଭାଗୁଁ ଭାଗେ ଗଲ ଡେଇଁ -
ହୁଅ ଦୀର୍ଘଜୀବୀ ବାକୀ ତିନି ଭାଗ ପାଇଁ ।

(ସୁମନାସ - ଗୋଦାବରିଶ ମହାପାତ୍ର 'ଡଗର' ୨୬/୨)

'ଡଗର' ୩୧ଶ ବର୍ଷ ୮ମ ସଂଖ୍ୟା ଫେବୃୟାରୀ ୧୯୬୮ ଗଙ୍ଗାଧର ବିଶେଷାଙ୍କ ରୂପେ ଲୋକଲୋଚନକୁ ଆସିଥିଲା । ଏହି ବିଶେଷାଙ୍କକୁ ସାଧୁବାଦ ଜଣାଇ ପଣ୍ଡିତ ନୀଳକଣ୍ଠ ଦାସ ଲେଖିଥିଲେ -

" 'ଡଗର'ର ଗଙ୍ଗାଧର ବିଶେଷାଙ୍କ ବାହାରିବା ବଡ ଖୁସିର କଥା । ଏମିତି ଗୋଟିଏ ଗୋଟିଏ ସାହିତ୍ୟିକ ଯୋଜନାରେ 'ଡଗର' ବହୁ ଆଗରୁ ଅଗ୍ରଣୀ ହୋଇ ଆସିଛି । ଏପରି ଉଦ୍ୟମ ଅନ୍ୟ କେଉଁ ଓଡ଼ିଆ ପତ୍ରିକା କରୁଥିବାର ମନେ ହେଉନାହିଁ । 'ଡଗର' ଶବ୍ଦର ଅର୍ଥ ଅଗ୍ରଦୂତ । ଓଡ଼ିଆ ପତ୍ରପତ୍ରିକା ରାଜ୍ୟରେ ଯଥାର୍ଥରେ 'ଡଗର' ଅଗ୍ରଦୂତ । ମୁଁ ତାର ଏହି ଗଙ୍ଗାଧର ବିଶେଷାଙ୍କର ସଫଳତା କାମନା କରୁଚି । - ନୀଳକଂଠ ଦାସ ତା ୮।୧୧।୬୩"

ଏହି ବିଶେଷାଙ୍କର ସମ୍ପାଦକୀୟରେ ନିତ୍ୟାନନ୍ଦ ମହାପାତ୍ର, ଗଙ୍ଗାଧରଙ୍କୁ 'ପଶ୍ଚିମ ସୀମାନ୍ତର ବିଶ୍ୱସ୍ତ ପ୍ରହରୀ' ରୂପେ ବର୍ଣ୍ଣନା କରିଛନ୍ତି । ଗଙ୍ଗାଧର ପଶ୍ଚିମ ଓଡ଼ିଶାକୁ ବାହ୍ୟ ଭାଷାର ଆକ୍ରମଣରୁ ଉଦ୍ଧାର କରିବା ସହିତ ଭାଷା ସାହିତ୍ୟକୁ ସୁଦୃଢ଼ କରିବାର ଆଜୀବନ ସଂକଳ୍ପ ଗ୍ରହଣ କରିଥିଲେ । ଏହି ସଂକଳନରେ ପରମାନନ୍ଦ ଆଚାର୍ଯ୍ୟଙ୍କ 'କିମ୍ବଦନ୍ତୀ ଓ ମେହେର ସାହିତ୍ୟ', ରତ୍ନାକର ପତିଙ୍କ 'ଦାର୍ଶନିକଙ୍କ ଦୃଷ୍ଟିରେ ମେହେର ସାହିତ୍ୟ', ନରେନ୍ଦ୍ରନାଥ ମିଶ୍ରଙ୍କ 'ପରମ୍ପରା ଓ ଦୂରଦୃଷ୍ଟିର କବି ଗଙ୍ଗାଧର', ଭରତ ଚନ୍ଦ୍ର ନାୟକଙ୍କ 'କବି ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ', ଶ୍ରଦ୍ଧାକର ସୁପରକାରଙ୍କ 'ଗଙ୍ଗାଧର ସାହିତ୍ୟରେ ପଶ୍ଚିମ ଓଡ଼ିଶାର ଚିତ୍ର' ପ୍ରଭୃତି ଉଚ୍ଚକୋଟିର ପ୍ରବନ୍ଧ ଆଲୋଚନା ପ୍ରକାଶିତ । ଏହି ବିଶେଷାଙ୍କରେ ରଘୁନାଥ ମହାପାତ୍ରଙ୍କ ଗଙ୍ଗାଧରଙ୍କ ସଂକ୍ଷିପ୍ତ ଜୀବନୀ ବ୍ୟତୀତ ୩୨ଟି ଗବେଷଣାତ୍ମକ ସନ୍ଦର୍ଭ ଗଙ୍ଗାଧର ସାହିତ୍ୟର ଉତ୍କର୍ଷତାକୁ ପ୍ରତିପାଦିତ କରେ ।

ପ୍ରାରମ୍ଭ କାଳରେ 'ଡଗର' ରଙ୍ଗବ୍ୟଙ୍ଗ ପତ୍ରିକାରୂପେ ପ୍ରକାଶ ପାଇ ନିଆଁଖୁଣ୍ଟା(୧୯୩୮)ର ପ୍ରକୃତ ଅଗ୍ରଜ ରୂପେ ଭୂମିକା ସମ୍ପାଦନ କରିଥିଲା । କିନ୍ତୁ 'ନିଆଁଖୁଣ୍ଟା' ଓଡ଼ିଆ ଜନଜୀବନରେ ତଥା ସାମାଜିକ ଚେତନାରେ ଯେଉଁ ଆସନ ମାଡି ବସିଥିଲା ସେ କୋଟିକୁ ଉଠିବା ଡଗର ପକ୍ଷରେ ଥିଲା କଷ୍ଟକର ମଧ୍ୟ ଅସମ୍ଭବ । ତେଣୁ ସମ୍ଭବତଃ ନିତ୍ୟାନନ୍ଦ ମହାପାତ୍ର ରଙ୍ଗରସର ଲେଖା କମାଇ ମର୍ଯ୍ୟାଦାସମ୍ପନ୍ନ ସମାଲୋଚନା, ଗଳ୍ପ, କବିତା ପ୍ରଭୃତିରେ ଡଗରର କାୟା ମଣ୍ଡନ କଲେ । ଏହି ମଣ୍ଡନ କଳାର ଅପରୂପ ମୂର୍ତ୍ତରୂପ 'ବିଶେଷାଙ୍କ' ସମୂହ । ଏପରିକି ନଟବର ସାମନ୍ତରାୟ, ଲକ୍ଷ୍ମୀନାରାୟଣ ସାହୁ, ପଠାଣି ପଟ୍ଟନାୟକ, ପରମାନନ୍ଦ ଆଚାର୍ଯ୍ୟ, ନରେନ୍ଦ୍ର ନାଥ ମିଶ୍ର, ଗୋବିନ୍ଦ ଉଦ୍‌ଗାତା,

ତାରିଣୀଚରଣ ଦାସ ପ୍ରମୁଖଙ୍କ ପରି ନିଷ୍ଠାପର ଗବେଷକଙ୍କ ଅନେକ ଗବେଷଣାତ୍ମକ ସନ୍ଦର୍ଭ ଡଗରର ପୃଷ୍ଠା ମଣ୍ଡନ କରିଥିଲା । ସମ୍ପାଦକୀୟ ପରେ 'ସାହିତ୍ୟ ଓ ସଂସ୍କୃତି' ବିଭାଗ ରଖି ସାରସ୍ୱତ ଜଗତର ବିଭିନ୍ନ ଘଟଣା, ମତ ଓ ମନ୍ତବ୍ୟକୁ ନିତ୍ୟାନନ୍ଦ ସ୍ଥାନିତ କରୁଥିଲେ । ଗଳ୍ପ, କବିତା, ସମାଲୋଚନାର ସଂଶ୍ଳେଷରେ 'ଡଗର' ଏକ ଉଚ୍ଚକୋଟିର ସାହିତ୍ୟିକ ପତ୍ରିକା ରୂପେ ପ୍ରତିଭାତ ହୋଇଥିଲା । ନିତ୍ୟାନନ୍ଦଙ୍କ ସାହିତ୍ୟାଦର୍ଶ 'ଡଗର'ର ପ୍ରତି ଛତ୍ରେ ଛତ୍ରେ ପ୍ରତିଫଳିତ । ନିତ୍ୟାନନ୍ଦ ମହାପାତ୍ରଙ୍କ ସମ୍ପାଦନାରେ ଡଗର ଭଦ୍ରକର ଗୋପୀନାଥ ପ୍ରେସରୁ ପ୍ରକାଶ ଲଭୁଥିଲା । ଏହା ତ୍ରୟୋଦଶ ବର୍ଷଠାରୁ ଡଗର ପ୍ରେସ୍ କଟକକୁ ସ୍ଥାନାନ୍ତରିତ ହେଲା । ଶେଷ ପର୍ଯ୍ୟାୟରେ ଡଗର ଭୁବନେଶ୍ୱରରୁ ପ୍ରକାଶ ପାଉଥିଲା । ଡଗର ଏକ ହାସ୍ୟବ୍ୟଙ୍ଗ ପତ୍ରିକା ରୂପେ ୧୫ଶ ବର୍ଷ ପର୍ଯ୍ୟନ୍ତ ପ୍ରକାଶ ପାଇଥିଲା । ୧୬ଶ ବର୍ଷରେ (୧୯୫୩) ଏହାର ନବକଳେବର ସାଧିତ ହୋଇଥିଲା । ଏଥିରେ ଗବେଷଣାତ୍ମକ ସମାଲୋଚନା ଓ ଗଠନମୂଳକ ସାହିତ୍ୟ ପାଇଁ ବିଶେଷ ଧ୍ୟାନ ଦିଆଯାଇଥିଲା । ଏହି ନୂତନ ଆଭିମୁଖ୍ୟକୁ ସ୍ୱାଗତ କରି ସମ୍ପାଦକୀୟରେ ନିତ୍ୟାନନ୍ଦ ଘୋଷଣା କରିଥିଲେ "ନିଜ ସାହିତ୍ୟ ଓ ସମାଜର ଭୁଲ୍ ତ୍ରୁଟିଗୁଡ଼ିକୁ କେବଳ ସ୍ୱୀକାର ନକରି ପରିହାସ ଛଳରେ ପ୍ରକାଶ କରିବା ଆଜି ପର୍ଯ୍ୟନ୍ତ ଡଗରର ସାଧାରଣ ନୀତି ହୋଇ ଆସିଛି । ସମାଲୋଚନା କିମ୍ବା ହାସ୍ୟରସ ସହିତ ଅଧିକ ପରିମାଣରେ ଗଠନ ଓ ଗବେଷଣାମୂଳକ ବିଷୟବସ୍ତୁର ପରିବେଷଣ କରିବା ପାଇଁ ବର୍ତ୍ତମାନ ଏହାର ନବକଳେବର ଗ୍ରହଣ । ଏହି ନୂତନ ଯାତ୍ରାକୁ ଜୟଯୁକ୍ତ କରିବା ସକାଶେ ଦେଶର ସୁଧୀ ସାହିତ୍ୟିକ, ଲେଖକ ଓ ପାଠକମାନଙ୍କୁ ଡଗର ଆଜି ସାଦର ନିମନ୍ତ୍ରଣ ଜଣାଉଛି ।" (ସମ୍ପାଦକୀୟ-୧୬/୧)

ସମ୍ପାଦକୀୟ ସ୍ତମ୍ଭରେ ନିତ୍ୟାନନ୍ଦଙ୍କ ରାଜନୈତିକ, ସାହିତ୍ୟିକ ଓ ସାମାଜିକ ଆଭିମୁଖ୍ୟ ପ୍ରକାଶ ଲଭୁଥିଲା । ତାଙ୍କର ସମ୍ପାଦକୀୟ ସମୂହ ଶାଣିତ, ଜ୍ଞାନଗର୍ଭିତ ଓ ଦେଶ କାଳ ପାତ୍ର ଉପଯୋଗୀ । ଦୀପାବଳୀ ବିଶେଷାଙ୍କ ନଭେମ୍ବର-୧୯୯୨ ସଂଖ୍ୟାରେ 'ଓଡ଼ିଶା ଓ ଓଡ଼ିଆ' ଉପରେ ତାଙ୍କର ସମ୍ପାଦକୀୟ ମନ୍ତବ୍ୟ ବେଶ୍ ପ୍ରଣିଧାନଯୋଗ୍ୟ – ଐତିହାସିକମାନେ କହିପାରିବେ ଓଡ଼ିଶା ଶବ୍ଦ ଆସିଲା କେଉଁଠୁ ? ସମ୍ଭବତଃ ଓଡ଼ିଆ ଭାଷାରୁ ଓଡ଼ିଶା ଶବ୍ଦ ସୃଷ୍ଟି । କିନ୍ତୁ ଯେତେବେଳେ ଉତ୍କଳ ସମ୍ମିଳନୀର ଆରମ୍ଭ ହେଲା 'ବନ୍ଦେ ଉତ୍କଳ ଜନନୀ' ସଂଗୀତର ପ୍ରଚାର ହେଲା ସେତେବେଳେ ସମଗ୍ର ଉତ୍କଳ ଖଣ୍ଡ ମଧ୍ୟରେ 'କଳିଙ୍ଗ' 'କୋଶଳ' ଶବ୍ଦର ମଧ୍ୟ ବିଲୋପ ହୋଇଗଲା ପରି ମନେହେଲା । ଉତ୍କଳ ସମ୍ମିଳନୀର ଅଧିବାସ ସମୟରେ 'ଓଡ଼ିଶା', 'କଳିଙ୍ଗ' ଓ 'କୋଶଳ'ର ମଧ୍ୟରେ ଭେଦ ଦେଖାଯାଇ ନ ଥିଲା । ଓଡ଼ିଶାରେ ସର୍ବପ୍ରଥମ ବିଶ୍ୱବିଦ୍ୟାଳୟର ନାମକରଣ ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟ ବୋଲି ଦିଆଯାଇଥିଲା । କିନ୍ତୁ ଏ ରାଜ୍ୟର ସର୍ବଶ୍ରେଷ୍ଠ ବିଚାରାଳୟକୁ ଭାରତର ଅନ୍ୟାନ୍ୟ ଶ୍ରେଷ୍ଠ ବିଚାରାଳୟମାନଙ୍କ ପରି ରାଜଧାନୀର ନାମ ଅନୁସାରେ ନାମିତ

ନ କରି ଓଡ଼ିଶାର ହାଇକୋର୍ଟ ବୋଲି କାହିଁକି କରାଗଲା ଏବଂ ତାହା ଓଡ଼ିଆମାନଙ୍କର ଓଡ଼ିଶାର ଅଧିବାସୀମାନଙ୍କର କେଉଁ ମନୋବୃତ୍ତିରୁ ଉପଜାତ ହୋଇଥିଲା ତାହା କହିବା କଠିନ । (ଡଗର- ନଭେମ୍ବର ୧୯୯୨)

ଡିସେମ୍ବର -୧୯୯୨ ସଂଖ୍ୟାରେ 'ଭାରତୀୟ ସମ୍ବିଧାନ' ଉପରେ ତାଙ୍କର ସମ୍ପାଦକୀୟ ମତ ବେଶ୍ ଶାଣିତ - 'ଭାରତୀୟ ସମ୍ବିଧାନ ବେଦ ଭଳି ଈଶ୍ୱରଦତ୍ତ ନୁହେଁ- ମନୁଷ୍ୟକୃତ । ଗତ ପ୍ରାୟ ଅର୍ଦ୍ଧଶତାବ୍ଦୀ ହେବ ସମ୍ବିଧାନର ଯେତେ ଥର ସଂଶୋଧନ ସାଧିତ ହୋଇଛି ତାହା ପୃଥିବୀର ଅନ୍ୟ କୌଣସି ଅଂଶରେ ସମ୍ଭବ ହୋଇଛି କି ନାହିଁ ସନ୍ଦେହ । ଆମର ଏ ସମ୍ବିଧାନ ଯେତେଥର ସଂଶୋଧିତ ହୋଇଛି ତାହା କେବଳ ନ୍ୟସ୍ତ ସ୍ୱାର୍ଥ କ୍ଷମତାସୀନ ବ୍ୟକ୍ତିଦ୍ୱର ସୁବିଧା ପାଇଁ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତର ସ୍ୱାଧୀନତା ଆରମ୍ଭରୁ ଆଜିଯାଏ ଗୋଟିଏ ବଂଶର ରାଜୁତି ଚାଲୁଥିଲା । ଏହି ନିର୍ବାଚନରେ ତହିଁରୁ ଅବ୍ୟାହତି ମିଳିଛି । କିନ୍ତୁ ଶାସକ ସଂପ୍ରଦାୟର ମନୋବୃତ୍ତି ସେ ସ୍ୱପ୍ନ ଦେଖିବାରୁ ନିବୃତ୍ତ ହୋଇଛି କି ନାହିଁ ସନ୍ଦେହ । (ଡଗର- ଡିସେମ୍ବର-୧୯୯୨)

ଓଡ଼ିଆ ସାହିତ୍ୟର ସହସ୍ରାବ୍ଦି ବ୍ୟାପୀ ଯାତ୍ରା ପଥରେ ଡଗର ଏକ ସୁବର୍ଣ୍ଣ ସଂଯୋଜନ । ଏହା ଓଡ଼ିଆ ସାହିତ୍ୟର ସାମଗ୍ରିକ ରୂପଚର୍ଯ୍ୟାକୁ ଏକ ବଳିଷ୍ଠ ସାରସ୍ୱତ ଭିତ୍ତି ପ୍ରଦାନ କରିଛି । ଆଜି ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ ରମାକାନ୍ତ ରଥ, ମନୋଜ ଦାସ, ବ୍ରଜନାଥ ରଥ, ଜଗନ୍ନାଥ ପ୍ରସାଦ ଦାସ, ମହାପାତ୍ର ନୀଳମଣି ସାହୁ, ଦୁର୍ଗାଚରଣ ପରିଡା, କୃଷ୍ଣ ଚରଣ ବେହେରା, ଚିତ୍ତରଞ୍ଜନ ଦାସ, ଅଚ୍ୟୁତାନନ୍ଦ ପତି, ବିନୋଦ ରାଉତରାୟ ପ୍ରମୁଖ ସାହିତ୍ୟ ସ୍ରଷ୍ଟାଙ୍କ ପ୍ରାଥମିକ ସୃଷ୍ଟି ସମୂହ 'ଡଗର' ମାଧ୍ୟମରେ ପ୍ରକାଶିତ ଏବଂ ଚର୍ଚ୍ଚିତ । ହାସ୍ୟ ଓ ବ୍ୟଙ୍ଗ ସ୍ରଷ୍ଟା ସୁନୀଲ ମିଶ୍ର, ଫତୁରାନନ୍ଦ, କୁବେର ଦଳାଇ, ଚୌଧୁରୀ ହେମକାନ୍ତ ମିଶ୍ର ପ୍ରମୁଖଙ୍କ ଅନେକ ବ୍ୟଙ୍ଗ ରଚନା ଡଗରରେ ସାରସ୍ୱତ ମର୍ଯ୍ୟାଦା ଲଭିଛି । ଏହା ସହିତ ଡଗରର ବିଶେଷାଙ୍କ ସମୂହ ଓଡ଼ିଆ ସାହିତ୍ୟର ଏକ ଏକ ମାଇଲ୍ ଖୁଣ୍ଟ । ରାଧାନାଥ, ଗଙ୍ଗାଧର ବା ଓଡ଼ିଆ ସାହିତ୍ୟର ଯେକୌଣସି ବିଭାଗରେ ଗବେଷଣା କରୁଥିବା ଗବେଷକଗଣ 'ଡଗର' ବିଶେଷାଙ୍କଗୁଡିକୁ ବାଦ ଦେଲେ ତାଙ୍କର ରଚନା ଅସଂପୂର୍ଣ୍ଣ ହେବ ନିଶ୍ଚୟ । 'ଡଗର'ରେ ଗଳ୍ପ, କବିତା ସହିତ ଲକ୍ଷ୍ମୀନାରାୟଣ ସାହୁଙ୍କ ଆତ୍ମଜୀବନୀ, ଚିତ୍ତରଞ୍ଜନ ଦାସଙ୍କ ଭ୍ରମଣ କାହାଣୀ, ସୁରେନ୍ଦ୍ର ମହାନ୍ତିଙ୍କ ରାଜନୈତିକ ଉପନ୍ୟାସ, ଚିନ୍ତାମଣି ବେହେରା, ଗୌରିକୁମାର ବ୍ରହ୍ମାଙ୍କ ସାହିତ୍ୟ ଆଲୋଚନା, ଗୋକୁଳାନନ୍ଦ ମହାପାତ୍ରଙ୍କର ଧାରାବାହିକ ବିଜ୍ଞାନ ରଚନା, କିରଣ ଚନ୍ଦ୍ର ଘୋଷଙ୍କ 'ଓଡ଼ିଆ ରେକର୍ଡର ଇତିହାସ', କୃଷ୍ଣଚନ୍ଦ୍ର ବସୁଙ୍କ ଓଡ଼ିଶାରେ ସଙ୍ଗୀତ ଶିକ୍ଷା, ଗୋବିନ୍ଦ ତ୍ରିପାଠୀଙ୍କ ଜବାବ ପ୍ରଭୃତି 'ଡଗର'ର ଓଡ଼ିଆ ସାହିତ୍ୟକୁ ଅନୁପମ ଦାନ । 'ଡଗର'ରେ ଅନେକ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ବ୍ୟକ୍ତିଙ୍କ ସ୍ୱାକ୍ଷର ସହିତ ଜୀବନୀ ପ୍ରକାଶ ପାଉଥିଲା । ଉତ୍ତର ସାଧକଙ୍କ ଦ୍ୱାରା ପୂର୍ବ ପୁରୁଷର

ପ୍ରତିଭା ମୂଲ୍ୟାୟନ 'ଡଗର'ର ଅନ୍ୟତମ ଆକର୍ଷଣ । ଏହି ପ୍ରସଙ୍ଗରେ ଶୋଭା ରାୟଙ୍କ 'ମାତାମହ ଶଶିଭୂଷଣ'(୧୭/୩ ସେପ୍ଟେମ୍ବର ୧୯୫୩) ରଚନାକୁ ସ୍ମରଣ କରାଯାଇପାରେ । 'ମୋ ଜୀବନ ଉପରେ ରୂପର ପ୍ରଭାବ' ସ୍ତମ୍ଭରେ ଅନେକ ଚିତ୍ରକର ଏବଂ ଅଭିନେତା ନିଜର ସ୍ମୃତି ଓ ଅନୁଭୂତିକୁ ରଚନା କରୁଥିଲେ । ଏହି ସ୍ତମ୍ଭଟି ଧାରାବାହିକ ପ୍ରକାଶ ପାଉଥିଲା । ରୂପ ଓ ରାଗ ବିଭାଗରେ ପୃଥ୍ୱିରାଜ କପୁରଙ୍କ ଲେଖା ଧାରାବାହିକ ସ୍ଥାନିତ ହେଉଥିଲା ।

ନିତ୍ୟାନନ୍ଦ ମହାପାତ୍ରଙ୍କ ଅନେକ ଗଳ୍ପ, ରମ୍ୟରଚନା ଓ ଉପନ୍ୟାସ ଡଗରରେ ପ୍ରକାଶିତ । ଏଗୁଡିକ ସ୍ୱନାମ ସହିତ, ଅବଧୂତ, ଅନାମ ପ୍ରଭୃତି ଛଦ୍ମନାମରେ ପ୍ରକାଶିତ । କେବଳ ସାରସ୍ୱତ ରଚନା ନୁହେଁ ବରଂ ଉତ୍କୃଷ୍ଟ କାର୍ଟୁନଚିତ୍ର ଅଙ୍କନରେ ସେ ଥିଲେ ସିଦ୍ଧହସ୍ତ । ଡଗରର ପ୍ରତିଟି ସଂଖ୍ୟାରେ ରାଜନୈତିକ, ସାମାଜିକ ଓ ସାହିତ୍ୟିକ ବ୍ୟକ୍ତିବିଶେଷ ଓ ସ୍ୱତନ୍ତ୍ର ପ୍ରସଙ୍ଗକୁ ନେଇ କାର୍ଟୁନ ପ୍ରକାଶ ପାଉଥିଲା । ଏହି କାର୍ଟୁନଗୁଡିକ ଯେତିକି ରସସ୍ନିଗ୍ଧ ସେତିକି ଶାଣୀତବ୍ୟଙ୍ଗରେ ପରିପୂର୍ଣ୍ଣ । କାର୍ଟୁନଗୁଡିକ ମୁଖ୍ୟତଃ ନିତ୍ୟାନନ୍ଦ ନିଜେ ଆଙ୍କୁଥିଲେ ନଚେତ ନିଜର ନିର୍ଦ୍ଦେଶନାରେ ବ୍ୟଙ୍ଗ ଚିତ୍ରକରମାନଙ୍କ ଦ୍ୱାରା ଅଙ୍କାଉଥିଲେ । ଡଗରର ପ୍ରଚ୍ଛଦରେ ଅନେକତ୍ର ରାଜନୈତିକ ବ୍ୟଙ୍ଗର ଚିତ୍ର ପ୍ରଦର୍ଶିତ ହୋଇଛି । ଦୃଷ୍ଟାନ୍ତ ରୂପେ ୧୯୫୩ ବର୍ଷରେ 'ରୁଦ୍ରଙ୍କ କୋପ','ଓଡ଼ିଶାରେ ନବ ହିଟଲର', ଅକ୍ଟୋବର-୧୯୯୨ ସଂଖ୍ୟାର ପ୍ରଚ୍ଛଦରେ ପ୍ରଦତ୍ତ 'ଗଣତନ୍ତ୍ରର ଏଇତ ଖେଳ/ମନ୍ତ୍ରୀ ତନ୍ତ୍ରରେ ଗଣବାଚାଳ'କୁ ନିଆଯାଇପାରେ । ଏମିତି ଅନେକ କାର୍ଟୁନରେ ପ୍ରଚ୍ଛଦ ତଥା ଭିତର ପୃଷ୍ଠାଗୁଡିକ ରୁଦ୍ଧିମନ୍ତ ।

'ଡଗର'କୁ ସମ୍ପାଦକ ଆନନ୍ଦ, ଆଲୋକ ଓ ଅଗ୍ରଗତିର ପ୍ରତୀକ ରୂପେ ସୂଚାଇଥିଲେ ଏବଂ ପ୍ରଚ୍ଛଦରେ ମଧ୍ୟ ଏହା ମୁଦ୍ରିତ ହେଉଥିଲା । ''ପ୍ରାରମ୍ଭିକ ପର୍ଯ୍ୟାୟରେ ଡଗର ପ୍ରଚ୍ଛଦରେ 'ଆନନ୍ଦାତ୍ ହି ଖଲୁ ଇମାନି ଭୂୟନ୍ତେ' ମୁଦ୍ରିତ ହେଉଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଏହା ପରିବର୍ତ୍ତେ 'ଆନନ୍ଦ, ଆଲୋକ ଓ ଅଗ୍ରଗତିର ପ୍ରତୀକ' ମୁଦ୍ରିତ ହେଲା । ଡଗର ପ୍ରଥମେ ପାକ୍ଷିକ ରୂପେ ପ୍ରକାଶ ପାଉଥିଲା । ପରେ ପରେ ନିତ୍ୟାନନ୍ଦ ମହାପାତ୍ର ଏହାକୁ ମାସିକ ଓଡ଼ିଆ ପତ୍ରିକା ରୂପେ ପ୍ରକାଶ କରିଥିଲେ । ଏକଦା ଓଡ଼ିଶାର ବିଶେଷ ଲୋକପ୍ରିୟ ପତ୍ରିକା ରୂପେ ଏହା ଚହଳ ପକାଇଥିଲା । ରାଇଚରଣ ଦାସ, ଫତୁରାନନ୍ଦ, ଅସୀତ କବି, ଭାବଗ୍ରାହୀ ମିଶ୍ର, କୃଷ୍ଣଚରଣ ବେହେରା, ବିଜୟାନନ୍ଦ ସିଂହ, ମହାଭାବ ପ୍ରକାଶ ମହାପାତ୍ରଙ୍କ ସମ୍ପାଦନା ସହଯୋଗରେ ନିତ୍ୟାନନ୍ଦ ଡଗରକୁ ଏକ ଉଚ୍ଚକୋଟିର ସାମାଜିକ ପତ୍ରିକା ରୂପେ ପ୍ରତିଷ୍ଠିତ କରିଥିଲେ ।

'ଡଗର' ସର୍ବକାଳୀନ ମଣିଷ ଆତ୍ମା ଓ ଜୀବନ ବଞ୍ଚିବାର ଉଲ୍ଲାସ ଭିତରେ ଜୀବନ୍ମୟ । ସେ ତଥାକଥିତ ଧର୍ମଧାରଣା ଓ ସମାଜ ବ୍ୟବସ୍ଥାଠାରୁ ଅସଂପୃକ୍ତ ରହି ରକ୍ଷଣଶୀଳ ସମାଜ ବ୍ୟବସ୍ଥା ଓ ଅନ୍ଧବିଶ୍ୱାସ ମୂଳରେ କୁଠାରାଘାତ କରିଛି । ଏକ ନିରୂଢ଼ା ଭାବନିଷ୍ଠ ଓ ଜୀବନନିଷ୍ଠ

ପତ୍ରିକା ରୂପେ ଡଗର ଜୀବନର ବିବର୍ତ୍ତିତ ଇତିହାସର ମୂକସାକ୍ଷୀ ରୂପେ ଅଭିବ୍ୟଞ୍ଜିତ । କୃତ୍ରିମ ଓ ଛଳନାର ମୁଖାଖୋଲି ସତ୍ୟ ଓ ନିର୍ଭିକତାର ଚିତ୍ର ପ୍ରଦାନରେ 'ଡଗର' ସଫଳକାମ । ଏହା ହାସ୍ୟ ଓ ବ୍ୟଙ୍ଗ ବିଭାଗକୁ ଯେତିକି ଋଦ୍ଧିମନ୍ତ କରିଛି, ଓଡ଼ିଆ ସମ୍ଭ୍ରାନ୍ତ ସମାଲୋଚନା ଧାରାକୁ କରିଛି ସେତିକି ଦୀପ୍ତ ଓ ଭାସ୍ୱର । ଓଡ଼ିଆ ସାହିତ୍ୟର ଛଅ ଦଶନ୍ଧିରୁ ଊର୍ଦ୍ଧ୍ୱ କାଳର ମହନୀୟ ସାରସ୍ୱତ ନାନ୍ଦୀପାଠ ଏହି-ପତ୍ରିକା ମାଧ୍ୟମରେ ସମାହିତ ହୋଇଛି । ଏହି ଦୀର୍ଘ ପଥର ପ୍ରକୃଷ୍ଟ ମୂଲ୍ୟାୟନ ଗବେଷଣାର ବିଷୟ । ତଥାପି ଶତାୟୁ ସାରସ୍ୱତ ପୁରୁଷ ନିତ୍ୟାନନ୍ଦ ମହାପାତ୍ରଙ୍କର ଅନବଦ୍ୟ ସାରସ୍ୱତଚର୍ଯ୍ୟାର ଅନୁପମସାକ୍ଷୀ ଡଗର । ଏହାରି ଅନ୍ତରାଳରେ ନିତ୍ୟାନନ୍ଦ ମହାପାତ୍ରଙ୍କର ସାରସ୍ୱତ ନିଷ୍ଠା, ଗଭୀର ଅନ୍ତର୍ଦୃଷ୍ଟି ଓ ସ୍ରଷ୍ଟା ଜୀବନର ସଫଳ ପ୍ରତିଫଳନ ସୁସ୍ପଷ୍ଟ । ଡଗର କେବଳ ଏକ ପତ୍ରିକା ନୁହେଁ ବରଂ ଓଡ଼ିଆ ସାହିତ୍ୟର ସ୍ମୃତିସ୍ନିଗ୍ଧ, ମମତାମେଦୁର ଇତିହାସର ଅଗ୍ରଦୂତ । ନୈରାଶ୍ୟବାଦୀ ଜୀବନରେ ଆଶାର ସଞ୍ଚାର କରିବା, ଅନ୍ଧକାରମୟ ସମାଜ ଜୀବନରେ ଆଲୋକର ଦୀପାଳି ଜାଳିବା, ସାହିତ୍ୟ ବିମୁଖ ପାଠକମାନଙ୍କୁ ସାହିତ୍ୟର ରୋଷଣୀରେ ପ୍ଲାବିତ କରିବା 'ଡଗର'ର ଆଭିମୁଖ୍ୟ । ଏହି ନାନ୍ଦନିକ କର୍ମପ୍ରତି ଅଭିପ୍ରେତ 'ଡଗର'ର ସମ୍ପାଦନା ଏବଂ ଭାଷା ସାନ୍ଦ୍ରତା । ଆତ୍ମନିଷ୍ଠ ପାଠକଟିଏ ତଲ୍ଲିନ ହୋଇ ନିଜ ଜୀବନଚର୍ଯ୍ୟାର ମୂଲ୍ୟାୟନ କଲାବେଳେ 'ଡଗର'କୁ ଦେଖି ମୋହାବିଷ୍ଟ ହୋଇ ନିଜ ଅନ୍ତଃକରଣରୁ ଉଚ୍ଚାରଣ କରେ 'ଡଗର' ହିଁ ଓଡ଼ିଆ ଜନଜୀବନର ମହିମାମୟ ଡଗର ବା ଅଗ୍ରଦୂତ ।

# ଜୀବନ ଓ ହୃଦୟବତ୍ତାର ଚିତ୍ର : ବାମାଚରଣ ମିତ୍ର

ଓଡିଆ ସାହିତ୍ୟରେ ଜଣେ କୃତବିଦ୍ୟ ସାଧକ ବାମାଚରଣ ମିତ୍ର । ଜଣେ ଅଭିନବ କଥାଶିଳ୍ପୀ, ପ୍ରସିଦ୍ଧ ପ୍ରାବନ୍ଧିକ ଓ ରମ୍ୟରଚକ ଏବଂ ବହୁମୁଖୀ ପ୍ରତିଭାଧର ସ୍ରଷ୍ଟା ରୂପେ ବାମାଚରଣ ଯଶସ୍ୱୀ । ତାଙ୍କ ସୃଷ୍ଟି ସମୂହ ମାନବ ପ୍ରେମରେ ଜୁଡୁବୁଡୁ । ଜ୍ଞାନ ଗାରିମା, ଦର୍ଶନ, ବ୍ୟାଖ୍ୟାନ ଊର୍ଦ୍ଧ୍ୱରେ ମାନବର ଶୁଚିଶୁଭ୍ର ଅଧିଷ୍ଠାନ ହିଁ ବାମାଚରଣଙ୍କ କଳାକୌଶଳ । ସାହିତ୍ୟ ଚର୍ଚ୍ଚାରେ ଜୀବନର ବୃହତ୍ତର ଅଂଶକୁ ବିନିଯୋଗ କରିଥିବା ଏହି କାଳଜୟୀ ସ୍ରଷ୍ଟା ଓଡିଆ ସାହିତ୍ୟକୁ ନିଜସ୍ୱ ଦାନରେ କରିଛନ୍ତି ବହୁ ଆୟାମ ବିଶିଷ୍ଟ । ବହୁ ଶାସ୍ତ୍ରଦର୍ଶୀ ବାମାଚରଣଙ୍କ ରଚନାରେ ଗୀତା ଠାରୁ ମାର୍କସବାଦ, ଉପନିଷଦ୍‌ଠାରୁ ଫ୍ରୟେଡ, ପ୍ରାଚ୍ୟ ଦୃଷ୍ଟିରୁ ପାଶ୍ଚାତ୍ୟ ଦର୍ଶନ ପ୍ରତିଫଳିତ । ଜୀବନ୍ମୟ ଆବେଗ ପ୍ରଣୋଦିତ ଶ୍ରଦ୍ଧାରେ ତାଙ୍କର ପ୍ରତିଟି ଲେଖା ରସାଣିତ । ଅନୁରାଗମୟ ପ୍ରବଣତାରେ ସେ ଲେଖିଛନ୍ତି ଗଳ୍ପ, ରମ୍ୟରଚନା, ଉପନ୍ୟାସ ଓ ପ୍ରବନ୍ଧ । ଆପଣାର ଅନୁଭୂତି, ହୃଦୟର ଶାଶ୍ୱତ ତାଡନାରେ ତାଙ୍କର ରଚନା ଆହ୍ଲାଦମୟ । ଏଣୁ ବାହୁଲ୍ୟ, ପରିକ୍ରମା ପଢିଲେ ଯେମିତି ଲାଗେ ଗଳ୍ପ ଗଳ୍ପ, ସେମିତି ସ୍ୱପ୍ନସିଦ୍ଧ, ବଟ ମହାପୁରୁଷ, ଜୀବିକା ଓ ଜୀବନ ପଢିଲେ ଲାଗେ ରମ୍ୟ ରମ୍ୟ । ଏମିତି ଓଡିଆ ସାହିତ୍ୟରେ କମ କୃତବିଦ୍ୟ ଲେଖକ ରହିଛନ୍ତି ଯାହାଙ୍କ ବିଭିନ୍ନ କୃତିର ସୀମାରେଖା ଖୁବ୍ ସୂକ୍ଷ୍ମ । ବାମାଚରଣଙ୍କ ମସ୍ତିଷ୍କରୁ ନୁହେଁ ବରଂ ହୃଦୟର ଗଭୀର ନିର୍ଯ୍ୟାସରୁ କ୍ଷରିତ ହେଉଥିଲା ସୃଷ୍ଟିର ବାଙ୍ମୟ ପ୍ରକାଶ । ହୃଦୟବତ୍ତାର ପ୍ରସାରିତ ଦିଗନ୍ତ ଆବେଗର ସ୍ପର୍ଦ୍ଧାରେ ଅନୁରଣିତ ହୋଇ ସୃଷ୍ଟି ହୁଏ ଯେଉଁ ଛତ୍ର ତାହା ହିଁ ବାମାଚରଣ ମିତ୍ର ।

ବାମାଚରଣଙ୍କ ଗଳ୍ପ ବ୍ୟତିରେକେ "ଜୀବନ ସାହିତ୍ୟ ଓ କଳା" ଏବଂ "ଏଣୁଙ୍ଗ ତେଣୁଙ୍ଗ" ପ୍ରବନ୍ଧ ସଂକଳନ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ଶେଷୋକ୍ତ ପୁସ୍ତକ ତାଙ୍କ ପାଇଁ ଅଣିଦେଇଥିଲା ମରଣୋତ୍ତର ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର । ସାମାନ୍ୟ ବିଷୟ ବସ୍ତୁକୁ ଅସାମାନ୍ୟ ଶୈଳ୍ପିକ ସିଦ୍ଧି ପ୍ରଦାନରେ ତାଙ୍କର କୃତିତ୍ୱ ସର୍ବସ୍ୱୀକୃତ । ଭାଷା ତାଙ୍କର ସରଳ ସାବଲୀଳ ଓ ପ୍ରାଣବାନ । ରସସିକ୍ତ ଓ ଆବେଗ ପ୍ରଧାନ ପ୍ରତିଟି ବାକ୍ୟ । ଜୀବନର ବହୁମୁଖିନତାକୁ ପ୍ରକାଶ କରିବାରେ ତାଙ୍କର ରଚନା ସ୍ୱୟଂପ୍ରଭ । ପ୍ରବନ୍ଧ ହେଉ ବା ଗଳ୍ପ, ଉପନ୍ୟାସ ହେଉ ବା ରମ୍ୟରଚନା ପ୍ରତିଟି ବିଭାଗକୁ ସେ ନିଜର ଯାଦୁକରୀ ସ୍ପର୍ଶରେ ମହୀୟାନ କରିଛନ୍ତି । ପ୍ରତ୍ୟେକଟି ରଚନା ଜୀବନର ଅନୁପମ ଦସ୍ତାବେଜ ରୂପେ

ଆବିର୍ଭୂତ ହୋଇଛି । ଜୀବନକୁ ଋଦ୍ଧିମନ୍ତ ଓ ସ୍ମରଣୀୟ କରିଛି । ବାମାଚରଣଙ୍କ ସ୍ରଷ୍ଟା ଜୀବନର ବିଭୂତିକୁ ବିଭିନ୍ନ ପ୍ରସଙ୍ଗ କ୍ରମେ ପର୍ଯ୍ୟାଲୋଚନା କରାଯାଇପାରେ ।

## କ) କଳାକୁଶଳତାର କାରୁଣ୍ୟ ଓ ଚିର ବିରହ ଆହ୍ଲାଦ : ବାମାଚରଣଙ୍କ ଗଳ୍ପ

ବାମାଚରଣଙ୍କ ସୃଷ୍ଟିର ପ୍ରମୁଖ ଅଂଶ ଗଳ୍ପ । ତାଙ୍କର ଗଳ୍ପ ମୁଖ୍ୟତଃ ମଣିଷ ଜୀବନର ସ୍ୱପ୍ନ ଓ କଳ୍ପନାପ୍ରବଣତାର ସମାହାର । ତାଙ୍କ ଗଳ୍ପର ଭାଷା, ଭାବ ଓ କାହାଣୀ ଏକାକାର । ବର୍ଣ୍ଣନାରେ ଗାଳ୍ପିକଙ୍କ ଆବେଗମୟ ପ୍ରାଣର ସ୍ପର୍ଶ ଗଳ୍ପକୁ ସରସ ଓ ସୁଖପାଠ୍ୟ କରେ । ବିଭିନ୍ନ ତତ୍ତ୍ୱ, ତଥ୍ୟ ଏବଂ ଦର୍ଶନକୁ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠାରେ ଅନୁପ୍ରାଣିତ କରି ସେ ନିଜର ଗଳ୍ପକୁ କାଳଜୟୀ କରିପାରିଛନ୍ତି । ମଣିଷର ଗଭୀର ଜୀବନାନୁଭୂତି, କାରୁଣ୍ୟ ଏବଂ ସଂବେଦନଶୀଳତା ହିଁ ପ୍ରତି ଗଳ୍ପର ମୁଖ୍ୟ ସ୍ୱର । ତାଙ୍କ ପୂର୍ବରୁ କେହି ବୋଧହୁଏ ଶିଶୁ ମନସ୍ତତ୍ତ୍ୱକୁ ନେଇ ଏତେ ଚମତ୍କାର ଗଳ୍ପ ଲେଖିପାରି ନଥିଲେ । ଯାହା ଘଟିଛି ମିମିର ସାହିତ୍ୟ ଶିକ୍ଷା, ମିମିର ସଭ୍ୟତା ଶିକ୍ଷା ବା ସ୍ୱପ୍ନସିଦ୍ଧ ପ୍ରଭୃତି ଗଳ୍ପରେ । ସାଂପ୍ରଦାୟିକ ବିଭେଦ ଭିତରେ ମାନବିକତାର ଜୟଗାନ କରି ସେ ମଣିଷକୁ ଉଚ୍ଚତର ସୋପାନରେ ଅଧିଷ୍ଠିତ କରିଛନ୍ତି । ହୋଲି, ଧର୍ମକ୍ଷେତ୍ର ପ୍ରଭୃତି ଗଳ୍ପ ଏହାର ଚରମ ଦୃଷ୍ଟାନ୍ତ । ବାମାଚରଣଙ୍କ ଗଳ୍ପ କାନଭାସ ବହୁ ରସମୟ ଓ ବିସ୍ତୃତ । ତାଙ୍କର ଉତ୍କଳ ସାହିତ୍ୟ, ଡଗର, ଝଙ୍କାର, ମାନସ ପ୍ରଭୃତିରେ ଅନେକ ଗଳ୍ପ ପ୍ରକାଶିତ । ତାଙ୍କ ପ୍ରକାଶିତ ଗଳ୍ପ ପୁସ୍ତକ ସ୍ୱପ୍ନସିଦ୍ଧ(୧୯୬୦) ରେ ୧୧ଟି ଗଳ୍ପ, ପାଷାଣର ପ୍ରାଣ(୧୯୬୧)ରେ ୯ଟି ଗଳ୍ପ, ଅସୀମ(୧୯୬୧)ରେ ୧୧ଟି ଗଳ୍ପ, ବଟ ମହାପୁରୁଷ(୧୯୬୩)ରେ ୧୪ଟି ଗଳ୍ପ, ମହାପୁରୁଷ ବାଗ (୧୯୬୩)ରେ ୧୮ଟି ଗଳ୍ପ ପ୍ରକାଶିତ । ଏହି ଗଳ୍ପ ସଂକଳନ ସମୂହ ତାଙ୍କର ଜୀବଦ୍ଦଶାରେ ବିକାଶ ପ୍ରତିଷ୍ଠାନ, ଜୟପୁର ଦ୍ୱାରା ପ୍ରକାଶିତ । ଏହି ସଂକଳନ ସମୂହ ବ୍ୟତିରେକେ ତାଙ୍କ ମୃତ୍ୟୁ ପରେ ଓଡିଶା ବୁକଷ୍ଟୋର-୧୯୭୯ରେ ମିତ୍ରଗଳ୍ପ(୨୪ ଟି ଗଳ୍ପ), ଗ୍ରନ୍ଥମନ୍ଦିର-୧୯୭୯ ରେ ମିତ୍ରକଳ୍ପ (୨୫ଟି ଗଳ୍ପ), କଟକ ଷ୍ଟୁଡେଣ୍ଟ ଷ୍ଟୋର - ୧୯୮୧ ରେ ମିତ୍ରସ୍ୱଳ୍ପ(୨୦ଟି ଗଳ୍ପ) ପ୍ରକାଶ କରନ୍ତି । ଏହି ଗଳ୍ପଗୁଡିକ ପୂର୍ବୋକ୍ତ ସଂକଳନରେ ପ୍ରକାଶିତ । ଏତଦ୍ ବ୍ୟତୀତ ଯତୀନ୍ଦ୍ର ମୋହନ ମହାନ୍ତି ଏବଂ ଜ୍ୟୋତିରିନ୍ଦ୍ର ମୋହନ ଜୋଆର୍ଦ୍ଦାରଙ୍କ ସଂପାଦନାରେ ଗଳ୍ପ ସମଗ୍ର-୧ ଓ ଗଳ୍ପ ସମଗ୍ର-୨ ପ୍ରକାଶିତ । ଗଳ୍ପ ସମଗ୍ର-୧ (ସୁବର୍ଣ୍ଣରେଖା -୨୦୦୧) ରେ ୩୭ଟି ଗଳ୍ପ ଏବଂ ଗଳ୍ପ ସମଗ୍ର-୨ (ସୁବର୍ଣ୍ଣରେଖା -୨୦୦୧) ରେ ୩୦ଟି ଗଳ୍ପ ସ୍ଥାନିତ । ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ଆନୁକୂଲ୍ୟରେ "ବାମାଚରଣଙ୍କ ଗଳ୍ପ ସଂଭାର" ଶତ୍ରୁଘ୍ନ ପାଣ୍ଡବଙ୍କ ସଂପାଦନାରେ ୧୯୯୮ରେ ପ୍ରକାଶିତ । ଏଥିରେ ୨୪ଟି ଗଳ୍ପ ପ୍ରକାଶିତ । କ୍ଷୁଦ୍ରଗଳ୍ପ ରଚନା ପୂର୍ବରୁ ୧୯୫୦ରେ ବାମାଚରଣଙ୍କ ୨ଟି ଡିଟେକ୍ଟିଭ ଗଳ୍ପ ସଂକଳନ ପ୍ରକାଶିତ । ଏହି ଦୁଇଟି ସଂକଳନ 'କୀର୍ତ୍ତିର୍ଯସ୍ୟ'(କଟକ ଟ୍ରେଡିଙ୍ଗ

କଂପାନୀ) ଓ ନର ଛଞ୍ଚାଣ (ୟୁନାଇଟେଡ ବୁକ ହାଉସ, କଟକ) ଦ୍ୱାରା ପ୍ରକାଶିତ । କୀର୍ତ୍ତିର୍ଯସ୍ୟ ରେ ପରିଚୟ, ବୈଜ୍ଞାନିକର ଅନ୍ଦାଜ, ମନର ହତ୍ୟା, ବିକୃତି, ପ୍ରକୃତିର ପରିହାସ, ନୂଆ ନିବାସ ଶୀର୍ଷକରେ ଛଅଟି ରହସ୍ୟ ଗଳ୍ପ ପ୍ରକାଶିତ । ଏହି ଗଳ୍ପ ଗୁଡ଼ିକରେ ବିଜ୍ଞାନର ବିଭିନ୍ନ ତତ୍ତ୍ୱ ଓ ପରୀକ୍ଷାକୁ ପ୍ରୟୋଗ କରାଯାଇଛି । ନର ଛଞ୍ଚାଣ ସଂକଳନରେ ସିଟିବେଙ୍କ ଚୋରି ରହସ୍ୟ, ଜାଲଚେକ, ନର ଛଞ୍ଚାଣ, ଚକ୍ରବୃଦ୍ଧି ଶୀର୍ଷକରେ ଚାରିଟି ଗଳ୍ପ ସ୍ଥାନିତ । ବାମାଚରଣଙ୍କ ଆବିଷ୍କାର ଗୋବର୍ଦ୍ଧନ ବାବୁ ଜଣେ ଜ୍ଞାନୀ ଦୂରଦୃଷ୍ଟି ସଂପର୍ଣ୍ଣ ଏକ ପ୍ରଖର ବିଜ୍ଞାନୀ ଡିଟେକ୍ଟିଭ । ଓଡ଼ିଆ ରହସ୍ୟ ସାହିତ୍ୟକୁ ବାମାଚରଣଙ୍କ ଗୋବର୍ଦ୍ଧନ ଚରିତ୍ର ଏକ ଅପୂର୍ବ ଦାନ । ଗୋବର୍ଦ୍ଧନ ବାବୁ କାନନ ଡଏଲଙ୍କ ଶାର୍ଲକ ହୋମସ୍ ଚରିତ୍ରର ଅନୁରୂପ । କିନ୍ତୁ ବାମାଚରଣ ଗୋବର୍ଦ୍ଧନ ଚରିତ୍ରକୁ ଓଡ଼ିଶା ମାଟିରେ ମୌଳିକ ଭାବେ ପ୍ରତିରୋପଣ କରିଛନ୍ତି । ତାଙ୍କର ରହସ୍ୟ କାହାଣୀ ଗୁଡ଼ିକ ଅତି ଲୋକପ୍ରିୟ ଓ ଚମତ୍କାର । କଳ୍ପନାର ପ୍ରାବଲ୍ୟ ଓ ମୌଳିକତାର ଅଫୁରନ୍ତ ସୌନ୍ଦର୍ଯ୍ୟରେ ତାଙ୍କର ରହସ୍ୟ ଗଳ୍ପ ଗୁଡ଼ିକ ମହିମା ମଣ୍ଡିତ । ଏହି ଡିଟେକ୍ଟିଭ କଥା ଭାଗର ଭିତ୍ତିରେ ଉତ୍ତରିତ ହୋଇଛି ତାଙ୍କର କ୍ଷୁଦ୍ର ଗଳ୍ପ ସମୂହ ।

ବିଭିନ୍ନ ସୂତ୍ରରୁ ତାଙ୍କର ଏକାଙ୍କିକା ସମେତ ୭୯ଟି ଗଳ୍ପ ଲେଖକଙ୍କ ଦ୍ୱାରା ସଂଗୃହୀତ ହୋଇପାରିଛି । ଜନସଂଖ୍ୟା ଗଳ୍ପଟି "ପାଷାଣର ପ୍ରାଣ" ସଂକଳନରେ ପ୍ରଥମେ ପ୍ରକାଶ ପାଇଥିବା ବେଳେ ମିତ୍ରଗଳ୍ପ, ଗଳ୍ପ ସଂଭାର ଓ ଗଳ୍ପ ସମଗ୍ର-୧ରେ ଏହାର ନାମକରଣ ହୋଇଛି ଅମୃତସ୍ୟ ପୁତ୍ରାଃ । ପ୍ରଥମରେ ବାବାଜୀ ଚରିତ୍ରର ବକ୍ତବ୍ୟ ଓଡ଼ିଆ ଥିବାବେଳେ ଅମୃତସ୍ୟ ପୁତ୍ରାଃ ବେଳକୁ ସେଥିରେ ହିନ୍ଦୀ ମିଶା ଓଡ଼ିଆ ପରିବର୍ତ୍ତନ କରି ଅଧିକ ବାସ୍ତବଧର୍ମୀ କରାଯାଇଛି । ଅସୀମ ସଂକଳନର ଅସୀମ ଗଳ୍ପଟି ପ୍ରଥମେ ଝଙ୍କାର ୭ମ ବର୍ଷ ୧ମ ସଂଖ୍ୟାରେ ପ୍ରକାଶ ପାଇଥିଲା । ଝଙ୍କାର ଓ ଅସୀମ ସଂକଳନରେ ଗଳ୍ପଟି ଅସୀମ ରୂପେ ପ୍ରକାଶ ପାଇଥିଲା ବେଳେ ରଚନା ସମଗ୍ର-୧ ରେ "ରାଣୀଦୁରୁଗା" ଶୀର୍ଷକରେ ସ୍ଥାନିତ । ଅସୀମ ସଂକଳନର 'ତ୍ରିନେତ୍ର' ଗଳ୍ପଟି ଝଙ୍କାର ୫/୧ରେ ପ୍ରକାଶ ପାଇଥିଲା ବେଳେ ଗଳ୍ପ ସମଗ୍ର-୨ ରେ ଏହାର ଶୀର୍ଷକ ହୋଇଛି "ତ୍ରିଗୁଣ ରଜ୍ଜୁ" ତ୍ରିନେତ୍ରର ପ୍ରଥମ ପାରାଟି ତ୍ରିଗୁଣ ରଜ୍ଜୁରେ ବାଦ ପଡିଛି । ମହାପୁରୁଷବାଗ ସଂକଳନରେ ସ୍ଥାନିତ 'ସାଗର ଓ ବିନ୍ଦୁ' ଗଳ୍ପଟି ପ୍ରଥମେ ଡଗର ଅଗଷ୍ଟ-ସେପ୍ଟେମ୍ବର-୧୯୬୨ ରେ ପ୍ରକାଶ ପାଇଥିଲା । ଗଳ୍ପ ସମଗ୍ର-୨ ରେ ଏହାର ଶୀର୍ଷକ ପରିବର୍ତ୍ତନ ହୋଇଛି 'ଗୋଟିଏ ମକଦ୍ଦମାର ନଥି' । ଗଳ୍ପ ସମଗ୍ର-୧ ଓ ଗଳ୍ପ ସମଗ୍ର-୨ ରେ ମୋଟ ୬୭ଟି ଗଳ୍ପ ସଂକଳିତ । ବାକି ୧୨ଟି ଗଳ୍ପ ବାଦ୍ ପଡିଛି । ସେମିତି ବାମାଚରଣଙ୍କ ଲୀଳାବିଧୂତ କଳେବର ଗଳ୍ପଟି କୌଣସି ସଂକଳନଭୁକ୍ତ ହୋଇନାହିଁ । ବୈଜ୍ଞାନିକର ବିବାହ, ବିଚ୍ଛାଙ୍କିକା, ଶରଶଯ୍ୟା ପ୍ରଭୃତି ନାଟକ । କିନ୍ତୁ ପ୍ରଥମ ଦୁଇଟି ଯଥାକ୍ରମେ ବଟ ମହାପୁରୁଷ ଓ ମହାପୁରୁଷବାଗରେ ସ୍ଥାନିତ

ହେଲାବେଳେ ଶରଶଯ୍ୟା ୫ଙ୍କାର ପୃଷ୍ଠାରେ ପ୍ରକାଶିତ ଅଥଚ କୌଣସି ସଂକଳନଭୁକ୍ତ ହୋଇନାହିଁ । ମରହଟ୍ଟୀ ଗଳ୍ପଟି ପ୍ରଥମେ 'ବଟ ମହାପୁରୁଷ' ସଂକଳନରେ ପ୍ରକାଶିତ । ଏଥିରେ ଏହା Sir Arthur Conan Doyle M.Dଙ୍କର Behind The Times କ୍ଷୁଦ୍ରଗଳ୍ପର ଅନୁବାଦ ଏବଂ ଅନୁବାଦକ ଜ୍ୟୋତିନ୍ଦ୍ର ମୋହନ ଜୋଆରଦାର ସୂଚିତ ହୋଇଛି । ତଥାପି ମଧ ଗଳ୍ପଟି ମିତ୍ରଗଳ୍ପରେ ଦୃଷ୍ଟିଗୋଚର ହୁଏ ଏବଂ ୫ଙ୍କାର (୭/୯) ରେ ମଧ ଅନୁବାଦକ ଜୋଆରଦାର ସୂଚିତ ହୋଇଛି । ୫ଙ୍କାର ୯/୮ରେ ନାରୀ ମହଲ ଗଳ୍ପଟି ପ୍ରକାଶିତ । ପରେ ଏହା ସ୍ୱର୍ଗାଦପୀ ଗରିୟସୀ ଶୀର୍ଷକରେ ବଟମହାପୁରୁଷ ସଂକଳନରେ ଅର୍ନ୍ତଭୁକ୍ତ । ଏହି ଗଳ୍ପଟି ମିତ୍ରକଳ୍ପ ଓ ଗଳ୍ପସମଗ୍ର-୧ ରେ ଶୀର୍ଷକ ସଂକ୍ଷେପିକରଣ କରାଯାଇ ହୋଇଛି ସ୍ୱର୍ଗାଦପି । ଏହି ସମସ୍ତ ଖଣ୍ଡନ ମଣ୍ଡନ ବାମାଚରଣଙ୍କ ମୃତ୍ୟୁ ପରେ ହୋଇଛି । କେହି କେହି ସମାଲୋଚକ ମତପୋଷଣ କରନ୍ତି ମିତ୍ରଗଳ୍ପ, ମିତ୍ରକଳ୍ପ, ମିତ୍ରସ୍ୱଳ୍ପର ଯୋଜନା ବାମାଚରଣ ନିଜ ଜୀବଦ୍ଦଶାରେ କରିଥିଲେ । ତାଙ୍କ ଯୋଜନା ମୁତାବକ ଗଳ୍ପ ଗୁଡିକ ବିଭିନ୍ନ ସଂକଳନରେ ସ୍ଥାନିତ । ଏହି ଉକ୍ତି ସପକ୍ଷରେ କୌଣସି ପ୍ରମାଣ ଆମ ପାଖରେ ନାହିଁ । କିନ୍ତୁ ସଂକଳନ ଗୁଡିକର ବିଭାଗିକରଣରୁ ସ୍ପଷ୍ଟ ହୁଏ ଏ ଗୁଡିକରେ କୌଣସି ନିର୍ଦ୍ଦିଷ୍ଟ ପଦ୍ଧତି ବା ଯୁକ୍ତିପୂର୍ଣ୍ଣ ଧାରା ଅନୁସୃତ ହୋଇନାହିଁ । ଗଳ୍ପ ଗୁଡିକ ସଜ୍ଜିତ କଲାବେଳେ ପ୍ରକାଶକାଳ ବା ଭାବଧାରା କୌଣସିଟିକୁ ପ୍ରାଧାନ୍ୟ ଦିଆଯାଇନାହିଁ । ଗଳ୍ପ ସମଗ୍ର -୧ ଓ ୨ରେ ମଧ କୌଣସି ସଂପାଦନା ଧାରା ଗ୍ରହଣ କରାଯାଇନାହିଁ ।

ଲୀଳା ବିଧୃତ କଳେବର ବାମାଚରଣଙ୍କ ଏକ ଅନନ୍ୟ ଗଳ୍ପ ସୃଷ୍ଟି । ଏହା ମାନସ ନଭେମ୍ବର - ୧୯୭୨ ସଂଖ୍ୟାରେ ପ୍ରକାଶିତ ହୋଇଥିଲେ ମଧ କୌଣସି ସଂକଳନଭୁକ୍ତ ହୋଇନାହିଁ । ଆଧୁନିକ ଜୀବନ ଧାରାକୁ ବ୍ୟଙ୍ଗାତ୍ମକ ଦୃଷ୍ଟିରେ ଏହି ଗଳ୍ପରେ ପରିବେଷଣ କରାଯାଇଛି । ଗଳ୍ପରେ ମୁଖ୍ୟତଃ ସାମାଜିକ, ମାନସିକ, ସାଂସ୍କୃତିକ ଉତ୍‌ଥାପନ ତଥା ତାର ଆନୁସଙ୍ଗିକ ବିକାଶ ସାଧନ ଓ ଉତ୍ତରିତ ପ୍ରେକ୍ଷାରେ ସମାଧାନରେ ହିଁ ଗଳ୍ପଟିର ଉତ୍କର୍ଷତା ନିହିତ । କାର୍ଯ୍ୟ କାରଣ ନଥାଇ ଘଟଣା ଘଟିଚାଲିଛି । ଜନସାଧାରଣ ଅଶାନ୍ତ ଅତୃପ୍ତ; ଯିଏ ଯେଉଁଠି ଥାଉନା କାହିଁକି ସେ ଅଶାନ୍ତ । ସବୁକିଛି ଭାଙ୍ଗିରୁଜି ନୂଆ ଗଢିବାର ଚିରନ୍ତନ ପ୍ରତ୍ୟୟ ମଣିଷକୁ ଆଗକୁ ଧାଇଁବାକୁ ପ୍ରଚୋଦିତ କରୁଛି । ଉତ୍‌କ୍ଷିପ୍ତ ମଣିଷର ସ୍ରୋତ ବୀପ୍ଲବାତ୍ମକ ଢଙ୍ଗରେ ମାର ମାର ହାଣ ହାଣ କହି ଆଗକୁ ବଢିଚାଲିଛି । ବିଭିନ୍ନ ସ୍ତରର ଲୋକ ମିଶିଛନ୍ତି । ଚାକିରୀଆ, ବୁଦ୍ଧିଜୀବୀ, ମୂଲିଆ, ନେତା, ସର୍କସ ବାଲା ସମସ୍ତେ ନିଜ ଭିତରେ ଅଶାନ୍ତ । ସେ ଅଣନିଶ୍ୱାସୀ ଦୌଡିବା ଭିତରେ ପ୍ରେମ, ଯନ୍ତଣା, ଦୁଃଖ, ଐଶ୍ୱର୍ଯ୍ୟ, ବିଳାସର ଚିତ୍ର ଭାସି ଆସୁଛି । ବିଶୃଙ୍ଖଳିତ ଜନତା କିନ୍ତୁ ଆଭିମୂଖ୍ୟ ଏକ ଗତାନୁଗତିକ ଧାରାକୁ ଭାଙ୍ଗିବା । ଏହି ଜନତାର ପଟୁଆର ହଠାତ୍ ସ୍ତବ୍ଧ ହୋଇଯାଇଛି ଜଣେ ଗବେଷଣା ମୁଗ୍ଧ ବୈଜ୍ଞାନିକଙ୍କ ନିକଟରେ । ବୈଜ୍ଞାନିକ ଜଣକ ଆଣ୍ଠୁମାଡି ଯବକାଚ

ଦ୍ୱାରା ନିବିଷ୍ଟ ଚିତ୍ତରେ ରାସ୍ତାକୁ ନିରିକ୍ଷଣ କରୁଛନ୍ତି । ଜନତାଙ୍କୁ ସେ ହାତ ହଲାଇ ଗତିରୋଧ କରି କହିଲେ - "ଆପଣମାନେ କାହିଁକି ଏତେ ଉତ୍‌କ୍ଷିପ୍ତ ମୁଁ ଜାଣେନା । କିନ୍ତୁ ବର୍ତ୍ତମାନ ହୁଏତ ଅନେକ ବେଳଯାଏ ଆପଣମାନଙ୍କୁ ଟିକେ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ପଡିବ । କାରଣ ଜଣେ ଭଦ୍ର ଲୋକ ଓ ଜଣେ ଭଦ୍ର ମହିଳା ପ୍ରକୃତିଙ୍କ ଅପୂର୍ବ ସୃଷ୍ଟି ପ୍ରକ୍ରିୟା ପାଇଁ ଏଠାରେ ବର୍ତ୍ତମାନ କାମ ମୋହିତ ଅବସ୍ଥାରେ ଅଛନ୍ତି । ଅତଏବ ନ ଖଳୁ ନଖଳୁ ହନ୍ତବ୍ୟ..." ପରେ ପରେ ଲୋକଙ୍କ ଅନୁରୋଧ କ୍ରମେ ଘଟଣାକୁ ନିରୀକ୍ଷଣ କରି ଧାରା ବିବରଣୀ ପ୍ରଦାନ କରିଛନ୍ତି ବୈଜ୍ଞାନିକ । ଦୁଇଟି ସାମାନ୍ୟ ପୋକଙ୍କ ରତିକ୍ରୀଡା । ଶ୍ରୀମତୀ ରଙ୍ଗଣୀ ଦେବୀ ଓ ଶ୍ରୀଯୁକ୍ତ ସ୍ୱର୍ଣ୍ଣକୁମାର ଅଭିଧାରେ ଚିହ୍ନିତକରି ତାଙ୍କର ପ୍ରେମର ଧାରା ବିବରଣୀ ପ୍ରଦାନ କରାଯାଇଛି । ଏହି ଧାରା ବିବରଣୀ ଭିତରେ ବିଶ୍ୱର ବହୁ ପ୍ରେମ ବ୍ୟାପାର ଘୋଷିତ ହୋଇଛି । ଏହା ଯେତିକି ହାସ୍ୟ ଉଦ୍ରେକକାରୀ ସେତିକି କରୁଣ ଓ ଶ୍ରୁତିମଧୁର । ସେ ଅଲୌକିକ ରତିକ୍ରୀଡାର ଧାରାବିବରଣୀ ସହିତ ଉତ୍‌କ୍ଷିପ୍ତ ଜନତା ଜୟଧ୍ୱନି ଓ ହୁଳହୁଳି ଦେଇଛନ୍ତି ଏବଂ ସେହି ଆନନ୍ଦମୟ ପରିବେଶରେ ଏକ ଭୋଜି ସାମୂହିକ ଚାନ୍ଦାରେ ଅନୁଷ୍ଠିତ ହୋଇଛି ।ଏମିତି ଏକ ବିରଳ ଏବଂ ଅନନ୍ୟ କଥାକୁ ନେଇ ବାମାଚରଣଙ୍କ "ଲୀଳା ବିଧୃତ କଳେବର" ଗଳ୍ପ ମହୀୟାନ ଓ ଋଦ୍ଧିମନ୍ତ । ଏହାକୁ ବାମାଚରଣଙ୍କ ଅନ୍ୟତମ ଶ୍ରେଷ୍ଠ ଗଳ୍ପ ରୂପେ ସ୍ୱୀକାର କରାଯାଇପାରେ ।

ବାମାଚରଣ ଶାସ୍ତ୍ରୀୟ ସଂଗୀତର ଏକନିଷ୍ଠ ପୂଜାରୀ ଥିଲେ । ସଂଗୀତ ଉପରେ ତାଙ୍କର ଜ୍ଞାନ ଅତ୍ୟନ୍ତ ନିବିଡ । ସଂଗୀତ ଜ୍ଞାନର ପରାକାଷ୍ଠାକୁ ଉପଜୀବ୍ୟ କରି ସେ ଫୈୟାଜ ଖାଁ ରମ୍ୟରଚନା ଲେଖିଥିଲେ । ଏହି ପ୍ରସଙ୍ଗରେ ସେ ଅମୀୟନାଥ ସାନ୍ୟାଲଙ୍କ "ସ୍ମୃତିର ଅତଳେ"ପୁସ୍ତକକୁ ଗଭୀର ଭାବେ ଅଧ୍ୟୟନ କରିଥିଲେ । ଏହି ପୁସ୍ତକର ଭାବବୋଧରେ ଆକୃଷ୍ଟ ବାମାଚରଣ ଏହାକୁ ଓଡିଆ ପାଠକଙ୍କ ଅବଗତି ପାଇଁ ଅନୁବାଦ କରିଥିଲେ । ତାଙ୍କର ଏହି କୃତବିଦ୍ୟ ଅନୁବାଦ କାର୍ଯ୍ୟକୁ ସ୍ୱାଗତ କରି ମାହାପାତ୍ର ନୀଳମଣି ସାହୁ ଉଦାତ୍ତ କଣ୍ଠରେ ଘୋଷଣା କରନ୍ତି - "କଳାତତ୍ତ୍ୱବିଦ୍‌ମାନଙ୍କ ମତରେ ସଙ୍ଗୀତ ହିଁ ସର୍ବଶ୍ରେଷ୍ଠ କଳା । ସ୍ୱରସଂଗତି ମାଧ୍ୟମରେ ଗାୟକ ଓ ଶ୍ରୋତା ଉଭୟେ ଅତି ସହଜରେ ରସଲୋକକୁ ଉତ୍ତୀର୍ଣ୍ଣ ହୋଇଯାନ୍ତି ଏବଂ ବ୍ରହ୍ମାନନ୍ଦ ସହୋଦର ତୁଲ୍ୟ ଏକ ଆସ୍ୱାଦନ ଲାଭ କରନ୍ତି । ଏବଂ ଯେଉଁମାନେ ପ୍ରତିଭାବାନ ସଙ୍ଗୀତଜ୍ଞ ସେମାନଙ୍କ ଜୀବନ ମଧ୍ୟ ସେହିପରି ସଙ୍ଗୀତମୟ । ବହୁ ରମଣୀୟ ଚମତ୍କାରିତାରେ ଏବଂ ପରମ ଭାବୁକତା ଓ ଭାବାବେଗରେ ବିଚିତ୍ର ବର୍ଣ୍ଣାଢ୍ୟ ଏହି ସବୁ ସଙ୍ଗୀତଜ୍ଞମାନଙ୍କ ଜୀବନ ଲୀଳା ଓଡିଆ ପାଠକମାନଙ୍କ ଆଗରେ ପରିବେଷଣ କରି ବାମାଚରଣ ଆମର କୃତଜ୍ଞତା ଭାଜନ ହୋଇଛନ୍ତି ।" (ମହାପାତ୍ର ନୀଳମଣି ସାହୁ : ସ୍ମୃତିର ଅତଳେ, ଅଗ୍ରଦୂତ-୧୯୭୭) । ଏହି ପୁସ୍ତକରେ ତିନିଜଣ ପ୍ରଖ୍ୟାତ ସଙ୍ଗୀତଜ୍ଞଙ୍କ ଜୀବନକଥା ବର୍ଣ୍ଣିତ । ୧ - ଶ୍ରୁତିଧର ମୌଜୁଦ୍‌ଦୀନ, ୨ - ଆଫତାବ-

ଏ-ମୌସିକୀ ଫୈୟାଜ ଖାଁ, ୩ - କାଲେ ଖାଁ (କାଳିଆ ସୁନା) । ପୁସ୍ତକଟି ବାମାଚରଣଙ୍କ ମୃତ୍ୟୁପରେ ପ୍ରକାଶିତ ।

ବାମାଚରଣଙ୍କ ଗଳ୍ପ ସମୂହରେ ସାମାଜିକ ଜୀବନର ଅନନୁଭୂତ ଅନୁଭୂତି, ଘଟଣା ପ୍ରବାହର ଧାରା ଅତି ଚମତ୍କାର । ଶିଶୁ ମନସ୍ତତ୍ତ୍ୱ ଏବଂ ନାରୀ ଜୀବନର ଅକୁହା ବେଦନାକୁ ସେ ସଂଗୁପ୍ତ ଭାବାବେଗର ଅନୁଶୀଳନ ମାଧ୍ୟମରେ ପ୍ରଥମ ଥର ପ୍ରକାଶ କରିଛନ୍ତି ଓଡିଆ ସାହିତ୍ୟରେ । ଶୈଳୀ ତାଙ୍କର ତଟିନୀ ପରି କଳକଳ ନାଦିନୀ । ରୁଚିପୂର୍ଣ୍ଣ ବ୍ୟଙ୍ଗ ଏବଂ ନିଭୃତ ହାସ୍ୟରସର ପ୍ରବାହ ମଧ୍ୟରେ ତାଙ୍କର ଶୈଳୀ ସାବଲୀଳ ଏବଂ ଆକର୍ଷଣୀୟ । ଜୀବନ ଯନ୍ତ୍ରଣାର କ୍ଲାନ୍ତିକର ପୃଷ୍ଠଭୂମିକୁ ଅପୂର୍ବ ତାତ୍ତ୍ୱିକ ମହକରେ ପୁନଃନିର୍ମାଣ ଏବଂ ତହିଁରେ ଘଟନାୟନର ଚାତୁରୀ ପ୍ରତିଟି ଗଳ୍ପକୁ ଦେଇଛି ଅପରୂପ ମାଧୁରୀ । ଜୀବନ ଦର୍ଶନର ଗୂଢତତ୍ତ୍ୱ ବାମାଚରଣଙ୍କ କାହାଣୀଧର୍ମିତାର ଚାଦର ତଳେ ପାଇଛି ନୂତନତାର ସ୍ପର୍ଶ ଅପରୂପ ଗତିଶୀଳତା ।

ସମାଜ ଓ ସଂସ୍କୃତିର ଅପୁର୍ବ ସଂଶ୍ଳେଷଣ ମାଧ୍ୟମରେ ନୂତନ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ବାମାଚରଣଙ୍କ ଗଳ୍ପଚର୍ଯ୍ୟା । ଜୀବନାନୁଭୂତିରେ ରସାଣିତ ଆଧ୍ୟାତ୍ମିକତାରେ ସିକ୍ତ ମହନୀୟ ପ୍ରାଣ ପ୍ରବାହ ହିଁ ତାଙ୍କ ଗଳ୍ପର ଭାବବସ୍ତୁ । ପାରମ୍ପରିକ ବିଶ୍ୱାସର ମୂଲ୍ୟବୋଧକୁ ସର୍ବଜନୀନ ଓ ସର୍ବକାଳିକ ଭାବ ଆବେଦନ ପ୍ରଦାନ କରି ବୃହତ୍ତର ମାନବ ଗୋଷ୍ଠୀର ସତ୍ୟାନୁସରଣ ହିଁ ତାଙ୍କର ଗଳ୍ପକୁ ଶିଖରଚୂମ୍ବୀ କରିଛି । ପରଂପରାର ଦ୍ୱାହିଦେଇ ସେ ଅନ୍ଧ କୁସଂସ୍କାରକୁ ଆପଣେଇ ନେଇନାହାନ୍ତି ବରଂ ମଣିଷର ଅନ୍ତର୍ନିହିତ ସୌନ୍ଦର୍ଯ୍ୟର ଉର୍ଦ୍ଧ୍ୱାୟନ ଦେଇ ମହତ୍ତର ଗଳ୍ପ ସାହିତ୍ୟର ପ୍ରତିଷ୍ଠା କରିଛନ୍ତି । ଚିରନ୍ତନତା ଓ ଶାଶ୍ୱତ ଜୀବନ ଦୀପ୍ତିରେ ଉର୍ଜ୍ଜସ୍ୱଳ ବାମାଚରଣଙ୍କ ଗଳ୍ପ ସାମ୍ରାଜ୍ୟ ଓଡିଆ ସାହିତ୍ୟର ବହୁମୂଲ୍ୟ କୋଠ ସଂପତ୍ତି । ଫକୀରମୋହନ, ଚନ୍ଦ୍ରଶେଖର ନନ୍ଦଙ୍କ ସଂସ୍ଥାପିତ ଗଳ୍ପ ସାହିତ୍ୟର ସୁଦୃଢ ଭିତ୍ତିକୁ ଗୋଦାବରୀଶ ମହାପାତ୍ର, କାଳନ୍ଦୀ ପାଣିଗ୍ରାହୀ, ଅନନ୍ତ ପଣ୍ଡା, ଗୋପୀନାଥ ମହାନ୍ତି, ବ୍ରହ୍ମାନନ୍ଦ ପଣ୍ଡା, ସୁରେନ୍ଦ୍ର ମହାନ୍ତି ପ୍ରମୁଖ ବହୁ ଆୟାମ ବିଶିଷ୍ଟ କରିଥିଲେ । ଏହି ପ୍ରେକ୍ଷାପଟରେ ବାମାଚରଣ ମିତ୍ର ନିଜସ୍ୱ ମୌଳିକତାରେ ଏକ କ୍ଷୀଣ ବାତାୟନ ସୃଷ୍ଟି କରିବାରେ ସଫଳ ହୋଇଥିଲେ । ଏହି ବାତାୟନ ମାଧ୍ୟମରେ ଏକ ନିର୍ଭେଜାଲ ଗଳ୍ପ ସାହିତ୍ୟର କଳା କାରିଗରୀ ସୁସ୍ପଷ୍ଟ ହୋଇଥିଲା । ଅନ୍ୟ ପକ୍ଷରେ ବିଶ୍ଳେଷଣ କଲେ ଦେଖାଯାଏ କାଳିନ୍ଦୀ ପାଣିଗ୍ରାହୀ, ଅନନ୍ତ ପ୍ରସାଦ ପଣ୍ଡା, ଗୋପିନାଥ ମହାନ୍ତି, ପ୍ରାଣବନ୍ଧୁ କର, ସୁରେନ୍ଦ୍ର ମହାନ୍ତି ପ୍ରମୁଖଙ୍କ ଦିଗ୍ ବ୍ୟାପିନୀ ଗଳ୍ପ କର୍ମର ପ୍ରଭାବ ବାମାଚରଣଙ୍କ ସୃଷ୍ଟି ଆବେଦନକୁ ଗଳ୍ପ ଗନ୍ତାଘରର ଗୋଟିଏ କୋଣକୁ ଠେଲି ଦେଇଥିଲା ।

ଓଡିଆ ସାହିତ୍ୟର ଅନ୍ୟତମ ବଳିଷ୍ଠ ମୁଖପତ୍ର ଉତ୍କଳ ସାହିତ୍ୟରେ ବିଭିନ୍ନ ଗାଳ୍ପିକଙ୍କ ଗଳ୍ପ ପ୍ରକାଶନ କ୍ରମକୁ ଅନୁଶୀଳନ କଲେ ଉପରୋକ୍ତ ମନ୍ତବ୍ୟର ସତ୍ୟତା ସିଦ୍ଧ ହୋଇଥାଏ ।

ଉତ୍କଳ ସାହିତ୍ୟ ନୂତନ ପ୍ରସ୍ଥ ୧/୧, ୧୯୫୪-୫୫ ସଂଖ୍ୟାରେ ବାମାଚରଣଙ୍କ ଗଳ୍ପ 'ନନ୍ଦକୁଳେ' ପ୍ରକାଶ ପାଏ । ପରବର୍ତ୍ତୀ ସଂଖ୍ୟା ମାନଙ୍କରେ ସଂକଟ, ବାତାୟନ, ଜଳସ୍ତମ୍ଭ,ଚଳଚିତ୍ର, ଲଡ୍‌ଡୁ, କଷ୍ଟେପୁତ୍ରଃ, ଜୀବନ ଓ ଜୀବିକା ପ୍ରଭୃତି ଗଳ୍ପ ପ୍ରକାଶିତ । ଅନ୍ୟପକ୍ଷରେ ସମକାଳୀନ ଗାଳ୍ପିକ କାଳନ୍ଦୀ ଚରଣଙ୍କ ପ୍ରଥମ ଗଳ୍ପ ଆତ୍ମକାହାଣୀ ଉତ୍କଳ ସାହିତ୍ୟ ୨୪/୭(୧୯୨୦-୨୧)ରେ, ଅନନ୍ତ ପଣ୍ଡାଙ୍କ 'ଅତୃପ୍ତ ବାସନା'୩୦/୫ (୧୯୨୬-୭)ରେ, ସୁରେନ୍ଦ୍ର ମହାନ୍ତିଙ୍କ ବନ୍ଦୀ ୪୧/୫(୧୯୩୭-୩୮)ରେ, ପ୍ରାଣବଂଧୁ କରଙ୍କ ଗୀତ ମାଷ୍ଟର ୪୦/୬(୧୯୩୬-୩୭)ରେ ପ୍ରକାଶ ପାଇ ସେମାନଙ୍କୁ ଗାଳ୍ପିକର ସୁଖ୍ୟାତି ପ୍ରଦାନ କରିଥିଲା । ଗୋପୀନାଥ ମହାନ୍ତି ଓ ଗୋଦାବରୀଶ ମହାପାତ୍ର ଉତ୍କଳ ସାହିତ୍ୟ ପତ୍ରିକାରେ ବାମାଚରଣ ମିତ୍ରଙ୍କ ପରେ ଗଳ୍ପ ରଚନା କରି ମଧ୍ୟ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଏମାନଙ୍କ ଅନେକ ଗଳ୍ପ ସହକାର ପ୍ରଭୃତି ପତ୍ରିକାରେ ପୂର୍ବରୁ ପ୍ରକାଶିତ । ଉତ୍କଳ ସାହିତ୍ୟ ନୂତନ ପ୍ରସ୍ଥ ୧/୬ (୧୯୫୪-୫୫)ରେ ଗୋପୀନାଥ ମହାନ୍ତିଙ୍କ 'କୂଅ' ଏବଂ ୨/୯(୧୯୫୫-୫୬) ରେ ଗୋଦାବରୀଶ ମହାପାତ୍ରଙ୍କ 'ଓଡିଶାର ମଶାଣି ଭିତରୁ'ଗଳ୍ପ ପ୍ରକାଶ ପାଇଥିଲା ।

ସୁରେନ୍ଦ୍ର ମହାନ୍ତି, ଗୋପିନାଥ ମହାନ୍ତି, କାଳିନ୍ଦୀ ପାଣିଗ୍ରାହୀ, ଗୋଦାବରୀଶ ମହାପାତ୍ର, ପ୍ରାଣବଂଧୁ କର, ଅନନ୍ତ ପଣ୍ଡା, ରାଜ କିଶୋର ରାୟ, ଅଖିଳ ପଟ୍ଟନାୟକ ପ୍ରମୁଖଙ୍କ ଗଳ୍ପ ଚାତୁର୍ଯ୍ୟ ଭିତରେ ବାମାଚରଣଙ୍କ ଗଳ୍ପ ସମଗ୍ର ନିଜସ୍ୱ ଦୀପ୍ତିରେ ପ୍ରତିଭାତ ହୋଇଛି ଏହାହିଁ ଆଶ୍ୱାସନାର ବିଷୟ । ସମାଲୋଚକୀୟ ଦୃଷ୍ଟି ଉପରୋକ୍ତ ଗାଳ୍ପିକଙ୍କ ବିଭା ଭିତରେ ଏତେ ମାତ୍ରାରେ ଆକ୍ରାନ୍ତ ଯେ ସେମାନେ ଅନ୍ୟାନ୍ୟ ଗାଳ୍ପିକଙ୍କ ସୃଷ୍ଟି ପ୍ରତି ଉଦାସୀନ । ସେ ଯାହାହେଉ ବାମାଚରଣଙ୍କ ଗଳ୍ପ ସୃଷ୍ଟିର ଦିଗବଳୟକୁ ସାମାନ୍ୟ ଦୃଷ୍ଟିପାତ କରିବା ଏହି ପ୍ରସଙ୍ଗର ଆଭିମୁଖ୍ୟ ।

ସକଳ ହେତୁବାଦୀ ଚିନ୍ତନ ପ୍ରତି ଆସ୍ଥା ପ୍ରକଟକରି ମହତ୍ତର ଜୀବନ ଭୋଗର ଯାଚଞ୍ଚା କରନ୍ତି ବାମାଚରଣ । ଜୀବନ୍ମୟ ତାଙ୍କର ପ୍ରକାଶନ ସ୍ପର୍ଦ୍ଧିତ ତାଙ୍କର ଉଚ୍ଚାରଣ । ପ୍ରତିଟି ଗଳ୍ପ ମାନବୀୟ ଗୁଣର ନିର୍ମୋହ ପ୍ରକଟନ ସହିତ ସମାଜ ଜୀବନର ମହତ୍ତ୍ୱାକାଂକ୍ଷାକୁ ରୂପ ଦିଏ । ବିଜ୍ଞାନସିଦ୍ଧ ଧାର୍ମିକତା, ପାରଂପରିକ ଦାୟବଦ୍ଧତାକୁ ଉପଜୀବ୍ୟ କଲେ ମଧ୍ୟ ବାମାଚରଣଙ୍କ ଗଳ୍ପ ଉଚ୍ଚତ୍ତର ଅଭିଳାଷ ଓ ସତ୍ୟଶୀଳତାକୁ ଆଧୁନିକ ଚେତନା ସହିତ ସମନ୍ୱିତ କରେ । ତେଣୁ ତାଙ୍କର ପ୍ରତିଟି ଗଳ୍ପ ସାଧାରଣ ବିଷୟ ଗର୍ଭିତ ହେଲେ ମଧ୍ୟ ପ୍ରଜ୍ଞାଶୀଳ ଓ ରୋଚକ । ସମର୍ଥ ଓ ଦୃଢ ବାକ୍ୟବିନ୍ୟାସ ଭିତରେ କାବ୍ୟିକ ତାରଲ୍ୟ ଭାଷାକୁ ଅପରୂପ କୌଳିନ୍ୟ ପ୍ରଦାନ କରିଛି । ବ୍ୟଞ୍ଜନାତ୍ମକ ଉପସ୍ଥାପନା ସମୃଦ୍ଧ ଓ ଶ୍ରୀ ମଣ୍ଡିତ ହୋଇଛି ।

ବାମାଚରଣଙ୍କ ଗଳ୍ପ ଓଡିଆ ସାହିତ୍ୟର ଏକ ଅମଳିନ ଭାସ୍କର୍ଯ୍ୟ । ମିମିର ସାହିତ୍ୟ ଶିକ୍ଷା, ସ୍ୱପ୍ନସିଦ୍ଧ, ଅମୃତସ୍ୟ ପୁତ୍ରାଃ, ବାବା ଡହରାନନ୍ଦଙ୍କ ରୋମାଞ୍ଚକର କାହାଣୀ, ଜୀବନ ଓ ଜୀବିକା, ମହାପୁରୁଷ ବାଗ, ଲଡ୍‌ଡୁ, ଗୋଟିଏ ମକଦ୍ଦମାର ନଥି ପ୍ରଭୃତି ଗଳ୍ପ ବିଭିନ୍ନ ପ୍ରସଙ୍ଗର ପ୍ରାରମ୍ଭିକ ଗଳ୍ପାୟନ ।

'ମିମିର ସାହିତ୍ୟ ଶିକ୍ଷା' ଗଳ୍ପରେ ଶିଶୁ ମନସ୍ତତ୍ତ୍ୱର ସୁନ୍ଦର ବିଶ୍ଳେଷଣ ସହିତ ସାହିତ୍ୟର ସ୍ୱରୂପ ଉଦ୍‌ଘାଟନର ପ୍ରଚେଷ୍ଟା ମହାର୍ଘ ହୋଇଛି । ଯୁକ୍ତି ଓ ବୁଦ୍ଧିବାଦର ଦୌଡରେ ସାହିତ୍ୟ ଚିରଦିନ ବଳିବନ୍ଧ । ହୃଦୟ ଓ ମାନବୀୟ ସଂବେଗଦ୍ୱାରା ସାହିତ୍ୟ ଯୁଗଯୁଗ ଧରି ବିକଶିତ । ମିମି କୌତୁହଳ ପରବଶ ହୋଇ ବଡବାପାଙ୍କୁ ଯେତେବେଳେ "ଏ ହୃଦୟ ମୋର ଢାଳିଦେଲି ଆଜି ତୁମରି ପାଦେ ହେ ନାଥ" ସରଳାର୍ଥ ପ୍ରସଙ୍ଗରେ 'ହୃଦୟ ଢାଳିଲା କେମିତି' ବୋଲି ପଚାରିଛି । ତା'ର ଉତ୍ତରରେ ବଡବାପା କୁହନ୍ତି "ହୃଦୟକୁ କେମିତି ଢାଳନ୍ତି ସେକଥା ମୁଁ ଏ ପର୍ଯ୍ୟନ୍ତ ବୁଝିପାରି ନାହିଁ, ତୋତେ କଅଣ ବୁଝାଇବି । ଆଉ ସେ କବିତା ବୁଝିଛି ବୋଲି ବି ମୁଁ ଭାବୁନାହିଁ ।" ଭାବ ବ୍ୟାକୁଳ ତନ୍ମୟତାରେ ଅଧିଷ୍ଠିତ ସାହିତ୍ୟ ବୁଦ୍ଧି ଅପେକ୍ଷା ହୃଦୟର ଅଧିକ ବଶଂବଦ । ସାମାନ୍ୟ ଶିଶୁକୁ ମାଧ୍ୟମ କରି ସାହିତ୍ୟର ବିରାଟ ତତ୍ତ୍ୱକୁ ଖୁବ ସୁନ୍ଦର ଭାବେ ବାମାଚରଣ ପରିବେଷଣ କରିଛନ୍ତି ଓ ସଫଳ ହୋଇଛନ୍ତି । 'ନନ୍ଦକୁଳେ' ଏହି ପର୍ଯ୍ୟାୟର ଏକ ଅପରୂପ ସୃଷ୍ଟି । ଅସଫଳ ପିତା ନିଜ ସ୍ୱପ୍ନକୁ ପୁତ୍ର ମାଧ୍ୟମରେ ସାକାର କରିବାର ନିଷ୍ଫଳ ଆଶାର ହାସ୍ୟାସ୍ପଦ ପରିଣତି ବେଶ୍ କଳାତ୍ମକ । ସ୍ୱପ୍ନସିଦ୍ଧ ଗଳ୍ପରେ ଶିଶୁ ମନସ୍ତତ୍ତ୍ୱକୁ ଅତି ପ୍ରାଞ୍ଜଳଭାବରେ ଅବତାରଣା କରିଛନ୍ତି ଗାଳ୍ପିକ । ଯେଉଁଥିରେ ତୁଳନାତ୍ମକ ଭାବରେ ଆଧୁନିକ ସାହିତ୍ୟର ଦୁର୍ବୋଧତା ଓ ଲୋକ ସାହିତ୍ୟର ଗୀତିମୟତାକୁ ପରିବେଷଣ କରାଯାଇଛି । ଭାଇ ଭଉଣୀଙ୍କ ସାମୟିକ ଝଗଡା ମଧ୍ୟରେ ମଧ୍ୟ କେମିତି ଭାଇ ସ୍ୱପ୍ନରେ ଭଉଣୀକୁ ବାଘ ନେଉଥିବାରୁ ବନ୍ଧୁକ ଧରି ବାଘ ଶିକାରକୁ ତୟାର ହୋଇଛି । ତାହା ଚମତ୍କାର ଭାବେ ଉପସ୍ଥାପିତ ।

ଜନସଂଖ୍ୟା (ଅମୃତସ୍ୟ ପୁତ୍ରାଃ) ଗଳ୍ପରେ ମେଟେରନିଟି ଓ୍ୟାର୍ଡର ଦୃଶ୍ୟକୁ କଳାତ୍ମକ ଭାବେ ବାମାଚରଣ ବର୍ଣ୍ଣନା କରିଛନ୍ତି । ଏଥିରେ ଯାବତୀୟ ଦୁଃଖ ଯନ୍ତ୍ରଣା ଭିତରେ ମାତୃତ୍ୱର ଆସ୍ୱାଦ କିପରି ଅମୃତମୟ ତାହାହିଁ ବର୍ଣ୍ଣିତ । ସାଧାରଣ ଘଟଣାକୁ ଅସାଧାରଣ ଭାବଭୂମିରେ ପରିବେଷଣ କରିବା ଦିଗରେ ତାଙ୍କର ଗଳ୍ପର କୃତିତ୍ୱ ପ୍ରକାଶିତ ।

ବ୍ୟକ୍ତି ଜୀବନର ଅପାରଂପରିକ ନିରୀହତା, ସରଳ ନିଷ୍କପଟ ଜୀବନଚର୍ଯ୍ୟା ବାମାଚରଣଙ୍କ ଲେଖନୀରେ ଜୀବନ୍ତ ଭାବେ ଫୁଟିଉଠିଛି । 'ମହାପୁରୁଷ ବାଗ' ଗଳ୍ପରେ ସଂଗୀତ ପ୍ରିୟ ସାଧାରଣ ରାମାରାଓ ଭାରତର ନିରୀହ ଜନସାଧାରଣଙ୍କ ପ୍ରତିନିଧିତ୍ୱ କରୁଛି । ନେତାମାନଙ୍କ ମିଥ୍ୟା ପ୍ରତିଶ୍ରୁତି ଓ ଛଳନାର ଶିକାର ହୋଇଛି ରାମାରାଓ । ନେତାଙ୍କ ମିଥ୍ୟା ଭାଷଣରେ ପ୍ରଲୁବ୍ଧ ରାମାରାଓ ବଡବଡିଆଙ୍କ ପାଇଁ ଉଦିଷ୍ଟ ବିଳାସପୂର୍ଣ୍ଣ ମହାପୁରୁଷ

ବାଗରେ ପ୍ରବେଶକରି ନିର୍ଯ୍ୟାତନା ଭୋଗକରିଛି । ଉଗ୍ର ଆଧୁନିକତାର ଯୂପକାଷ୍ଠର କାମନା, ଶଠତା ଓ ଛଳନାରେ ବଳୀ ପଡ଼ିଛନ୍ତି ରାମାରାଓ ଓ ତାର ନିରିହା ପତ୍ନୀ । 'ଲଡଡୁ' ଗଳ୍ପରେ ମଧ୍ୟବିତ୍ତ ପରିବାରର ଦାରିଦ୍ର୍ୟ ଭିତରେ ନିଷ୍ପେସିତ କାମନା ପ୍ରକାଶିତ । ଦିଲମୋହିନୀ ଲଡଡୁ ଖାଇବାର ପ୍ରବଳ ଆଗ୍ରହ ଏବଂ ଅଭାବ ଓ ଅନଟନର ଭୀଷଣତା ପ୍ରକାଶିତ । ଜୀବନ ଓ ଜୀବିକା ଗଳ୍ପରେ ଧପଡ ସିଂହର ଚନାଚୂର ବିକ୍ରୟ ଅଭାବୀ ଜୀବନର ଦୃଶ୍ୟକୁ ଯେତିକି ପ୍ରତିଫଳିତ କରିଛି ମଣିଷର ଆର୍ଦ୍ର ସଂବେଦନକୁ ସେତିକି କରୁଣ ଭାବେ ଆକର୍ଷିତ କରିଛି । "ତାର ଚନାଚୁର ପ୍ରତି ମୁଁ ପ୍ରଥମେ ଆକୃଷ୍ଟ ହୋଇଥିଲି ତାର ଚନାଚୂର ଖାଇ ନୁହେଁ, ତାର ବେଶଭୂଷା, ତାର ଅଙ୍ଗଭଙ୍ଗୀ, ତାର ଗୀତ ଦେଖି ଶୁଣି । ଚୌଧୁରୀ ବଜାର ଛକ ଉପରେ ଛିଡାହୋଇ ସେ ତାର ବୋଲି ଛାଡୁଥାଏ - ଚନାବନାଏ ତର୍‌ର୍, ଇସ୍‌କୁ ଲେତେଯାନା ଘର୍‌ର୍ । କେଉଁ ଅଜ୍ଞାତ ମହାକବିକଥିତ ଶାର୍ଦ୍ଦୁଳବିକ୍ରୀଡିତ ଛନ୍ଦରେ ପାରମ୍ପରିକ ପନ୍ଥାରେ ଏହିପରି ଜୀବିକା ମହାକାବ୍ୟ ଆରମ୍ଭ କରିବାପରେ ଧପଡ ସିଂ ଗାଇଚାଲେ ତାର ନିଜସ୍ୱ ମହାକାବ୍ୟ - କୁହ ଭାର୍ଯ୍ୟାକୁ ଡାର୍ଲିଂ, କରି ବାପାକୁ ଗୁଡ ମର୍ଣ୍ଣି... ଖାଇ ଚପ୍ କଟଲେଟ, ଓଠେ ଚିପି ସିଗାରେଟ୍... ନ ଭୁଲ ଚନାକୁ ମୋହର, ଏ ଯେ ଖାଣ୍ଟି ଓଡିଶାର... ଏଥିରେ ଅଛି ଭିଟାମିନ୍, ଖାଇଲେ ଦୁନିଆ ରଙ୍ଗୀନ୍... ଭିଟାମିନ୍ ପ୍ରୋଟିନ୍ ରେ ଭରପୁର ବନାୟା ଚନାଚୂର ମୂର୍‌ର୍... ଚନା ଚୂର୍‌ର୍‌ର୍ ମୂର୍‌ର୍‌ର୍ ଇତ୍ୟାଦି । ମେଘର ଗର୍ଜନ ଭଳି ର୍‌ର୍ କୁ ସେ ଗମ୍ଭୀର ଗଳାରେ ଏମିତି ଗୁରେଇ ତୁରେଇ କୁହେ ଯେ ଜନଗହଳି ଛକର ସମସ୍ତ ଶବ୍ଦକୁ ଟପି ସେ ଶବ୍ଦ ଶୁଣାଯାଏ, ଆଉ ଲୋକେ ଚକିତ ହୋଇ ତାକୁ ଚାହାନ୍ତି ।"(ଜୀବନ ଓ ଜୀବିକା)

ଏହି ଗଳ୍ପର ଭିନ୍ନ ଏକ ରୂପ ଜୀବିକା ଓ ଜୀବନ ଝଙ୍କାର ୧୨/୨ ରେ ପ୍ରକାଶିତ ଏବଂ ସମଗ୍ର-୧ରେ ସ୍ଥାନିତ । ଏଥିରେ ଧପଡ ସିଂର ପୁତ୍ର ହରିର ବିଳାସମୟ ଜୀବନର କାହାଣୀ ବର୍ଣ୍ଣିତ । ଏଥିରେ ଜୀବିକା ଅପେକ୍ଷା ଜୀବନକୁ ମହତ୍ତର ଭାବେ ଦର୍ଶାଇଛନ୍ତି ବାମାଚରଣ । ନାରୀଜୀବନର ସାର୍ଥକ ଉପସ୍ଥାପନା ଗାଳ୍ପିକଙ୍କ ଅସୀମ (ରାଣୀଦୁରୁଗା) ଗଳ୍ପ । ଏଥିରେ ଆଧୁନିକ ମତବାଦର ସମର୍ଥକ ଦୁର୍ଗାଦେବୀ ଛାଡପତ୍ର ଆଇନ ସପକ୍ଷରେ ମତ ଦେଲାବେଳେ ଅଯତ୍ନବର୍ଦ୍ଧିତା ଦୁରୁଗା ନିଜର ବାତରୋଗୀ ଗେରସ୍ତକୁ ଛାଡପତ୍ର ଦେବାକୁ ନାରାଜ । ଛାଡପତ୍ରକୁ ନାରୀ ଜୀବନର ତଥା ଦାମ୍ପତ୍ୟ ଜୀବନର କଳଙ୍କ ରୂପେ ସେ ନିଜର ଦୃଢ ମତ ଉପସ୍ଥାପନ କରିଛି । ରାଣୀଦୁରୁଗା ଗଳ୍ପରେ ଦୁଇଟି ବିପରୀତ ଭାବବୋଧର ନାରୀଙ୍କ ଉପସ୍ଥାପନ ମଧ୍ୟରେ ସମାଜ ସଂସ୍କାରର ପ୍ରଚ୍ଛନ୍ନ ଉଦ୍ଦେଶ୍ୟକୁ ପ୍ରତିଷ୍ଠା ଦେଇଛନ୍ତି ଗାଳ୍ପିକ । ଦୁରୁଗାକୁ ପାରଂପରିକ ଭାରତୀୟ ନାରୀର ପତିବ୍ରତାର ଉଜ୍ଜଳ ଦୃଷ୍ଟାନ୍ତ ରୂପେ ଠିଆ କରିଛନ୍ତି ବାମାଚରଣ ।

ସାଂପ୍ରଦାୟିକ କଳହର ଚିତ୍ରକୁ କଳାତ୍ମକ ବ୍ୟାପ୍ତି ପ୍ରଦାନ ସହିତ ଧର୍ମଠାରୁ ମାନବୀୟ ମୂଲ୍ୟବୋଧକୁ ମହତ୍ତର ଭାବେ ପ୍ରତିଷ୍ଠା କରିବାରେ ବାମାଚରଣଙ୍କ ଅନେକ ଗଳ୍ପ ସଫଳ ।

ଏହି ପ୍ରସଙ୍ଗରେ ହୋଲି, ଧର୍ମକ୍ଷେତ୍ରେ ପ୍ରଭୃତି ଗଳ୍ପକୁ ସ୍ମରଣ କରାଯାଇପାରେ । ହିନ୍ଦୁ ମୁସଲମାନ ମଧ୍ୟରେ ଦଙ୍ଗା ମଣିଷର ହିଂସ୍ର ପ୍ରବୃତ୍ତିର ପରିଚାୟକ ଏବଂ ଜାତୀୟ ଅଧଃପତନର ମୁଖ୍ୟ କାରଣ । ଦୁଇ ସଂପ୍ରଦାୟର ବିଭେଦ ଊର୍ଦ୍ଧ୍ୱରେ ବାମାଚରଣ ରାମ ଓ ରହିମର ଅଭେଦପ୍ରୀତିର ଘନିଷ୍ଠ ସମ୍ବନ୍ଧକୁ ପ୍ରତିଷ୍ଠା କରିଛନ୍ତି । ହୋଲି ଗଳ୍ପରେ ସାଂପ୍ରଦାୟିକ ହିଂସାରେ ବଳିପଡିଛନ୍ତି ରାମପଧାନର ପୁଅ ନବ ଓ ରହିମର ପୁଅ ଅବଦୁଲ । 'ଧର୍ମକ୍ଷେତ୍ରେ' ଗଳ୍ପରେ ନବର ପୁଅ ଶ୍ୟାମଘନ ଓ ଅବଦୁଲର ଝିଅ ହସନୁ ମଧ୍ୟରେ ପ୍ରେମ ସଂପର୍କ ଗଢିଉଠିଛି ଏବଂ ତାକୁ ସ୍ୱୀକୃତି ଦେଇଛନ୍ତି ଦୁଇ ବୁଢା । ଧର୍ମ ନିରପେକ୍ଷତାକୁ ପ୍ରେମ ସଂପର୍କରେ ଊର୍ଦ୍ଧ୍ୱମୁଖୀ କରିଛନ୍ତି ବାମାଚରଣ ।

ମଧ୍ୟବିତ୍ତ ମାନସିକତାକୁ ବହୁଦିନରୁ ପରିସ୍ଫୁଟ କରି ତାକୁ ଏକ ଆଦର୍ଶମୟ ସିଦ୍ଧାନ୍ତରେ ପ୍ରତିଷ୍ଠା ଦେବାରେ ବାମାଚରଣଙ୍କ ଅନେକ ଗଳ୍ପ ଋଦ୍ଧିମନ୍ତ । ସାଧାରଣତଃ ସାମାଜିକ, ମାନସିକ ଓ ସାଂସ୍କୃତିକ ସମସ୍ୟା ଗୁଡ଼ିକୁ ଉପଜୀବ୍ୟ କରି ତାଙ୍କର ଗଳ୍ପ ଗୁଡ଼ିକ ଗତିଶୀଳ । ସମସ୍ୟାର ବିଶ୍ଳେଷଣ, ଉତ୍ତରଣ ଏବଂ ସୃଜନାତ୍ମକ ସମାଧାନ ହିଁ ବାମାଚରଣଙ୍କ ବୈଶିଷ୍ଟ୍ୟ । ଏହି ପ୍ରସଙ୍ଗରେ କୃପାନିଧି ବାବୁ, ନିର୍ବାଚନ, ଶାନ୍ତି ଦେବୀଙ୍କ ଶାନ୍ତି ଓ ଅଶାନ୍ତି, ଇତିହାସ, ଉଦ୍‌ଭ୍ରାନ୍ତ, ସ୍ମୃତିରତ୍ନାକର ପ୍ରଭୃତି ଗଳ୍ପକୁ ସ୍ମରଣ କରାଯାଇପାରେ । ଅବୈଧ ପ୍ରଣୟ ଓ ଟେଷ୍ଟଟ୍ୟୁବ ବେବି ପ୍ରସଙ୍ଗକୁ ସମାଲୋଚନା କରି ତାଙ୍କର 'କସ୍ତେପୁତ୍ରଃ' ରଚିତ । ପାରମ୍ପରିକ ବିଶ୍ୱାସକୁ ନେଇ 'ବଟମହାପୁରୁଷ' ଗଳ୍ପ ରଚିତ । ବ୍ୟକ୍ତିତ୍ୱର ସାରଲ୍ୟ ଓ ଆଟୋପହୀନତାର ଦୃଷ୍ଟାନ୍ତ ବାମାଚରଣଙ୍କ ପ୍ରତି ଗଳ୍ପରେ ସହଜଲଭ୍ୟ । ଫମ୍ପା ଆଭିଜାତ୍ୟ, ଆଧୁନିକତାର ଚାକଚକ୍ୟ, ଛଦ୍ମ ବିଳାସ ମଧ୍ୟରେ ସାମୟିକ ଭାସିଗଲେ ମଧ୍ୟ ତାଙ୍କର ଗଳ୍ପ ନାୟକ ମାନବିକତାକୁ ବିସ୍ମରି ନାହିଁ । ବିବେକାନୁମୋଦିତ ପଥରେ ଗତିକରି ନିଜକୁ ସଂଭାଳି ନେଉଥିବା ଯାଦବ ବାବୁ (ପାଷାଣରପ୍ରାଣ)ଙ୍କୁ ପଥରର ମୂର୍ତ୍ତି ପ୍ରାଣବନ୍ତ ଜଣାପଡେ ଓ ମାର୍ମିକ ଭାବେ ସେ ଯାଚଞ୍ଚାକରେ ଭଗବାନ ମୋତେ ଧନମାନ ନଦିଅ, ଆପତ୍ତି ନାହିଁ, କିନ୍ତୁ ଅସାଧୁ କର ନାହିଁ ।

କୁକୁଡା ଚାଷ, ଆଗନ୍ତୁକ, ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା ପ୍ରଭୃତିଗଳ୍ପରେ ମାନବେତର ଜୀବପ୍ରତି ଗାଳ୍ପିକଙ୍କ ସଂବେଦନଶୀଳ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ବିଶ୍ୱଜନନୀ ମାତୃସତ୍ତାକୁ ଜୀବଜଗତ ଭିତରେ ଆବିଷ୍କାର କରିଛନ୍ତି ବାମାଚରଣ । ମୂଷାକୁ ନେଇ ଜୀବନର ବହୁମୁଖୀନତା ଯେତିକି ଆହ୍ଲାଦକର ସେତିକି ସଂଘାତମୟ । ସାଧାରଣ ମୂଷାକୁନେଇ ସୃଷ୍ଟିର ଅଦ୍ଭୁତ ଲୀଳାକୁ ଓ ଜୀବନର ବୈଚିତ୍ର୍ୟକୁ ପ୍ରକାଶ କରାଯାଇଛି ।

ମଧ୍ୟବିତ୍ତ ପରିବାରକୁ ନେଇ ବାମାଚରଣଙ୍କ ବ୍ୟଙ୍ଗ ଯେତିକି ରସସିକ୍ତ ସେତିକି କାରୁଣ୍ୟମୟ । ବ୍ୟଙ୍ଗ ମାଧ୍ୟମରେ ବିମଳ ହାସ୍ୟରସ ସୃଷ୍ଟି ଏବଂ ତତ୍ ସହିତ ସମାଜ ସଂସ୍କାରର ଅଭିନବ ପ୍ରୟାସ ବାମାଚରଣଙ୍କ ଗଳ୍ପରେ କଳାସଂଗତ ଭାବେ ପରିସ୍ଫୁଟ । ଏହ

ପ୍ରସଙ୍ଗକୁ ଅଳ୍ପେ ବହୁତେ ବାମାଚରଣଙ୍କ ପ୍ରତିଟି ଗଳ୍ପରେ ଅନ୍ତରୀଣ ଭାବରେ ଅନୁଭବ କରାଯାଇ ପାରେ । ମାନବ ଦାନବ, ଇଚ୍ଛା ପୂରଣ, ବାବାଡହରାନନ୍ଦଙ୍କ ବିବାହ ବୃତ୍ତାନ୍ତ, ନାରୀ ଓ କବି, ଧଡିଭାଇ ସହିତ ଗୋଟିଏ ରାତି, ବାବାଡହରାନନ୍ଦଙ୍କ ରୋମାଞ୍ଚକର କାହାଣୀ, ମ୍ୟୁନିସିପାଲିଟି ଗଳ୍ପ ପ୍ରଭୃତି ଗଳ୍ପରେ ନିରୋଳା ହାସ୍ୟରସ ଏବଂ ତଦଜନୀତ କାରୁଣ୍ୟପୂର୍ଣ୍ଣ ଉପସଂହାରକୁ ଉପଲବ୍ଧି କରିହୁଏ ।

ବାମାଚରଣ ଓଡିଆ ସାହିତ୍ୟର ଜଣେ ଅଙ୍ଗୀକାରବଦ୍ଧ ଜୀବନନିଷ୍ଠ କଥାଶିଳ୍ପୀ । ତାଙ୍କର ସାହିତ୍ୟ ଚିନ୍ତା ସହିତ ରାଜନୈତିକ ଦର୍ଶନ ଓ ସମାଜ ସଂସ୍କାରାଚ୍ଛନ୍ନ ଦୃଷ୍ଟିଭଙ୍ଗୀ ଅଙ୍ଗାଙ୍ଗୀଭାବେ ଜଡିତ । ବିଜ୍ଞାନ ଠାରୁ ଉପନିଷଦ୍, ଡିଟେକଟିଭ ଠାରୁ ଭାରତୀୟ ଦର୍ଶନ, ମାର୍କ୍ସବାଦ ଠାରୁ ଚାର୍ଲି ଚାପଲିନ୍‌ଙ୍କ ହାସ୍ୟମୁଖର କରୁଣତା ମଧ୍ୟରେ ତାଙ୍କର ଗଳ୍ପ ଆଲୋକଦୀପ୍ତ । ମଣିଷ ମନର ସୂକ୍ଷ୍ମ ଅବଚେତନର ବିଶ୍ଳେଷଣକୁ ସମାଜମୁଖୀ ପ୍ରତିବଦ୍ଧତାରେ ବିଚ୍ଛୁରିତ କରିବା ତାଙ୍କ ଗଳ୍ପ କଳାର ଅନନ୍ୟ ବୈଶିଷ୍ଟ୍ୟ । ମାନବବାଦୀ ଚିନ୍ତନରେ ବାମାଚରଣଙ୍କ ଦୃଷ୍ଟିଭଙ୍ଗୀ ଦେଶ କାଳ ପାତ୍ର ଉର୍ଦ୍ଧ୍ୱରେ ଭୂମାରେ ବିଚରଣ କରେ । ଜୀବନ ପ୍ରତି ଗଭୀର ଆସ୍ଥା ପ୍ରକଟ କରିବାହିଁ ତାଙ୍କ ଗଳ୍ପର ମୂଳସୂତ୍ର । ଉପନିଷଦୀୟ ଭିତ୍ତିରେ ଆଇନଷ୍ଟାଇନଙ୍କ ଆପେକ୍ଷିକବାଦ, ମାର୍କସ ଓ ଫ୍ରୟେଡଙ୍କ ଦର୍ଶନକୁ ଆରୋପକରି ଉର୍ଜ୍ଜସ୍ୱଳ ଜୀବନର ସଂଗୀତ ଅନୁରଣିତ ହୁଏ ତାଙ୍କର ପ୍ରତିଟି ଗଳ୍ପରେ । ମହତ୍ତମ ଜୀବନବୋଧର ଆଲୋକ ଦୀପ୍ତ ଓ ଭାସ୍ୱର ଭାବେ ପ୍ରଜ୍ଜ୍ୱଳିତ ହେବା ସହିତ ମହିମାନ୍ୱିତ ସମୟକୁ ଉନ୍ନୀତ କରିବାରେ ସେ ଯେତିକି ଦକ୍ଷ ସେତିକି କଳାକୁଶଳୀ । ମାନବବାଦର ଅନ୍ତରୀଣ ଫଲ୍‌ଗୁ ସମାଜ ଜୀବନର ମହିମାଗାନରେ ଯେଉଁଠି ମୁଖରିତ ସେଇଠି ବାମାଚରଣ ମିତ୍ର ଓ ତାଙ୍କ ସାହିତ୍ୟ ଅଧିଷ୍ଠିତ ।

## ଖ)ଇତିହାସ ଭିତରେ ଜୀବନର ଅନ୍ୱେଷଣ ଚନ୍ଦ୍ର ଓ ଚଂପାର କଳାତ୍ମକ ବୀକ୍ଷଣ

ଗଳ୍ପ ରଚନାରେ ସିଦ୍ଧି ଅର୍ଜନ କରିଥିବା ବାମାଚରଣଙ୍କ 'ଚନ୍ଦ୍ର ଓ ଚଂପା' ଏକ ଲୋକପ୍ରିୟ ଉପନ୍ୟାସ । ଏଥିରେ ସେ ଐତିହାସିକ କାହାଣୀର ଅବଲମ୍ବନରେ ଯୁଗାନ୍ତକାରୀ ଜୀବନଚର୍ଯ୍ୟାର ଅପରୂପ ବିଭୂତିକୁ ପ୍ରତିଷ୍ଠା ଦେଇଛନ୍ତି । 'ଚନ୍ଦ୍ର ଓ ଚଂପା' ଉପନ୍ୟାସ ପ୍ରଥମେ ଝଙ୍କାର ୭/୧୦ ସଂଖ୍ୟାରୁ ଧାରାବାହିକ ଭାବରେ ପ୍ରକାଶିତ ହୋଇ ଝଙ୍କାର ୮/ ୧୨ ସଂଖ୍ୟାରେ ସମାପ୍ତ ହୋଇଛି । ଏଥିରେ Somerset Maugham ଙ୍କର Catalina ଛାୟାରେ ଲିଖିତ ବୋଲି ସୂଚନା ରହିଛି । ଝଙ୍କାର ର ୭ମ ବର୍ଷ ୧୦ମ ସଂଖ୍ୟାରେ ଚନ୍ଦ୍ର ଓ ଚଂପାର ସୂଚନା ପ୍ରଦତ୍ତ ପରେ ପରେ ସମଗ୍ର ଉପନ୍ୟାସଟି ପ୍ରକାଶିତ । 'ଚନ୍ଦ୍ର ଓ ଚଂପା' ଉପନ୍ୟାସଟି ଝଙ୍କାର(୧୯୫୬-୫୭)ରେ ପ୍ରକାଶିତ ହେଲାପରେ ୧୯୫୮ରେ 'ପରାଗ' ଶୀର୍ଷକରେ ପୁସ୍ତକାକାରେ ପ୍ରକାଶ ପାଏ । ପୁଣି ୧୯୬୮ ରେ 'ଚନ୍ଦ୍ର ଓ ଚଂପା' ଶୀର୍ଷକରେ

ଏହା ମୁଦ୍ରିତ ହୋଇଥିବାର ଦେଖାଯାଏ । ପରାଗ ନାମ କରଣ ସଂପର୍କରେ ଲେଖକ କୁହନ୍ତି - "ଏ ଉପନ୍ୟାସଟି କ୍ରମିକ ଭାବରେ ଚନ୍ଦ୍ର ଓ ଚଂପା ନାମରେ ଝଙ୍କାର ପତ୍ରିକାରେ ପ୍ରକାଶ ପାଇଥିଲା । କିନ୍ତୁ ଡାକ୍ତର ମହୀନ୍ଦ୍ରଲାଲ ବୋଷ ପାଣ୍ଡୁଲିପିଟି ପଢି ପରାଗ ନାମ ରଖିବାକୁ ଉପଦେଶ ଦେଲେ । ମୁଁ ଏହା ସାଦରେ ଗ୍ରହଣ କରିଛି । ତାଙ୍କ ଠାରେ ମୁଁ ଋଣୀ" (ସୂତ୍ରପାତ-ପରାଗ-୧୯୫୮) ଏତତ୍ ବ୍ୟତୀତ ପରାଗ ନାମକରଣ ସଂପର୍କରେ କୌଣସି ଯୁକ୍ତି ବା କାରଣ ଉପସ୍ଥାପନ କରାଯାଇନାହିଁ । ଚନ୍ଦ୍ର ଓ ଚଂପାର ପରବର୍ତ୍ତୀ ସଂସ୍କରଣ ମାନଙ୍କରେ ପରାଗରେ ପ୍ରକାଶିତ ଉତ୍ସର୍ଗ ପତ୍ର, ସୂତ୍ରପାତ(ଭୂମିକା) ଓ ବିକାଶ ପ୍ରତିଷ୍ଠାନର ରାମନାଥ ପଣ୍ଡାଙ୍କ ପ୍ରଥମଦୀପ (ମନ୍ତବ୍ୟ) କୁ ପରିହାର କରାଯାଇଛି । ରାମନାଥ ପଣ୍ଡା ବିକାଶ ପ୍ରତିଷ୍ଠାନର ଓଡିଆ ସାହିତ୍ୟ ମନ୍ଦିରରେ ପ୍ରଥମଦୀପ ରୂପେ ପରାଗକୁ ଅଭିହିତ କରିଛନ୍ତି । ଝଙ୍କାରରେ ପ୍ରକାଶିତ ପାଠକୁ ନେଇ ପରାଗ ପ୍ରକାଶିତ । କିନ୍ତୁ ଚନ୍ଦ୍ର ଓ ଚଂପାର ପରବର୍ତ୍ତୀ ସଂସ୍କରଣରେ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହୁଏ । ପରିବର୍ତ୍ତନ ଗୁଡିକ କ୍ରିୟାପଦ ବା ବାକ୍ୟଗଠନଗତ ହୋଇଥିଲା ବେଳେ କାହାଣୀରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ଦୃଷ୍ଟିଗୋଚର ହୁଏନାହିଁ ।

'ଚନ୍ଦ୍ର ଓ ଚଂପା' ଉପନ୍ୟାସ ବାମାଚରଣ ମିତ୍ରଙ୍କ ଅନନ୍ୟ ସୃଜନାତ୍ମକ ସୃଷ୍ଟି । ଏହାର ସଂଶୋଧିତ ଓ ପରିବର୍ଦ୍ଧିତ ୨ୟ ସଂସ୍କରଣ ୧୯୬୮ରେ କଟକ ଷ୍ଟୁଡେଣ୍ଟ ଷ୍ଟୋର ଦ୍ୱାରା ପ୍ରକାଶିତ । ସେହି ସଂସ୍କରଣ ପୁଣିଥରେ ଦ୍ୱିତୀୟ ସଂସ୍କରଣ ରୂପେ ୧୯୭୮ରେ ପ୍ରକାଶିତ । ୧୯୬୮ର ପାଠକୁ ନେଇ ପରବର୍ତ୍ତୀ ସଂସ୍କରଣ ଏବଂ ରଚନା ସମଗ୍ର - ୩ ସମୃଦ୍ଧ । ପୁସ୍ତକର କାହାଣୀ ଭାଗକୁ ସ୍ପଷ୍ଟ କରିବା ପାଇଁ ଏହାର ଐତିହାସିକ ପୃଷ୍ଠଭୂମିକୁ ଔପନ୍ୟାସିକ ସୂଚନା ଭାବରେ ପ୍ରଦତ୍ତ କରିଛନ୍ତି । ଦୁଇହଜାର ବର୍ଷ ତଳର ଅର୍ଥାତ୍ ଖ୍ରୀ.ପୂ ୧ମ ଶତାବ୍ଦୀ ଠାରୁ ଖ୍ରୀଷ୍ଟୀୟ ୧ମ ଶତାବ୍ଦୀର ଅତୀତ ଉତ୍କଳର ଗୌରବୋଜ୍ଜ୍ୱଳ ଇତିହାସକୁ ଲେଖକ ଆହରଣ କରିଛନ୍ତି । ଉତ୍କଳ ଇତିହାସର ମହୋତ୍ତମ ସମ୍ରାଟ ମହାମେଘବାହନ ଐର ଖାରବେଳଙ୍କ ସମୟରେ କଳିଙ୍ଗର ସୀମା ଉତ୍ତରରେ ଗଙ୍ଗା ଠାରୁ ଦକ୍ଷିଣରେ କାବେରୀ ଏବଂ ପଶ୍ଚିମରେ ପଞ୍ଜାବ ଠାରୁ ପୂର୍ବରେ ବଙ୍ଗ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଏହି ସମୟ ଥିଲା କଳିଙ୍ଗର ସୁବର୍ଣ୍ଣ ଯୁଗ । ଉତ୍କଳର ସାଂସ୍କୃତିକ, ରାଜନୈତିକ, ଆଧ୍ୟାତ୍ମିକ ଉତ୍କର୍ଷ ସାଧନ ହୋଇ ଭାରତବର୍ଷର ଶୀର୍ଷ ସ୍ଥାନ ଗ୍ରହଣ କରିଥିଲା । ହାତୀଗୁମ୍ଫା ଶିଳାଲେଖରୁ ଖାରବେଳଙ୍କ ରାଜ୍ୟ ଶାସନର ପ୍ରାମାଣିକତା ସ୍ପଷ୍ଟ ହୁଏ । ସେ ସବୁ ଧର୍ମକୁ ପ୍ରେମ କରୁଥିଲେ । ଫଳତଃ ସାଂପ୍ରଦାୟିକ ହିଂସା ପ୍ରଶମିତ ହୋଇ ବିଭିନ୍ନ ଧର୍ମର ସମ୍ମିଳିତ ଶକ୍ତି ଉତ୍କଳର ସାଂସ୍କୃତିକ ପରିମଣ୍ଡଳକୁ ମହୀୟାନ ଓ ଗରୀୟାନ କରିଥିଲା ।

ସମାଲୋଚକମାନଙ୍କ ମତରେ ୪୦୦୦ ବର୍ଷ ତଳେ ବେଦ ରଚିତ ହେଲା । ଶେଷରେ ବ୍ରାହ୍ମଣ ଯୁଗର ସୃଷ୍ଟି । ଏହି ସମୟରେ ନାରୀମାନଙ୍କ ସ୍ୱାଧୀନତା ହ୍ରାସ ପାଇଲା । ଶୂଦ୍ର

ମାନେ ପଦ ଦଳିତ ହୋଇ ରହିଲେ । ଯଜ୍ଞ ପାଇଁ ପଶୁବଳୀକୁ ପ୍ରୋତ୍ସାହନ ଦିଆଗଲା । ବ୍ରାହ୍ମଣମାନଙ୍କ ଏକଛତ୍ରବାଦୀ ଶାସନ ଫଳରେ ସମାଜ ଜୀବନ ବିପର୍ଯ୍ୟସ୍ତ ହୋଇଉଠିଲା ।

ସମାଜରେ ଏହି ବିତର୍କିତ ମୁହୂର୍ତ୍ତରେ ବୁଦ୍ଧଦେବଙ୍କ ଆବିର୍ଭାବ ଘଟିଲା । ମହାବୀର ଜୈନଙ୍କର ଜନ୍ମ ହେଲା । ଉଦାର ଧର୍ମ ଭାବରେ ଏହାର ଆବେଦନ ଜନସାଧାରଣଙ୍କୁ ଆକୃଷ୍ଟ କରିଥିଲା । ଅଶୋକ ବୌଦ୍ଧ ଧର୍ମରେ ନୂତନ ନୀତି ସଂଯୋଜିତ କରି ଏହାକୁ ଗୃହୀମାନଙ୍କର ଉପଯୋଗି କରିପାରିଥିଲେ । ବୁଦ୍ଧଙ୍କର ନିର୍ବାଣର ଶତବର୍ଷ ପରେ ବୌଦ୍ଧ ଧର୍ମରେ ମତଦ୍ୱୈଧ ଦେଖାଗଲା । ଅନେକ ନିୟମ ପରିବର୍ତ୍ତନ ଅନେକ ନୂତନ ନିୟମ ସଂଯୋଜିତ ହେଲା । ଏହା ତନ୍ତ୍ରଯାନ, ସହଜଯାନ, ବଜ୍ରଯାନରେ ବିଭକ୍ତ ହୋଇଗଲା । ଅଶୋକ କଳିଙ୍ଗକୁ ପରାଧୀନ କରିବାର ପଚାଶ ବର୍ଷ ପରେ ଯୁଗଜନ୍ମା ସମ୍ରାଟ ଖାରବେଳଙ୍କ ଜନ୍ମ । ପ୍ରଥମେ ମୌର୍ଯ୍ୟବଂଶର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ କଳିଙ୍ଗ ଜୟ କରିଥିଲେ କିନ୍ତୁ ଅଶୋକଙ୍କ ରାଜତ୍ୱର ଚତୁର୍ଥ ବର୍ଷରେ କଳିଙ୍ଗ ସ୍ୱାଧୀନତା ଘୋଷଣା କରିଥିଲା । ପରେ ପୁଣି ଅଶୋକ କଳିଙ୍ଗର ସ୍ୱାଧୀନତାକୁ ବିପନ୍ନ କରିଥିଲେ । କଳିଙ୍ଗ ଯୁଦ୍ଧରେ ଏକ ଲକ୍ଷ ଲୋକ ନିହତ ଓ ଦେଢ ଲକ୍ଷ ଲୋକ ବନ୍ଦୀ ହୋଇଥିଲେ । ଏହାର ଠିକ୍ ପଚାଶ ବର୍ଷ ପରେ ଖାରବେଳଙ୍କ ନେତୃତ୍ୱରେ କଳିଙ୍ଗ "କଳିଙ୍ଗା ସାହସିକାଃ" ନାମରେ ବିଖ୍ୟାତ ହେଲା । କଳିଙ୍ଗକୁ ସ୍ୱାଧୀନ କରିବା ପରେ ଖାରବେଳ ଅନେକ ରାଜ୍ୟ ଜୟକରି କଳିଙ୍ଗର ସୀମା ବିସ୍ତାର କରିଥିଲେ । ଖାରବେଳଙ୍କ ସମୟରେ ପୁଷ୍ୟମିତ୍ର ବ୍ରାହ୍ମଣ୍ୟ ଧର୍ମର ପ୍ରଚାର ନିମନ୍ତେ ମୌର୍ଯ୍ୟ ବଂଶର ଶେଷ ନରପତି ବୃହଦଥଙ୍କୁ ହତ୍ୟା କରିଥିଲେ । ମୁଖ୍ୟତଃ ସମାଜରେ ବିଭିନ୍ନ ଧର୍ମର ନାରକୀୟ ଲୀଳା ଖାରବେଳଙ୍କ ସମୟରେ ଦେଖାଦେଇଥିଲା ଏବଂ ଖାରବେଳଙ୍କ ଲୋକପ୍ରିୟ ଶାସନ ନୀତି ଉପରେ ଉପନ୍ୟାସଟି ଗତିଶୀଳ । ଦୁଇ ହଜାର ବର୍ଷ ପୂର୍ବର ସାମାଜିକ ଜୀବନର କଳାତ୍ମକ ପ୍ରତିଫଳନ 'ଚନ୍ଦ୍ର ଓ ଚଂପା' ଉପନ୍ୟାସ ।

'ଚନ୍ଦ୍ର ଓ ଚଂପା' ଉପନ୍ୟାସର କାହାଣୀ କାଳ୍ପନିକ କିନ୍ତୁ ଏହାର ଭାବପିଣ୍ଡ ବାସ୍ତବ ଏବଂ ଐତିହାସିକ । କାହାଣୀର ପ୍ରଚ୍ଛଦପଟ ଅନୁଭୂତିର ନିବିଡତାରେ ରସସ୍ନିଗ୍ଧ । କଳ୍ପନା ଅପେକ୍ଷା ବାସ୍ତବତାର ପ୍ରାବଲ୍ୟ ଏବଂ ବାସ୍ତବତାକୁ ସୌନ୍ଦର୍ଯ୍ୟବତ୍ତା ସହିତ ଏକୀଭୂତ କରିବା ଅନନ୍ୟ ସ୍ରଷ୍ଟାପଣର ପରିଚାୟକ । କ୍ଲାସିକ ଲେଖକର ସମସ୍ତ ଧର୍ମ 'ଚନ୍ଦ୍ର ଓ ଚଂପା' ରେ ପ୍ରତିଫଳିତ । ଭାଷା ଲାଳିତ୍ୟମୟ ଭାବ ଅନୁଭୂତି ସିଦ୍ଧ । 'ଚନ୍ଦ୍ର ଓ ଚଂପା' କୁ ମୁଖ୍ୟତଃ ଐତିହାସିକ ପ୍ରେମ ଓ ଦାର୍ଶନିକ ବ୍ୟାଖ୍ୟାର ଅମୃତ ମଣୋହି ରୂପେ ଗ୍ରହଣ କରାଯାଇ ପାରେ । ଏଠାରେ ଚାର୍ବାକ ଓ ବୌଦ୍ଧ ଦର୍ଶନ ଏବଂ ତାହାର ସାମାଜିକ ପ୍ରତିଫଳନ କାହାଣୀ ମାଧ୍ୟମରେ ଅଭିବ୍ୟଂଜିତ ।

ନାସ୍ତିକ ଦର୍ଶନର ସୂଚନା ସର୍ବତ୍ର ପ୍ରତିଫଳିତ । ନାସ୍ତିକ ଦର୍ଶନ ଅର୍ଥ ଇଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର ନୁହେଁ, ବରଂ ବେଦ ଓ ବ୍ରାହ୍ମଣ୍ୟବାଦକୁ ଅସ୍ୱୀକାର । ଷଡ୍ ଦର୍ଶନ ଉର୍ଦ୍ଧ୍ୱରେ

ଚାର୍ବାକ ଦର୍ଶନର ଜୀବନବାଦୀ ଚିନ୍ତାଧାରାର ଅନୁପମ ବ୍ୟାଖ୍ୟାନ ଏହି ଉପନ୍ୟାସ । ଐତିହାସିକ ପ୍ରେମ ବ୍ୟାଖ୍ୟାନ ଓ ଦାର୍ଶନିକ ଚିନ୍ତାଧାରା (Historical Romance and Phylosophical Discourse)କୁ ସମ୍ମିଳିତ କରିବାର ଅପୂର୍ବ ପ୍ରୟାସର କେନ୍ଦ୍ର ବିନ୍ଦୁରେ 'ଚନ୍ଦ୍ର ଓ ଚଂପା'ର ଅଧିଷ୍ଠାନ । ଏଣୁ ଏହା ଇତିହାସକୁ ଆଧାର କରି ବି କାଳ୍ପନିକ, କଳ୍ପନାର ପଲ୍ଲବନ ଥାଇ ବି ସାମାଜିକ । ସମକାଳୀନ ସମାଜର ବ୍ୟାଖ୍ୟାନ ଅନ୍ତରାଳରେ ବ୍ୟକ୍ତିତ୍ୱର ଅସ୍ମିତା ପ୍ରଖ୍ୟାପନ ହିଁ ଏହାର ମୂଳଲକ୍ଷ୍ୟ । ସମକାଳୀନ ସମାଜରେ ବ୍ୟକ୍ତିତ୍ୱର ପ୍ରତିଷ୍ଠା ପାଇଁ ଧର୍ମର ଦୁରୁପଯୋଗ, ଧର୍ମର ପ୍ରତିଷ୍ଠା ପାଇଁ ବିଭିନ୍ନ ସଂପ୍ରଦାୟର ଚକ୍ରାନ୍ତ, ଧର୍ମ ନାମରେ ଯୌନ ବ୍ୟଭିଚାରର ଅସଂଲଗ୍ନ ଚିତ୍ର ଏଥିରେ ପ୍ରଦତ୍ତ । ଏ ସବୁ ମଧ୍ୟରେ ଭାରତ ବାହାରେ କିପରି କଳିଙ୍ଗ ସଂସ୍କୃତି ବିସ୍ତାର ଲାଭ କରିଥିଲା ତାହାହିଁ ପ୍ରତିପାଦ୍ୟ । କଳିଙ୍ଗର ବର୍ଣ୍ଣମୟ ଐତିହ୍ୟ, ବିଭିନ୍ନ ଧର୍ମାନ୍ଧତାର ପ୍ରାବଲ୍ୟ, ଯୌନ ଅଭିପ୍ସା ଭିତରେ ଚାପିହୋଇ ରହିଥିବା କାମନା ଏବଂ ଅତୀତ ପ୍ରବଣତାର ଚିତ୍ରିତ କାନ୍‌ଭାସରେ ପରିସ୍ଫୁଟ ଏହି ଉପନ୍ୟାସ । ବୌଦ୍ଧ ଧର୍ମର କ୍ରମଃ ତିରୋଧାନ ଏବଂ ବ୍ରାହ୍ମଣ୍ୟ ଧର୍ମର କ୍ରମଃ ଆବିର୍ଭାବର ପୃଷ୍ଠପଟରେ ଏକ ଶୁଚି ଶୁଭ୍ର ଐତିହାସିକ ଉପନ୍ୟାସ 'ଚନ୍ଦ୍ର ଓ ଚଂପା' । ଅତୀତର ନିର୍ମୋହ ଚେତନାରେ ଆନ୍ଦୋଳିତ ବାମାଚରଣଙ୍କ ଲେଖକୀୟ ପୁଞ୍ଜିର ମୋହମୁଗ୍ଧ ଅବତାରଣା - 'ଚନ୍ଦ୍ର ଓ ଚଂପା' । ଇତିହାସକୁ ବାସ୍ତବତାର ଭିତ୍ତିରେ ଠିଆକରି କ୍ଲାସିକ ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ କରିବାରେ ଯେଉଁ ଅଙ୍ଗୁଳିମେୟ ରଚନା ସିଦ୍ଧିପ୍ରାପ୍ତ ସେ ଭିତରେ 'ଚନ୍ଦ୍ର ଓ ଚଂପା' ଅନ୍ୟତମ ।

ସମଗ୍ର ଭାରତ ବର୍ଷରେ ଦର୍ଶନ ଓ ଇତିହାସକୁ ନେଇ ଉପନ୍ୟାସ ରଚନାର ପରଂପରା ସୃଷ୍ଟି ହୋଇଥିଲା । ଉପନ୍ୟାସର ଚରିତ୍ର ଯାହାବି ହେଉ ନାୟକ ଥିଲେ ସମକାଳୀନ ଧର୍ମ ଓ ଦର୍ଶନ । ଏହି କ୍ରମରେ ବାଣଭଟ୍ଟର ଆତ୍ମକଥା, ଯଯାତି, ବାମମାର୍ଗ, ଗଙ୍ଗାରୁ ଭଲ୍‌ଗା ପ୍ରଭୃତି ଉପନ୍ୟାସକୁ ସ୍ମରଣ କରାଯାଇପାରେ । ରାହୁଲ ସାଂକୃତାୟନ, ଖାଣ୍ଡେକର, ଗୁରୁଦତ୍ତ, ହଜାରୀପ୍ରସାଦ ଦ୍ୱିବେଦୀ ପ୍ରମୁଖ କ୍ଲାସିକ ଉପନ୍ୟାସର ଯେଉଁ ଉତ୍ତୁଙ୍ଗ ଶିଖରକୁ ସ୍ପର୍ଶ କରିଥିଲେ ବାମାଚରଣଙ୍କ 'ଚନ୍ଦ୍ର ଓ ଚଂପା' ସେହି ଶିଖରସ୍ପର୍ଶୀ ଉପନ୍ୟାସ ।

ବ୍ୟକ୍ତିର ଅନ୍ତର୍ନିହିତ ଆବେଦନକୁ ପଦଦଳିତ କରିବାର ଆସ୍ପର୍ଦ୍ଧା ବହନ କରୁଥିବା ସମାଜବ୍ୟବସ୍ଥା ଓ ଧର୍ମୀୟ ଅବବୋଧକୁ ଘୋର ନିନ୍ଦା କରିଛନ୍ତି କିର୍କେଗାର୍ଡ୍ । ଖ୍ରୀଷ୍ଟିୟାନ ଧର୍ମର ପ୍ରଚାର ସର୍ବସ୍ୱତା ଓ ଅର୍ଥହୀନ ସାମାଜିକ ଅନାଚାର ବିରୁଦ୍ଧରେ କିର୍କେଗାର୍ଡ୍ ଦୃଢ ବିରୋଧର ସ୍ୱର ଉତ୍ତୋଳନ କରିଥିଲେ । ସ୍ୱାଧୀନ ଓ ମୁକ୍ତ ବୌଦ୍ଧିକ ଜୀବନର ଉଦ୍‌ଗାତା ଭାବରେ ନିତ୍‌ସେ, କାମ୍ୟୁ, ହାଇଡଗାର ପ୍ରମୁଖ ସରଳ ସାବଲୀଳ ଓ ବର୍ଣ୍ଣମୟ ମାନବ ଜୀବନର ଜୟଗାନ କରିଛନ୍ତି । ସାର୍ତ୍ରେ ମଧ୍ୟ ମଣିଷକୁ ସବୁସ୍ତରରେ ଉପଯୁକ୍ତ ସମ୍ମାନ ପ୍ରଦାନ ଦିଗରେ ପଦକ୍ଷେପ ନେଇଛନ୍ତି । ମଣିଷକୁ ନିବିଡ ଭାବରେ ଭଲ ପାଇବା,

ମାନବିକତାର ପ୍ରତିଷ୍ଠା ଅନ୍ତରାଳରେ ସମୃଦ୍ଧ ସମାଜ ବ୍ୟବସ୍ଥା ଗଠନର ପକ୍ଷପାତୀ ଥିଲେ ସେ । ତାଙ୍କ ମତରେ ଅସ୍ତିତ୍ୱବାଦ ହିଁ ମାନବବାଦ । ବାସ୍ତବରେ ଅସ୍ତିତ୍ୱବାଦୀ ଚିନ୍ତାଧାରା ମଣିଷର ମାନବୀୟ ମୂଲ୍ୟବୋଧର ପ୍ରତିଷ୍ଠାତା ଓ ଏକନିଷ୍ଠ ପୂଜାରୀ । ମଣିଷକୁ ନିବିଡ ଭାବରେ ଦେଖି ପ୍ରାଣବାନ ଭାବରେ ଦେଖେଇବାର ପ୍ରବଣତା ହିଁ ଏହାର ମର୍ମଗାଥା । ମାନବୀୟ ସତ୍ତାର ଉତ୍ତରିତ ପର୍ଯ୍ୟାୟକୁ ସେ ଦେଇଛନ୍ତି ଅଫୁରନ୍ତ ସମ୍ମାନ । ସାମାନ୍ୟ କାହାଣୀ ଭାଗକୁ ବିଭିନ୍ନ ଧର୍ମ ଧାରାର ଅଳୀକ ଛଦ୍ମତାରେ ମଣିଷର ଅହଂ ସହିତ ସମାବେଶିତ କରିଛନ୍ତି ଲେଖକ ।

ଚଂପା ସାମାନ୍ୟ ଦୁର୍ଘଟଣାରେ ଚଳତ୍ ଶକ୍ତି ହରାଏ । ସେ ଛୋଟି ହୋଇଯିବାରୁ ପ୍ରେମ କରୁଥିବା ଚନ୍ଦ୍ର ତାକୁ ଦୂରେଇ ଦିଏ । ଏକ ଉତ୍ସବ ମୁଖର ମୁହୂର୍ତ୍ତରେ ପ୍ରାଚୀନ ମନ୍ଦିର ପ୍ରାଙ୍ଗଣରେ ଦୁଃଖାଭିଭୂତ ଚଂପା ଏକ ସୁନ୍ଦର କମନୀୟ ବାଳକକୁ ସାକ୍ଷାତ କରେ । ବାଳକ ତାକୁ କୁହନ୍ତି, "ସୋମଦତ୍ତଙ୍କ ତିନି ପୁଅ ଭିତରୁ ଯେଉଁ ପୁଅ ସବୁଠୁଁ ଧାର୍ମିକ ସେ ଯଦି ତୁମକୁ ଆଶାବାଡି ଫିଙ୍ଗି ଚାଲିବାକୁ ଆଦେଶ ଦିଏ ତେବେ ତୁମର ଗୋଡ ତୁମେ ଫେରି ପାଇବ" ବାଳକକୁ ଭଗବାନ ମନେକରି ଚଂପା ଏହି ବକ୍ତବ୍ୟକୁ ମା ଓ ମଧୁକରଙ୍କ ସମ୍ମୁଖରେ ପ୍ରକାଶ କରିଛି । ସୋମଦତ୍ତ ସୁଖୀପଲ୍ଲୀର ଜଣେ ଦରିଦ୍ର ବ୍ରାହ୍ମଣ । ଜ୍ୟେଷ୍ଠପୁତ୍ର ମହାକାଞ୍ଚନ ପାତଞ୍ଜଳି ଶିଷ୍ୟ, ବେଦବିତ୍ ପରବର୍ତ୍ତୀ ପର୍ଯ୍ୟାୟରେ ମଗଧର ରାଜା ପୁଷ୍ୟମିତ୍ରଙ୍କର ପ୍ରଧାନମନ୍ତ୍ରୀ । ସେ ବୌଦ୍ଧ ଧର୍ମକୁ ବିଲୁପ୍ତ କରି ବ୍ରାହ୍ମଣ୍ୟ ଧର୍ମ ପ୍ରବର୍ତ୍ତନରେ ସଫଳ ହୋଇଥିଲେ । ସୋମଦତ୍ତଙ୍କ ଦ୍ୱିତୀୟ ପୁତ୍ର ମହାଶାଳ ଏକଦା ଖାରବେଳଙ୍କୁ ହିଂସ୍ର ସିଂହ କବଳରୁ ବଞ୍ଚାଇ ମହାସୈନ୍ୟାଧ୍ୟକ୍ଷ ପଦରେ ନିଯୁକ୍ତ ହୋଇଥିଲେ । ତୃତୀୟ ପୁତ୍ର ମହାସାର ଅନ୍ୟଜାତିର ଜଣେ କନ୍ୟାକୁ ବିବାହ କରି ବ୍ରାହ୍ମଣ ଜାତିରୁ ବିତାଡିତ ଏବଂ ମହାକଳଙ୍କ ରୁପେ ଆଖ୍ୟାତ । ଚଂପା ଦେଖିଥିବା ବାଳକଙ୍କୁ ବିଭିନ୍ନ ସଂପ୍ରଦାୟ ନିଜର ଆରାଧ୍ୟ ଦେବତା ରୂପେ ପ୍ରମାଣ କରିବାକୁ ପ୍ରତିଯୋଗିତା ଆରମ୍ଭ କରିଛନ୍ତି । ମହାସିଦ୍ଧ ମହାକାଞ୍ଚନ ବା ମହାଶକ୍ତିଶାଳୀ ମହାଶାଳ ଉପଦେଶ ଦେବାପରେ ମଧ୍ୟ ଚଂପାର ବିଡଂବିତ ଭାଗ୍ୟ ସଫଳ ହୋଇପାରିନାହିଁ । ମହାକାଞ୍ଚନଙ୍କ ମୋହଭଙ୍ଗ ଘଟିଛି । ସମସ୍ତଙ୍କ ଘୃଣାର ପାତ୍ର କିନ୍ତୁ ମାତାପିତାଙ୍କ ସେବାକାରୀ, ପରଦୁଃଖରେ କାତର ମହାସାରଙ୍କ ଆଦେଶରେ ଚଂପା ନିଜର ଚାଲିବା ଶକ୍ତି ଫେରିପାଇଛି । ପରେ ପରେ ଚନ୍ଦ୍ର ଭଲପାଇଛି ଚଂପାକୁ ମାନବିକତା ହିଁ ଶ୍ରେଷ୍ଠ ଧର୍ମରୂପେ ପ୍ରତିଷ୍ଠା ପାଇଛି । ଚାର୍ବାକଙ୍କ ମାନବବାଦୀ ଚିନ୍ତାଧାରା ଓ ମୌଳିକ ଚିନ୍ତନ ଦ୍ୱାରା ମହାକାଞ୍ଚନ ପ୍ରଭାବିତ ହୋଇଛନ୍ତି । ସମସ୍ତ ଧର୍ମର ଉର୍ଦ୍ଧ୍ୱରେ ମାନବିକତାର ପ୍ରତିଷ୍ଠା ହୋଇଛି । ବୌଦ୍ଧ ସଂଘର ବିଚାର ବୈକଲ୍ୟ, ଗୁହ୍ୟସମାଜର ଅଶ୍ଳୀଳ ଉପାସନା, ସନାତନ ବ୍ରାହ୍ମଣ୍ୟ ଧର୍ମର ସ୍ୱାର୍ଥ ସର୍ବସ୍ୱ ପ୍ରଚାର, ଜୈନ ଧର୍ମର ଔଦ୍ଧତ୍ୟ ଭାଙ୍ଗିଯାଇଛି । ଚାର୍ବାକଙ୍କ ମାନସିକ ବିପ୍ଳବ ସୃଷ୍ଟିର ଚରମ ସତ୍ୟକୁ ଆବିଷ୍କାର କରିଛି ।

ଏମିତି ଏକ ଦାର୍ଶନିକ ଭାବଭୂମିରେ ଆଧ୍ୟାତ୍ମିକତା ବନାମ ମାନବିକତାର ନିର୍ଯ୍ୟାସକୁ ସୁନ୍ଦର ଭାବରେ ଉପସ୍ଥାପନା କରିଛନ୍ତି ବାମାଚରଣ । ସମୟର ଯୁପକାଷ୍ଠରେ ବଳୀପଡ଼ିଛି ଅଳୀକତା । ପ୍ରତିଷ୍ଠା ପାଇଛି ମାନବୀୟ ସଂବେଦନା ।

ସମର ସେଟ ମମ୍‌ଙ୍କର 'କାଟାଲିନା'ର କାହାଣୀ ଭାଗକୁ ଆହରଣ କରି ବାମାଚରଣ ଚନ୍ଦ୍ର ଓ ଚଂପାର କାହାଣୀକୁ ଅଳଂକୃତ କରିଛନ୍ତି । କାଟାଲିନାର କାହାଣୀ ପରିବେଶ ଓ ପୃଷ୍ଠଭୂମି ଠାରୁ ଚନ୍ଦ୍ର ଓ ଚଂପାର ପରିବେଶ ଓ ପୃଷ୍ଠଭୂମି ସ୍ୱତନ୍ତ୍ର । କାଟାଲିନାର ମହାସ୍ରୋତରେ ଅନ୍ଧ ଭାବରେ ଭାସି ନଯାଇ ବାମାଚରଣ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । କାଟାଲିନାର ଆହରଣ ପ୍ରକ୍ରିୟାକୁ ମର୍ଯ୍ୟଦାବନ୍ତ କରିବାପାଇଁ ବାମାଚରଣ ଓଡ଼ିଶା ଇତିହାସର ପ୍ରାଚୀନ ଗଳ୍ପକୁ ଉପଜୀବ୍ୟ କରିଛନ୍ତି । ବ୍ରାହ୍ମଣ୍ୟ ଧର୍ମ, ବୈଦିକ ସଂସ୍କୃତି ଓ ବୌଦ୍ଧ ଧର୍ମ ଆଚାର ମଧ୍ୟରେ ଚନ୍ଦ୍ର ଓ ଚଂପାର ଆରୋପ ଯଥାର୍ଥ ଓ ସୌନ୍ଦର୍ଯ୍ୟନିଷ୍ଠ ହୋଇଛି । ମାନବୀୟ ଗୁଣାବଳୀର ଅପରୂପ ପରୀକ୍ଷା କ୍ଷେତ୍ର ରୂପେ 'ଚନ୍ଦ୍ର ଓ ଚଂପା' ଉପନ୍ୟାସ ସିଦ୍ଧିପ୍ରାପ୍ତ । ଏହାର ସୌନ୍ଦର୍ଯ୍ୟବତ୍ତା ଯୁଗାନ୍ତକାରୀ ଏବଂ ସର୍ବକାଳୀକ ।

## ଗ) ବିଚ୍ଛିନ୍ନ ଭାବବୋଧର ଐକ୍ୟସୂତ୍ର : ବାମାଚରଣଙ୍କ ପ୍ରବନ୍ଧ

ଝଙ୍କାର ପୃଷ୍ଠାରେ ପ୍ରକାଶିତ ବାମାଚରଣଙ୍କ ଅନେକ ପ୍ରବନ୍ଧ ଓ ରମ୍ୟରଚନା ଅଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ତାଙ୍କ ଭାଷାରେ କୌଳୀନ୍ୟ ଓ ଓଜସ୍ୱିନୀ ସମ୍ଭାର ସହିତ ଲାଳିତ୍ୟ ଓ ସାବଲୀଳତା ତାଙ୍କୁ ଜଣେ ବିଶିଷ୍ଟ ପ୍ରାବନ୍ଧିକ ଓ ଚିନ୍ତାନାୟକର ସମ୍ମାନ ପ୍ରଦାନ କରେ । ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ଓ ରମ୍ୟରଚନା ସମୂହରୁ 'ଏଣୁଷ୍ଟ ତେଣୁଷ୍ଟ' (୧୯୭୩- ଗ୍ରନ୍ଥମନ୍ଦିର) ସଂକଳନରେ ୮ଟି ରମ୍ୟରଚନା ପ୍ରକାଶିତ । ସେଗୁଡ଼ିକ ହେଲା ଶୋକ ସମ୍ବାଦ, ଖୋସାମଦି ସପକ୍ଷରେ, ଯାଦୁକରର ଖେଳ, ଭଡ଼ାଟିଆ, ଗୋଟିଏ ବାକ୍ୟରଚନା, ଅପାଂକ୍ତେୟ ସାହିତ୍ୟ, କାହିଁକି କେଜାଣି, ଫୈୟାଜ୍ ଖାଁ । ବାମାଚରଣଙ୍କ ସର୍ବଶ୍ରେଷ୍ଠ ସମ୍ମାନପ୍ରଦ ପୁସ୍ତକ 'ଜୀବନ ସାହିତ୍ୟ ଓ କଳା'ରେ ୧୦ଟି ପ୍ରବନ୍ଧ ଅନ୍ତର୍ଭୁକ୍ତ । ସେଗୁଡ଼ିକ ହେଲା ସୂଚନା : ତତ୍ତ୍ୱ ଓ ଲୀଳା, ସାହିତ୍ୟ ଓ କଳା, ସାହିତ୍ୟ ବିଚାରକର ଗୁରୁଦାୟିତ୍ୱ, ଆଧୁନିକତା, ସାହିତ୍ୟ ଓ ସ୍ୱପ୍ନ, ହାସ୍ୟ ଓ ରସ, କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ: ବ୍ୟଷ୍ଟି ଓ ସମଷ୍ଟି, ଉପମା, ପରିକ୍ରମା, ଅନୁଦାନ ବିଭ୍ରାଟ, ବାହୁଲ୍ୟ । ଏହି ପ୍ରବନ୍ଧଗୁଡ଼ିକରେ ବାମଚରଣଙ୍କ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ସହିତ ବହୁ ଶାସ୍ତ୍ରଦର୍ଶିତାର ପରିଚୟ ମିଳେ । କଳା, ସାହିତ୍ୟ, ଦର୍ଶନ, ବୈଦିକ ସାହିତ୍ୟ, ବୌଦ୍ଧ ଧର୍ମ ଦର୍ଶନ, ଜୈନ ଧର୍ମ ଦର୍ଶନ, ମନସ୍ତତ୍ତ୍ୱ, ବିଜ୍ଞାନ, ରାଜନୀତି, ଇତିହାସ ପ୍ରଭୃତି ଉପରେ ତାଙ୍କର ଗଭୀର ପ୍ରବେଶ ଏହି ପର୍ଯ୍ୟାୟର ପ୍ରବନ୍ଧଗୁଡ଼ିକୁ ଉତ୍କର୍ଷତାର କୋଟିକୁ ପହଞ୍ଚାଇଛି । ଅତି ସୂକ୍ଷ୍ମ ଭାବରେ ସେ

ବିଭିନ୍ନ ପ୍ରସଙ୍ଗର ସଂଜ୍ଞା ନିରୂପଣ କରି ପାଠକକୁ ତାଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ଦେଉଥିଲେ । ଅତି ସହଜରେ ସେ କହିପାରୁଥିଲେ ''ନାନ୍ଦନିକ କଳାର ଉଦ୍ଦେଶ୍ୟ ହେଲା, କାନ ଭିତର ଦେଇ ମରମକୁ ପ୍ରବେଶ କରି ମନ ପ୍ରାଣ ଆକୁଳ କରିବା ('ସଖୀ, କେବା ଶୁନାଇଲ ଶ୍ୟାମ ନାମ, କାନେର ଭିତର ଦିୟାମରମେ ପଶିଲ ଗୋ, ଆକୁଲ କରିଲ ମୋର ପ୍ରାନ୍') ଅର୍ଥାତ୍ ଇନ୍ଦ୍ରିୟ ମାଧ୍ୟମରେ ହୃଦୟକୁ ଯିବା । ତତ୍ତ୍ୱକୁ ତେଣୁ ଲୀଳାରେ ଦେଖାଇବା ପାଇଁ ସାହିତ୍ୟର (ବ୍ୟାପକ ଅର୍ଥରେ) ସୃଷ୍ଟି ।'' (ସୂଚନା : ତତ୍ତ୍ୱ ଓ ଲୀଳା, ସାହିତ୍ୟ ଓ କଳା)

କଳାର ଉଦ୍ଦେଶ୍ୟ ତେଣୁ ସବୁକଥାକୁ ବା ତତ୍ତ୍ୱକୁ ଇନ୍ଦ୍ରୀୟସ୍ତରକୁ ଆଣି ମନବୁଦ୍ଧି ଆତ୍ମାକୁ ଉଦ୍ଦୀପିତ କରିବା । କୌଣସି ତତ୍ତ୍ୱ ଦ୍ୱାରା ଲେଖକ ବେଦନା ପାଇଥିବ ଉଦ୍‌ବୁଦ୍ଧ ହୋଇଥିବ ଏବଂ ସେହିକ୍ରମରେ ପାଠକ ଚିତ୍ତକୁ ପ୍ରଜ୍ଞାକୁ ପ୍ରଚୋଦିତ କରିବ । ତେବେ ଯାଇ ତତ୍ତ୍ୱଟିଏ ଘଟଣାଟିଏ କଳାରେ ରୂପାନ୍ତରିତ ହେବ । ବାମାଚରଣ ନିଜ ପ୍ରବନ୍ଧରେ ଇନ୍ଦ୍ରୀୟପ୍ରବଣ ଲେଖାଠାରୁ ବୁଦ୍ଧି ପ୍ରବଣ ଲେଖାକୁ ଉତ୍କୃଷ୍ଟ ଏବଂ ସବୁଠାରୁ ଉତ୍କୃଷ୍ଟ ଲେଖାରୂପେ ଆଧ୍ୟାତ୍ମିକକୁ ପ୍ରତିପାଦନ କରିଛନ୍ତି ।

'ହାସ୍ୟ ଓ ରସ' ବାମାଚରଣଙ୍କ ଏକ ଉଚ୍ଚକୋଟିର ପ୍ରବନ୍ଧ । ଏଥିରେ ନିରପେକ୍ଷ ଭାବେ ହାସ୍ୟରସର ପୃଷ୍ଠଭୂମିକୁ ଅନାବରଣ କରିଛନ୍ତି । ବିଶ୍ଳେଷଣ ପ୍ରକ୍ରିୟା ମାଧ୍ୟମରେ ବାମାଚରଣ ସ୍ପଷ୍ଟ କରିଛନ୍ତି "ଅନ୍ୟ ଲୋକ ପ୍ରତି ନିଜର କ୍ରୋଧ, ଘୃଣା ଆଦି ଉଦ୍ରେକ ମାଧ୍ୟମରେ ହାସ୍ୟରସର ସୃଷ୍ଟି ହସ ପଛରେ ହସିବା ଲୋକର କ୍ରୂରତା ଛପି ରହିଥାଏ ଏବଂ ଯେଉଁ ଲେଖକ ଏସବୁ ଘଟନା ପରିବେଷଣ କରି ହସାଇବାର ଚେଷ୍ଟା କରେ ତାହାର ମଧ୍ୟ କ୍ରୁରତା ଓ ଅଶ୍ଳୀଳତା ପ୍ରକାଶ ପାଏ ।" (ହାସ୍ୟ ଓ ରସ) ପରବର୍ତ୍ତୀ ସମୟରେ ହାସ୍ୟରସ ଆଦର୍ଶକୁ ଆଧାର କରି ଏହି କ୍ରୂରତାକୁ ବର୍ଜନ କରିଛି । ବାମାଚରଣଙ୍କ ଦୃଷ୍ଟିରେ, "କୌଣସି ଆଦର୍ଶକୁ ଆଖି ଆଗରେ ରଖି କୌଣସି ଦୁର୍ବଳତାକୁ ଯେତେବେଳେ ହାସ୍ୟକର, ଭାବରେ ନିନ୍ଦା କରାଯାଏ ତାହା ହୁଏ ବ୍ୟଙ୍ଗ ।"

କ୍ଷୁଦ୍ରଗଳ୍ପ ଓ ଉପନ୍ୟାସର କଳାତ୍ମକ ବ୍ୟବଧାନକୁ ଲେଖକ ସ୍ପଷ୍ଟ କରିଛନ୍ତି । "କ୍ଷୁଦ୍ରଗଳ୍ପରେ ବ୍ୟକ୍ତିର ଦୃଷ୍ଟିରୁ ସମାଜର ବିଚାର ହୁଏ । ଉପନ୍ୟାସରେ ସମାଜର ଦୃଷ୍ଟିରୁ ବ୍ୟକ୍ତିର ବିଚାର ହୁଏ । ଉପନ୍ୟାସରେ ସମାଜର ଦୃଷ୍ଟିରୁ ବ୍ୟକ୍ତିର ବିଚାର ହୁଏ । କ୍ଷୁଦ୍ରଗଳ୍ପରେ ଏକକ ଦୃଷ୍ଟିରୁ ବହୁର ବିଚାର ଏବଂ ଉପନ୍ୟାସରେ ବହୁର ଦୃଷ୍ଟିରୁ ଏକର ବିଚାର । କହିପାରନ୍ତି, କ୍ଷୁଦ୍ରଗଳ୍ପ ହେଉଚି ଆରୋହକ୍ରମ (ଇଣ୍ଡକ୍ଟିଭ୍) ବ୍ୟାପ୍ତି, ବିଶେଷ (ପର୍ଟିକୁଲାର) ଦୃଷ୍ଟିରୁ ସାଧାରଣର (ଜେନେରାଲ୍) ବିଚାର । ଅପରପକ୍ଷରେ ଉପନ୍ୟାସ ହେଉଚି ଅବରୋହକ୍ରମ (ଡିଡକ୍ଟିଭ୍) ବ୍ୟାପ୍ତି, କୌଣସି ଯୁଗର ସାଧାରଣ ନିୟମ ବା ନୀତି ବା ହିତ ଦୃଷ୍ଟିରୁ ବ୍ୟକ୍ତି ବିଶେଷର ବିଚାର । '' (କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ : ବ୍ୟଷ୍ଟି ଓ ସମଷ୍ଟି)

'ଉପମା' ପ୍ରବନ୍ଧଟି ବୈଦିକ ଦର୍ଶନ ଏବଂ ଉପନିଷଦର ସ୍ୱରୂପ ବିଶ୍ଳେଷଣରେ ସକ୍ଷମ। ବୌଦ୍ଧ ଧର୍ମର ସାରନିର୍ଯ୍ୟାସ, ଶଙ୍କରଙ୍କ ବ୍ରହ୍ମସୂତ୍ର, ଆଇନଷ୍ଟାଇନଙ୍କ ଆପେକ୍ଷିକ ବାଦର ସୂକ୍ଷ୍ମ ବିଚାର ଏହି ପ୍ରବନ୍ଧରେ କରାଯାଇଛି। ପରବର୍ତ୍ତୀ ପର୍ଯ୍ୟାୟରେ ରାମାନୁଜନଙ୍କ 'ବିଶିଷ୍ଟ ଅଦ୍ୱୈତବାଦ', ମାଧ୍ୱାଚାର୍ଯ୍ୟଙ୍କ ଦ୍ୱୈତବାଦ, ଶ୍ରୀଚୈତନ୍ୟଙ୍କ 'ଅଚିନ୍ତ୍ୟ ଭେଦାଭେଦ' ବା ''ଅଚିନ୍ତ୍ୟ ଦ୍ୱୈତାଦ୍ୱେତ'' ସହିତ ଲୀଳାବାଦ ଓ ମାୟାବାଦର ସୂକ୍ଷ୍ମ ରହସ୍ୟ ଏବଂ ସୃଷ୍ଟି ପ୍ରକ୍ରିୟା ଓ ମାନବ ଜୀବନରେ ଏହାର ପ୍ରଭାବକୁ ବାମାଚରଣ ଆଧୁନିକ ଦୃଷ୍ଟିକୋଣରୁ ବିଚାର କରିଛନ୍ତି। ଏ ସମସ୍ତ ବାଦ ବେଦାନ୍ତରୁ ସାର ଗ୍ରହଣ କରିଥିବାର ପ୍ରତିପନ୍ନ ହୁଏ। ଏପରିକି ବେଦାନ୍ତ ଦିଏ ଆଧ୍ୟାତ୍ମିକ (ସ୍ପିରିଚୁଆଲ) ଐକ୍ୟ। ପରବର୍ତ୍ତୀ ଦର୍ଶନ ସବୁ ଦିଏ ନୈତିକ (ମୋରାଲ) ଐକ୍ୟ । ଆଧ୍ୟାତ୍ମିକ ଐକ୍ୟ ଅପରିବର୍ତ୍ତନୀୟ ; କିନ୍ତୁ ଦେଶକାଳ ପାତ୍ର ଅନୁସାରେ ନୈତିକ ଐକ୍ୟ ପରିବର୍ତ୍ତନଶୀଳ ଏବଂ କ୍ରମବିକାଶଶୀଳ। ଉପମା ପ୍ରବନ୍ଧର ଶେଷ ଭାଗରେ ଲେଖକ ଶେଲିଙ୍କ କବିତା, ରାମାୟଣ, କାଳିଦାସଙ୍କ ରଘୁବଂଶ, ବ୍ୟାସଦେବଙ୍କ ଉପମାର ଅପରିହାର୍ଯ୍ୟତା ଦର୍ଶାଇଲା ବେଳେ ଅନ୍ୟପକ୍ଷରେ ଆଧୁନିକ କବିଙ୍କ ଚନ୍ଦ୍ରର ଧବଳତ୍ୱକୁ ବବୁର୍ଚିର ପଗଡି ସହିତ ଏବଂ ଚନ୍ଦ୍ରର ବର୍ତ୍ତୁଳତ୍ୱକୁ ସେକାରୁଟି ସହିତ ତୁଳନାର ଆବେଗହୀନତାକୁ ସମାଲୋଚନା କରିଛନ୍ତି।

ପରିକ୍ରମା ଶୀର୍ଷକରେ ମାନସ ମାର୍ଚ୍ଚ-୧୯୭୩ ଓ ମଇ-୧୯୭୩ ରେ ପ୍ରକାଶିତ ପ୍ରବନ୍ଧଟି ବାମାଚରଣଙ୍କ ଏକ ଚମତ୍କାର ଉପସ୍ଥାପନା। ମାନସରେ ପ୍ରକାଶିତ ପ୍ରବନ୍ଧକୁ ପରିବର୍ଦ୍ଧିତ କରି ବାମାଚରଣ ପୁସ୍ତକରେ ସ୍ଥାନ ଦେଇଛନ୍ତି। ଏଥିରେ ଅନେକ ତଥ୍ୟ ନୂତନ ଭାବେ ସଂଯୋଜିତ ହୋଇଛି Uncertainty principle & Quantum mechanics, nature of the physical world, ଆଲବର୍ଟ କାମ୍ୟୁ, ଶଙ୍କରାଚାର୍ଯ୍ୟ, ସଙ୍ଗୀତ, ଧ୍ୱନିତତ୍ତ୍ୱକୁ ନେଇ ପ୍ରରିକ୍ରମାର ସାରସ୍ୱତ ଯାତ୍ରା। ଏଥିରେ ବିଜ୍ଞାନ ଠାରୁ ସାହିତ୍ୟ, ସମାଜ ଠାରୁ ସଙ୍ଗୀତର ଚର୍ଚ୍ଚା ବେଶ୍ ରୋଚକ ଓ ଶିକ୍ଷ ସଙ୍ଗତ। ଏହି ପ୍ରବନ୍ଧରେ ଧ୍ୱନି ଓ ସଂଗୀତ ଉପରେ ମାର୍ମିକ ବର୍ଣ୍ଣନା କରିଛନ୍ତି ଲେଖକ। ଭାବପ୍ରକାଶ ପାଇଁ ଧ୍ୱନିଠାରୁ ଭାଷା ଯାଏ ବିବର୍ତ୍ତନର ପର୍ଯ୍ୟାୟକୁ ବିଭିନ୍ନ ପ୍ରସଙ୍ଗ ଦେଇ ସ୍ୱଷ୍ଟ କରାଯାଇଛି। ପରିକ୍ରମାର ଶେଷ ଭାଗରେ ଶୈଳୀ ବା ଫର୍ମ ଉପରେ କଳାତ୍ମକ ଟିପ୍ପଣୀ ବାଢ଼ିଛନ୍ତି ବାମାଚରଣ। ଏକ ଅମୂର୍ତ୍ତବେଦନା ହିଁ ଲେଖକର ପ୍ରକାଶନ୍ମୁଖୀତାକୁ ଦିଏ ନୂଆ ଏକ ଫର୍ମ। ବେଦନାହୀନ ଲେଖକ ସେହି ଫର୍ମକୁ ଅକ୍ତିଆର କଲେ ସେ ହୋଇଯାଏ ଫେଶନ। ବେଦନା ଥିଲେ ଯେକୌଣସି ଫର୍ମ ହୃଦୟଗ୍ରାହୀ।

'ଅନୁବାଦ ବିଭ୍ରାଟ' ପ୍ରବନ୍ଧରେ ସାମାନ୍ୟ ଶବ୍ଦ ଅନୁବାଦ ବିଭ୍ରାଟ ଯୋଗୁ କିପରି ହିରୋସୀମା ଉପରେ ପରମାଣୁ ବୋମା ପଡି ଲୋକଙ୍କ ଜୀବନହାନୀ କଲା ତାହା ହିଁ ବର୍ଣ୍ଣିତ।

ଜୀବନ, ସାହିତ୍ୟ ଓ କଳା ପୁସ୍ତକର ଶେଷ ପ୍ରବନ୍ଧ ବାହୁଲ୍ୟ । ଏହା ଏକ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧର କାନଭାସ ବିସ୍ତିର୍ଣ୍ଣ, ସାହିତ୍ୟର ଅନେକ ରୂପାଙ୍ଗିକ ସେଥିରେ ପ୍ରତିଫଳିତ । ଚାର୍ଲିଚ୍ୟାପଲିନ୍‌ଙ୍କ ଉତ୍ସର୍ଗୀକୃତ କମେଡିର ସମ୍ଭାବନାମୟ ଦିଗ ସବୁକୁ ଏହି ପ୍ରବନ୍ଧରେ ଉପସ୍ଥାପିତ କରାଯାଇଛି । ବହୁ ଆୟାମ ବିଶିଷ୍ଟ ବାମାଚରଣଙ୍କ ସ୍ରଷ୍ଟାମାନସ ଓ ତାର ଅଭିବ୍ୟକ୍ତିର ଯଥାର୍ଥ ପରିପ୍ରକାଶ ବାହୁଲ୍ୟ । ଏହି ପ୍ରବନ୍ଧରେ କ୍ଷୁଦ୍ରଗଳ୍ପର ସ୍ୱରୂପଠାରୁ ରବୀନ୍ଦ୍ରନାଥ, ଚାର୍ଲିଚାପଲିନଙ୍କ ହାସ୍ୟରସପୂର୍ଣ୍ଣ ଅଭିନୟ, ଶ'ଙ୍କ ନାଟକ, ଡନ୍‌କୁଇକସଟ୍ ଉପନ୍ୟାସର ରୋମାଞ୍ଚକର କାହାଣୀ ମଞ୍ଜୁଳ ଭାବେ ଗୁଂଫିତ । ସେର୍‌ଭାନ୍ତୀଜ୍‌ଙ୍କ ଡନ କୁଇକସଟରେ ହାସ୍ୟ ଭିତରେ କାରୁଣ୍ୟର ସ୍ଥାପନା ସମସ୍ତ ଜଗତକୁ ଚମତ୍କୃତ କରିଥିଲା । ଭାରତୀୟ ସାହିତ୍ୟରେ ଭାଣ୍ଡ, ଦୁଆରୀ ପ୍ରଭୃତି ଚରିତ୍ରରେ ହାସ୍ୟରସର ଅବତାରଣାକୁ ଏଠାରେ ନିର୍ମୋହ ଆବେଗରେ ଲେଖକ ପରିବେଷଣ କରିଛନ୍ତି । ଲେଖକ ସାହିତ୍ୟର ମଞ୍ଚ ସ୍ୱପ୍ନ ରୂପେ ଅଭିହିତ କରିଛନ୍ତି । ସେହି ମଞ୍ଚକୁ କାରୁଣ୍ୟ ମଜ୍‌ଭୁତ ଓ ହାସ୍ୟ ବିସ୍ତାରିତ କରେ । ଆପଣାର ମାଟି ପ୍ରୀତିକୁ ବିସ୍ତାରିତ କରି ସାର୍ବଜନୀନ ପ୍ରଜ୍ଞା ଦ୍ୱାରା ଅଭିଷିକ୍ତ କରିବାରେ ବାମାଚରଣ ସିଦ୍ଧହସ୍ତ । ତାଙ୍କର ଭାବାଦର୍ଶ ଓ ମାଟି ପ୍ରୀତିର ସଂଘର୍ଷ ଓ ସମନ୍ୱୟ ପ୍ରତିଟି ପ୍ରବନ୍ଧକୁ ଦେଇଛି କାଳହୀନ ଦୀପ୍ତି ।

'ଶୋକ ସମ୍ବାଦ' ପ୍ରବନ୍ଧର ମୂଳ ଭିତ୍ତି ଜଣେ ଅଜଣା ଲୋକର ମୃତ୍ୟୁ ସମ୍ବାଦ ପରିବେଷଣ ଜନିତ । ଏହି ମୃତ୍ୟୁ ସମ୍ବାଦକୁ ନେଇ ପ୍ରାବନ୍ଧିକ ମୃତ୍ୟୁର ଦାର୍ଶନିକ ବ୍ୟାଖ୍ୟା କରିଛନ୍ତି । ଏଥିରେ କାରୁଣ୍ୟର ଉତ୍କଟତା ଓ ନିର୍ବୋଧତାର ବାହୁଲ୍ୟ ହାସ୍ୟରସର ସଞ୍ଚାର କରୁଛି । ମୃତ୍ୟୁକୁ ନେଇ ଏକା ସାଥିରେ ଆଧ୍ୟାତ୍ମିକ ଓ ସାମାଜିକ ଭାବଧାରାର ପଲ୍ଲବନ ରଚନାଟିକୁ ସୁଖପାଠ୍ୟ କରିଛି । ବାମାଚରଣଙ୍କ ପ୍ରବନ୍ଧ ମଧ୍ୟରେ ଅନେକ ଦୃଷ୍ଟାନ୍ତ, ନୀତି ଶିକ୍ଷା ଓ କାହାଣୀର ସମାବେଶ ପାଠକକୁ ସ୍ତମ୍ଭୀଭୂତ କରିଦିଏ ।

"ଖୋସାମଦି ସପକ୍ଷରେ ପ୍ରବନ୍ଧରେ ଏକ ମନୋରମ କାହାଣୀର ଅବତାରଣା ସହିତ ପ୍ରାବନ୍ଧିକ ନିଷ୍କର୍ଷରେ ପହଞ୍ଚିଛନ୍ତି" ଖୋସାମଦି କଳା ଏବଂ ବିଜ୍ଞାନ ଉଭୟ, ଏବଂ କଳାବିଦ୍ୟାମାନଙ୍କ ଭିତରେ ଯେମିତି ସର୍ବଶ୍ରେଷ୍ଠ କଳାବିଦ୍ୟା, ବିଜ୍ଞାନମାନଙ୍କ ମଧ୍ୟରେ ବି ସେହିପରି । ତୋଷାମଦର ବିଭିନ୍ନ ସ୍ୱରୂପକୁ ମାର୍ମିକ ଭାବରେ ଏଠାରେ ଉପସ୍ଥାପିତ କରାଯାଇଛି । ତୋଷାମଦିଆମାନଙ୍କୁ ନିର୍ମମ ଭାବେ ସମାଲୋଚନା କରାଯାଇଛି । ଏଠାରେ ରାଜା, ଉପରିସ୍ଥ ହାକିମ ଏବଂ ଭାର୍ଯ୍ୟା ଓ ପ୍ରଣୟିନୀମାନଙ୍କୁ କରାଯାଉଥିବା ଖୋସାମଦର ବିଭିନ୍ନତା ତଥା ସ୍ୱରୂପ ବିଶ୍ଳେଷଣ କରାଯାଇଛି । ଲେଖକଙ୍କ ଭାଷାରେ ଭର୍ଯ୍ୟା ଓ ପ୍ରଣୟିନୀମାନଙ୍କୁ ଖୋସାମଦ ଏକ ସଂପୂର୍ଣ୍ଣ ଭିନ୍ନ କଳା ଓ ବିଜ୍ଞାନ ଏବଂ କଠିନତମ କଳା ଓ ବିଜ୍ଞାନ । ଏହା ଏକ ଚମତ୍କାର ରମ୍ୟରଚନା ।

'ଯାଦୁକରର ଖେଳ' ପ୍ରବନ୍ଧରେ ଯାଦୁକରମାନଙ୍କ ବିଭିନ୍ନ ଲୀଳାର ଅବତାରଣା କରାଯାଇଛି । ତନ୍ତ୍ର, ମନ୍ତ୍ର ଏବଂ ଭୋଜବାଜିର ଅବତାରଣା ସହିତ ଯାଦୁକରର ଆକର୍ଷଣୀୟ

ବକ୍ତବ୍ୟ, ଗୀତ ଓ ଅଭିନୟ କିପରି ଦର୍ଶକଙ୍କୁ ସ୍ତମ୍ଭୀଭୂତ କରେ ତାହା ଏହି ପ୍ରବନ୍ଧର ମୁଖ୍ୟ ବିଭାବ ।

'ଭଡାଟିଆ' ପ୍ରବନ୍ଧରେ ବିଭିନ୍ନ ପ୍ରକାର ଭଡାଟିଆଙ୍କ ସ୍ୱରୂପ ଦର୍ଶାଯାଇଛି । ଭଡାଟିଆ ଖେଳାଳୀ, ଭଡାଟିଆ ଅଭିନେତା, ଭଡାଟିଆ ବରଯାତ୍ରୀଙ୍କ ବିଷୟ ସୁନ୍ଦର ବକ୍ତବ୍ୟ ମାଧ୍ୟମରେ ପ୍ରଦତ୍ତ ହୋଇଛି । ପ୍ରବନ୍ଧଟିରେ ମଣିଷକୁ ଏକ ଭାବାତ୍ମକ ଗୋପୀ ଏବଂ ସେ ପରମପୁରୁଷ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାକୁ ଉନ୍ମୁଖ ବୋଲି ବର୍ଣ୍ଣିତ । ଲଜ୍ଜା, ଅଭିମାନ, ଗର୍ବ, ଅହଂ, କ୍ରୋଧକୁ ଜଳାଞ୍ଜଳି ଦେଇ ପ୍ରେମ, ମୈତ୍ରୀ, ସାମ୍ୟ ଗୁଣ ଆହରଣ କରି ବିନୟୀ ହେବା ହିଁ ବିଭୁକୃପା ।

'ଗୋଟିଏ ବାକ୍ୟ ରଚନା'ରେ ପୁଅର ସାଧାରଣ ବାକ୍ୟ ଗଠନକୁ ନେଇ ଜ୍ଞାନବିଜ୍ଞାନ ଓ ପୁରାଣର ଚର୍ଚ୍ଚା ହୋଇଛି । ସାଧାରଣ ଗୋଟିଏ ଘଟଣାକୁ ଅସାଧାରଣ କରିବାର କଳା ବାମାଚରଣଙ୍କୁ ବେଶ୍ ଜଣା । ସେଇ ସାଧାରଣ ଭିତ୍ତିରେ ବିଭିନ୍ନ ଦର୍ଶନର ଆଲୋଡନ କରି କାରୁଣ୍ୟ ଭିତରେ ପାଠକକୁ ଯୁଗପତ୍ ହାସ୍ୟ ଓ ବିସ୍ମୟରେ ବାନ୍ଧି ରଖିବା ବାମାଚରଣଙ୍କ ନିଆରାପଣ । ଏହି ପାରଙ୍ଗମତା ଗୋଟିଏ ବାକ୍ୟରଚନାରେ ପରିଦୃଶ୍ୟମାନ ।

'ଅପାଂକ୍ତେୟ' ସାହିତ୍ୟ ପ୍ରବନ୍ଧରେ ବିଜ୍ଞାପନ ସାହିତ୍ୟ ଓ ଆଇନ ସାହିତ୍ୟ ସମ୍ପର୍କରେ ଲେଖକସୂଚନା ଦେଇଛନ୍ତି ।

'କାହିଁକି କେଜାଣି' ପ୍ରବନ୍ଧରେ ଭଣ୍ଡ ଧାର୍ମିକତାକୁ ବାମାଚରଣ ସମାଲୋଚନା କରିଛନ୍ତି । ବିଭିନ୍ନ ପ୍ରକାର ଲୋକଙ୍କ ସ୍ୱରୂପ ଏବଂ ସମାଜ ଜୀବନରେ ତାଙ୍କର ଭୂମିକାକୁ ସୁନ୍ଦର ରୂପେ ଏହି ପ୍ରବନ୍ଧରେ ବର୍ଣ୍ଣନା କରାଯାଇଛି । ମଣିଷ ଜୀବନର ଛଦ୍ମତାକୁ ଏଠାରେ କଳାତ୍ମକ ଭାବେ ଲେଖକ ପ୍ରକାଶ କରିଛନ୍ତି । ନିଜର ନ୍ୟୁନତା ପ୍ରକାଶ ଅନ୍ତରାଳରେ ନିଜର ମହାନତାକୁ ବିଜ୍ଞାପିତ କରିବାର ସହଜାତ ମାନସିକତା ପରିସ୍ଫୁଟ ହୁଏ । ମଣିଷ ସର୍ବକାଳୀନ ନିଜର ଅହଂକୁ ଗୁରୁତ୍ୱ ଦେଉଥିବା କଥା ଲେଖକ ସ୍ୱୀକାର କରିଛନ୍ତି । ବାମାଚରଣଙ୍କ ପ୍ରବନ୍ଧ ବିନ୍ଦୁରୁ ଆରମ୍ଭ ହୋଇ ସିନ୍ଧୁକୁ ସଞ୍ଚରିଯାଏ । ଏହି ପ୍ରବନ୍ଧରେ ମଣିଷ ପ୍ରାଣର ଛଦ୍ମତା, ପ୍ରକାଶର ଅଳୀକତା କହିଲାବେଳେ, ଦେହର ଉଲ୍ଲାସ ଓ ଦେହାତୀତ ଆନନ୍ଦ ଏବଂ ମୈଥୁନର ଅପାର ଉନ୍ମାଦନା କଥା ଲେଖି ପକାଇଛନ୍ତି ।

'ଫୈୟାଜ ଖାଁ ' ସଂଗୀତଜ୍ଞଙ୍କ ସଂଗୀତର ଚରମ ମାଧୁର୍ଯ୍ୟ ଓ ଅସୀମ ଐଶ୍ୱର୍ଯ୍ୟର ଭାବକୁ ଲେଖକ ଫୈୟାଜ୍ ଖାଁ ପ୍ରବନ୍ଧରେ ପ୍ରକାଶ କରିଛନ୍ତି । ଅନନ୍ୟ କୋହ ଏବଂ ଅସୀମ ଆହ୍ଲାଦକର ବେଦନା ସଂଯାତ ଅବସ୍ଥାକୁ ଚିରବିରହ ଅବସ୍ଥା କୁହାଯାଏ । ଯେଉଁ ଅବସ୍ଥାରେ ରହୁଥିଲେ ଶ୍ରୀରାଧା । ସେପରି ଏକ ଆଚ୍ଛନ୍ନ ଅବସ୍ଥା ଓ ମୋହାବିଷ୍ଟ ପ୍ରତ୍ୟୟ ସୃଷ୍ଟି କରୁଥିଲା ଫୈୟାଜ ଖାଁଙ୍କ ସଂଗୀତ । ଏହି ପ୍ରବନ୍ଧରେ ବିଭିନ୍ନ ଘରାନାର ସଂଗୀତ ଏବଂ ବିଭିନ୍ନ ରାଗର ତାତ୍ତ୍ୱିକ ବ୍ୟାଖ୍ୟା ଲେଖକଙ୍କ ସଂଗୀତ ଜ୍ଞାନର ପରାକାଷ୍ଠାକୁ ଅଭିବ୍ୟଂଜିତ କରେ ।

ବାମାଚରଣଙ୍କ ଉପରୋକ୍ତ ଦୁଇଟି ଗଦ୍ୟ ପୁସ୍ତକ ବ୍ୟତିରେକେ ଅନେକ ପ୍ରବନ୍ଧ ଝଙ୍କାରରେ ପ୍ରକାଶିତ । ଏହି ପ୍ରସଙ୍ଗରେ ସମାଜ ଓ ନେତୃତ୍ୱ (ଝଙ୍କାର -୧୯/୩) ଓ ଥାପିରେ କୁହ ତଥାପିରେ ପ୍ରବନ୍ଧକୁ ସ୍ମରଣ କରାଯାଇପାରେ । ଥାପିରେ କୁହ ତଥାପିରେ ଏକ ରମଣୀୟ ରମ୍ୟରଚନା । ଏଥିରେ ଅବସରପ୍ରାପ୍ତ ଜୀବନର ସ୍ୱାଧୀନତା ବର୍ଣ୍ଣିତ । ଏହି ରମ୍ୟରଚନା ସଂପର୍କରେ ଲେଖକ ସୂଚନା ଦିଅନ୍ତି - "ମୋ ଜୀବନର କେତେଗୁଡ଼ିଏ କୌତୁହଳପ୍ରଦ ଅଭିଜ୍ଞତା । ଏ କୌତୁକ ଭିତରେ କାରୁଣ୍ୟ ମଧ୍ୟ ଅଛି । ଏହା କିନ୍ତୁ ଆଦୌ ଆତ୍ମଚରିତ ନୁହେଁ । ଏଥିରେ ଶତକଡା ପ୍ରାୟ ଷାଠିଏ ଭାଗ ସତ ଓ ଚାଳିଶ ଭାଗ କଳ୍ପନାର ରଂଗଦିଆ । ସ୍ଥାନ କାଳ ପାତ୍ର ମାନଙ୍କ ନାମ ତେଣୁ ଊହ୍ୟ । ଅନ୍ୟାନ୍ୟ ବିଷୟ ଗୁଡିକ ନିଜର ଅଭିଜ୍ଞତା" (ଥାପିରେ କୁହ ତଥାପିରେ-୧ : ଝଙ୍କାର ୨୫/୭) ଏହି ରମ୍ୟରଚନାର ଦ୍ୱିତୀୟ ଭାଗ 'ମାନସ' ପତ୍ରିକାରେ ପ୍ରକାଶିତ । କମିଶନରଙ୍କ ଗ୍ରାମପଞ୍ଚାୟତ ପରିଦର୍ଶନ, ଚେୟାରମେନଙ୍କ ଉପସ୍ଥିତବୁଦ୍ଧି ଓ ପରିଦର୍ଶନର ହାସ୍ୟକର ବ୍ୟାପାରକୁ ଅତି ସୁନ୍ଦର ଭାବେ ଲେଖକ ଏହି ରମ୍ୟରଚନାରେ ବର୍ଣ୍ଣନା କରିଛନ୍ତି । କମିଶନରଙ୍କ ପରିଦର୍ଶନ ଗୌଣ ବରଂ ଖିଆପିଆ ଏବଂ ତାଙ୍କୁ ସ୍ୱାଗତ କରିବାର ଡେଲିଙ୍ଗିବାଜା ପ୍ରଭୃତି ମୁଖ୍ୟରୂପେ ବର୍ଣ୍ଣିତ ।

ସମାଜ ଓ ନେତୃତ୍ୱ ପ୍ରବନ୍ଧଟି ଝଙ୍କାର ୧୯/୭ ସଂଖ୍ୟାରେ ପ୍ରକାଶିତ । ଏହାକୁ ଝଙ୍କାରର ଏକ ସ୍ୱତନ୍ତ୍ର ସ୍ତମ୍ଭ "ସାହିତ୍ୟ, ସମାଜ ଓ ସଂସ୍କୃତି" ରେ ସ୍ଥାନିତ କରାଯାଇଥିଲା । ଏହି ସ୍ତମ୍ଭକୁ ଅନେକ ସମାଲୋଚକ ବାମାଚରଣଙ୍କ ଏକ ପୁସ୍ତକ ରୂପେ ଭ୍ରମବଶତଃ ବିବେଚନା କରିଥିବାର ଦେଖାଯାଏ । ସେ ଯାହାହେଉ ଉକ୍ତ ସ୍ତମ୍ଭରେ ପ୍ରକାଶିତ "ସମାଜ ଓ ନେତୃତ୍ୱ" ଆଲୋଚନାଟି ଟୟନବୀଙ୍କ A study in history ପୁସ୍ତକର ମାର୍ମିକ ଆକଳନ । ଏଠାରେ ଲେଖକ ମତପ୍ରଦାନ କରନ୍ତି ଉନ୍ନତି ପ୍ରୟାସୀ ସମାଜରେ ସାଂସ୍କୃତିକ ଅଗ୍ରଗତି ଠାରୁ ଆର୍ଥନୀତିକ ଓ ରାଜନୀତିକ ଅଗ୍ରଗତି ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ଭାବେ ବିକାଶ ଲାଭକରିବା ଆଦୌ ଉଚିତ୍ ନୁହେଁ । ତା ଫଳରେ ଅନ୍ୟ ଦୁଇଟିର ବିକାଶ ମଧ୍ୟ ଅଚିରେ ଧୂଳିସାତ୍ ହୋଇଯାଏ । ବାମାଚରଣଙ୍କ ଦୁଇଟି ପ୍ରବନ୍ଧ 'ଗାଈ ଉପରେ ରଚନାଟିଏ' ଏବଂ 'ଅଭିନୟ ଓ ଅଭିନେତା' କୌଣସି ସଂକଳନଭୁକ୍ତ ହୋଇନାହିଁ । ଏ ଦୁଇଟି 'ଏତୁଣ୍ଟ ତେତୁଣ୍ଟ' ସଂକଳନ ୨ୟ ସଂସ୍କରଣରେ ସ୍ଥାନିତ ହେବ ବୋଲି ସେ ମନସ୍ଥ କରିଥିଲେ ।

ପ୍ରବନ୍ଧ ବ୍ୟତୀତ ତାଙ୍କର ବିଛାଙ୍କିକା, ବୈଜ୍ଞାନିକର ବିବାହ ଓ ଶରଶଯ୍ୟା ପ୍ରଭୃତି ନାଟକ ଝଙ୍କାରରେ ପ୍ରକାଶିତ । ବିଛାଙ୍କିକା (ଏକାଙ୍କିକା) ଝଙ୍କାର ୧୩/୩ରେ ପ୍ରକାଶ ପାଇଥିଲା ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ 'ମହାପୁରୁଷବାଗ' ଗଳ୍ପ ସଂକଳନରେ ସ୍ଥାନିତ । ଏହା ରୂପକ ଶୈଳୀରେ ରଚିତ । ଏକ ବିଛାକୁ ମାରିବାକୁ ଯାଇ ନରବାବୁଙ୍କ ଭାବାନ୍ତର ଏବଂ ସ୍ୱଗତ ସଂଳାପ ହିଁ ଏହି ରଚନାର କଳାଶିଳ୍ପକୁ ସମୁଜ୍ଜ୍ୱଳ କରିଛି । 'ବୈଜ୍ଞାନିକର ବିବାହ' ଏକାଙ୍କିକାଟି 'ବଟମହାପୁରୁଷ' ସଂକଳନରେ ସ୍ଥାନିତ । ପୂର୍ବରୁ ଏହା ଝଙ୍କାର

୫/୫ ସଂଖ୍ୟାରେ ପ୍ରକାଶିତ । Sir Arthur Conan Doyleଙ୍କର A Physiologist's wife କ୍ଷୁଦ୍ର ଗଳ୍ପର ଅନୁସରଣରେ ଏହା ଲିଖିତ । ଏହି ନାଟିକାରେ ବୈଜ୍ଞାନିକର ମାନସିକତାରେ ଭାବପ୍ରବଣତା ଅପେକ୍ଷା ବାସ୍ତବତା ଓ ଯୁକ୍ତିର ସ୍ଥାନକୁ ଅଗ୍ରାଧିକାର ଦିଆଯାଇଛି । ଏତଦ୍‌ବ୍ୟତୀତ 'ଶରଶଯ୍ୟା' ଏକାଙ୍କିକା ଝଙ୍କାର(୧୮/୨)ରେ ପ୍ରକାଶ ପାଇଥିଲା । ଏହା ଏକ କ୍ଷୁଦ୍ର ନାଟକ । ସଚିବାଳୟର Head Assistant ବୃଦ୍ଧ ଦେବବ୍ରତଙ୍କ ଆଦର୍ଶବାଦୀ ଜୀବନଚର୍ଯ୍ୟାକୁ ନାଟକରେ ଦର୍ଶାଯାଇଛି । ଦେବବ୍ରତ ଆଧ୍ୟାତ୍ମିକ ନୀତିକୁ ଜାବୋଡି କାର୍ଯ୍ୟ କ୍ଷେତ୍ରରେ ନିଜର ଆଦର୍ଶ ପ୍ରତିପାଦନ କରନ୍ତି । ପ୍ରତି ପଦେ ପଦେ ବିରୋଧର ସମ୍ମୁଖୀନ ହେଲେ ମଧ୍ୟ ସେ ପଛଘୁଞ୍ଚା ଦେଇନାହାନ୍ତି । ମଣିଷ ମନର ମାନସିକ ଆନ୍ଦୋଳନ ର ଚିତ୍ର ଏହି ନାଟକରେ ଅତିସ୍ପଷ୍ଟ ଭାବରେ ପ୍ରଦର୍ଶିତ । ମାନବ ସମାଜର ବିଭିନ୍ନ ପିଢିର ଚାରିତ୍ରିକ ବିଶ୍ଳେଷଣ ନାଟକକୁ ଋଦ୍ଧିମନ୍ତ କରିଛି ।

ବାମାଚରଣଙ୍କ ବିଷୟ ଉପସ୍ଥାପନା ବହୁମୁଖୀ । ତଥ୍ୟ ବହୁଶାସ୍ତ୍ରଦର୍ଶୀ । ପ୍ରାଚ୍ୟ ପାଶ୍ଚାତ୍ୟ ଦର୍ଶନର ପ୍ରାବଲ୍ୟ ଭିତରେ ଲକ୍ଷ୍ୟସ୍ଥଳକୁ ଭେଦ କରିବାରେ ସେ ସବ୍ୟସାଚୀ । ବହୁ ଶାସ୍ତ୍ର, ଦର୍ଶନ, ଧର୍ମ, ସମାଜ ଧାରା, ଚରିତ୍ର, ପ୍ରକୃତି ଏବଂ ମାନବେତର ଜୀବର ଜୀବନ ଧାରାରୁ ଆପଣା ବିଚାର ନିଷ୍କାସିତ କରି ବକ୍ତବ୍ୟକୁ ପ୍ରାମାଣିକ ଓ ଯୁକ୍ତିନିଷ୍ଠ ଭାବରେ ଥୋଇବାରେ ସେ ସିଦ୍ଧହସ୍ତ । ଜୀବନ ଓ ଜଗତକୁ ସେ ଜିଜ୍ଞାସାପୂର୍ଣ୍ଣ ଦୃଷ୍ଟିନେଇ ଦେଖିଛନ୍ତି । ନିଜ ଭିତରେ ଗୁବୁଟୁବୁ ହେଉଥିବା ଜିଜ୍ଞାସାଗୁଡିକର ଉତ୍ତର ଖୋଜିଛନ୍ତି । ସୌନ୍ଦର୍ଯ୍ୟବୋଧ ଭିତରେ ଭାସି ନ ଯାଇ ସେ ଯେଉଁ ତାତ୍ତ୍ୱିକ ଜିଜ୍ଞାସାକୁ ବଞ୍ଚାଇ ରଖିଥିଲେ ତାହାହିଁ ତାଙ୍କୁ ଉଚ୍ଚକୋଟିର ପ୍ରବନ୍ଧ ରଚନାରେ ସାହାଯ୍ୟ କରିଛି । ନିତ୍‌ସେଙ୍କଠାରୁ ରବୀନ୍ଦ୍ରନାଥ ମାର୍କ୍ସଙ୍କଠାରୁ ରାମକୃଷ୍ଣ, ରାମାୟଣଠାରୁ ଡନକୁଇକସଟ ଏବଂ ଉପନିଷଦଠାରୁ ଫକୀରମୋହନ ମଧ୍ୟଦେଇ ତାଙ୍କର ହୃଦୟର ଭାବାବେଗ ପ୍ରଶିକ୍ଷିତ ହୋଇଥିଲା । ଏହି ଭାବାବେଗକୁ କାରୁଣ୍ୟ ଓ ବେଦନା ଦେଇ ସେ ଲାଳନ କରିଥିଲେ । ତେଣୁ ତାଙ୍କର ଗଳ୍ପ ହେଉ ବା ପ୍ରବନ୍ଧ ସବୁଠି ଏକ ଶାଶ୍ୱତ କାରୁଣ୍ୟ ପ୍ରଚ୍ଛନ୍ନ ରହି ପାଠକର ଆତ୍ମକେନ୍ଦ୍ରକୁ ଆନ୍ଦୋଳିତ କରେ ଆଚ୍ଛନ୍ନ କରେ । ଏହି ଆବେଗପ୍ରବଣ ଆନ୍ଦୋଳନ ଯେତିକି ଜ୍ଞାନପ୍ରଦ ସେତିକି ଆନନ୍ଦପ୍ରଦ ।

ତାଙ୍କର ଶୈଳୀ ଯୁଗାନୁସାରୀ ଏବଂ ଲାଳିତ୍ୟପୂର୍ଣ୍ଣ । ଶୈଳୀ ଭିତରେ ଦାର୍ଶନିକ ପ୍ରତ୍ୟୟ ସାରସ୍ୱତ ସୃଷ୍ଟିବୀଜକୁ ଅଥୟ କରେ । ଏହି ଅଥୟ ଦାର୍ଶନିକ ପ୍ରତ୍ୟୟ ବିଭିନ୍ନ ତତ୍ତ୍ୱ ଓ ତଥ୍ୟକୁ ସମାଜ ନିର୍ଭର, ବ୍ୟକ୍ତିନିର୍ଭର ନକରି କରେ ଉପାଦାନ ନିର୍ଭର । ତେଣୁ ବାମାଚରଣଙ୍କ ସାରସ୍ୱତ ଜିଜ୍ଞାସା ସବୁବେଳେ ସଂଘର୍ଷରତ ଏବଂ ଏହି ସଂଘର୍ଷଭିତରେ ମାନବବାଦର ପ୍ରତିଷ୍ଠା ହିଁ ଏକମାତ୍ର ଲକ୍ଷ୍ୟ । ତ୍ୟାଗ ତିତିକ୍ଷା ସହିତ ପ୍ରେମ ପ୍ରତାରଣାର ଫଲ୍‌ଗୁ ସମାହିତ ହୋଇ ତାଙ୍କର ପ୍ରତିଟି ସୃଷ୍ଟିକୁ କରେ ସତ୍ୟ ଶିବ ସୁନ୍ଦର । ତେଣୁ

ବାମାଚରଣଙ୍କ ସାହିତ୍ୟ, ସମାଜ, କଳା, ଜୀବନ ପରସ୍ପରର ପରିପୂରକ ଅନ୍ୟପକ୍ଷରେ ଏକ ଅବିଚ୍ଛେଦ୍ୟ ବନ୍ଧନରେ ସଂଶ୍ଳିଷ୍ଟ । ଏହି ପ୍ରେକ୍ଷିତରେ କୁହାଯାଇପାରେ କଳାତ୍ମକ ବିଷୟ ବୈଚିତ୍ର୍ୟ ଓ ସାମଗ୍ରିକ ଅବଧାରଣାକୁ ଜୀବନ୍ୟାସ ଦେବାର କଳାକୁଶଳତା ଯୋଗୁ ବାମାଚରଣଙ୍କ ପ୍ରବନ୍ଧାବଳୀ ଯେପରି ଗୁରୁତ୍ୱପୂର୍ଣ୍ଣ, ବସ୍ତୁ ନିଷ୍ଠ ଉପସ୍ଥାପନା ଏବଂ ଦାର୍ଶନିକ ଜୀଜ୍ଞାସାର ଅପନୋଦନ ଦୃଷ୍ଟିରୁ ସେପରି ଅନତିକ୍ରମଣ୍ୟ ।

# ଚେତନାର ନିଆରା ଆକାଶ :
# ନକୁଳ ଚନ୍ଦ୍ର ସାହୁଙ୍କ ସୃଜନ ପ୍ରକାଶ

ନକୁଳ ଚନ୍ଦ୍ର ସାହୁ, ଭାଷାର ଭାସ୍କର୍ଯ୍ୟ, ଭଂଗୀର ଭିନ୍ନତା, ଭାବର ଭବ୍ୟତାରେ ଏକ ବିସ୍ମୟକର ବ୍ୟତିକ୍ରମ । ତାଙ୍କ ଆଲୋଚନାରେ ରହିଛି କାବ୍ୟିକତାର ଚାତୁର୍ଯ୍ୟ, କଥାକାରିତାର ଆକର୍ଷଣ । ତାଙ୍କର ପ୍ରକାଶ ଭଙ୍ଗିମା ଯେତିକି ଆଧୁନିକ ସେତିକି ସମୟ ନିର୍ଭର ଓ ସର୍ବକାଳିକ । ଏହି କୃତ୍ୟବିଦ୍ୟ ସାଧକଙ୍କ ସଦ୍ୟତମ କବିତାଲୋଚନାର ଦୁଇଟି ଅପରୂପ ପୁଷ୍ପ "ଶବ୍‌ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି" ଏବଂ "ଉର୍ଦ୍ଧ୍ୱ ଉଡାଣ ଓ କାବ୍ୟିକ ଅଂତର୍ଧ୍ୱନି" । ଏହି ପୁସ୍ତକ ଦୁଇଟି ଓଡିଆ କବିତାକୁ ଅନାବରଣ କରି ନିଜ ବାଗରେ ନିଜ ଶୈଳୀରେ ନିଜ ଆବେଗରେ ପାଠକ ସମ୍ମୁଖରେ ତୋଳିଧରିଛି । ଓଡିଆ କବିତା କେବଳ କତିପୟ ପ୍ରତିଷ୍ଠିତ କବିଙ୍କ ଅବଦାନରେ ଋଦ୍ଧିମନ୍ତ ନୁହେଁ ବରଂ ଯୁଗ ଯୁଗ ଧରି ଅଜସ୍ର କବିଙ୍କ ନିଷ୍ଠା ଓ ଅଙ୍ଗୀକାରବଦ୍ଧତାରେ ପଲ୍ଲବିତ ଓ ପୁଷ୍ପିତ । ଆଧୁନିକ କବିତାର ଧାରା ସଚ୍ଚି ରାଉତରାୟ, ଗୁରୁ ମହାନ୍ତିଙ୍କ ଠାରୁ ଆରମ୍ଭ ହୋଇ ରମାକାନ୍ତ, ସୀତାକାନ୍ତ ବା ରାଜେନ୍ଦ୍ରଙ୍କ ଠାରେ ସରେ ନାହିଁ ବରଂ ଆହୁରି ଅନେକ କବିଙ୍କ ସୃଷ୍ଟିରେ ସମୃଦ୍ଧ ଏହାହିଁ ପ୍ରତିପାଦ୍ୟ ନକୁଳବାବୁଙ୍କ ପୁସ୍ତକରେ । ନକୁଳ ବାବୁଙ୍କ ନିଆରା ସୃଷ୍ଟି ଏହି ପୁସ୍ତକ ଦୁଇଟିକୁ ଆସନ୍ତୁ ଅଧ୍ୟୟନ କରିବା ତଟସ୍ଥ ହୋଇ ଏବଂ ଆତ୍ମିକ ଆବେଗରେ ଖୋଜିବା ଓଡିଆ କବିତାର ସୃଷ୍ଟି କୌଶଳ ଓ ଭାବ ପ୍ରସ୍ଥକୁ ।

## କ) ଶବ୍ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି

'ଶବ୍‌ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି' ପ୍ରାଚ୍ୟ ପାଶ୍ଚାତ୍ୟ କାବ୍ୟ ଟେକନିକ୍‌ର ମିଳିତ ମୂର୍ତ୍ତରୂପ । ଏଠି ଗିରିଜା କୁମାର ବଳିୟାରସିଂହଙ୍କ କାବ୍ୟ ସାଧନାର ଶୈଳ୍ପିକ ପରାକାଷ୍ଠା ଅଭିବ୍ୟଂଜିତ । କବି, ଗାଳ୍ପିକ ଓ ପ୍ରାବନ୍ଧିକ ନକୁଳ ଚନ୍ଦ୍ର ସାହୁଙ୍କ ଅନନ୍ୟ ସାରସ୍ୱତ ସାଧନାର ଅନ୍ୟତମ କମନୀୟ ପରିପ୍ରକାଶ ଏହି ପୁସ୍ତକ । ପୁସ୍ତକର ପ୍ରେରଣା ଭୂମି ସମ୍ପର୍କରେ ଲେଖକ ଉଦାତ୍ତ ଭାବରେ ଘୋଷଣା କରନ୍ତି- "ପ୍ରାଚ୍ୟ ପାଶ୍ଚାତ୍ୟ, ଦୁଇଟି ମିଳିତ କାବ୍ୟିକ ଟେକ୍‌ନିକ୍‌ର ନାମ ଗିରିଜାକୁମାର ବଳୀୟାରସିଂହ ! ଗିରିଜା କୁମାର ବଳୀୟାରସିଂହଙ୍କ ଚେର ଓଡ଼ିଆ

କବିତାର ଆଦିଭୂମି 'ଚର୍ଯ୍ୟା'ର ଟେକ୍‌ନିକ୍‌ରୁ ପ୍ରାପ୍ତ ହୋଇଛି ପ୍ରାଣ ! ତାଙ୍କ ବୀଜ ଓ ଅଙ୍କୁରୋଦ୍‌ଗମର ଭୂମି ଭାରତୀୟ ଆଧ୍ୟାତ୍ମିକ ପ୍ରେମ ! ଲୌକିକ ପ୍ରେମ - ଯନ୍ତ୍ରଣା ଅଚିର୍କିସ୍ଥ୍ୟ, କିନ୍ତୁ ଅଭିବ୍ୟକ୍ତ ସମର୍ଥ ! ଅଲୌକିକ ଦିଗକୁ ଦୈହିକ ପଥ ଯଥାର୍ଥ ଓ ଏକମାତ୍ର ! ଗିରିଜାଙ୍କ ଉକ୍ତ ଦୃଷ୍ଟି ଆଲୋଚନାଟିଏ ସୃଷ୍ଟି କରିବାକୁ ମତେ ପ୍ରେରଣା ଦେଇଛି ।" ନକୁଳ ଚନ୍ଦ୍ରଙ୍କ କବି ଦୃଷ୍ଟି, ସମାଲୋଚକୀୟ ଅଙ୍ଗୀକାରବଦ୍ଧତା ଓ ଗଳ୍ପପ୍ରାଣ ଓଡ଼ିଆ ସାହିତ୍ୟର ଅନ୍ୟତମ କୋଠ ସମ୍ପତ୍ତି । ସେ ନିଜର ସାରସ୍ୱତ ପ୍ରୟାଣରେ ସମକାଳୀନ ଶବ୍ଦଘରକୁ ଋଦ୍ଧିମନ୍ତ କରିଛନ୍ତି, କରିଛନ୍ତି ପରିବ୍ୟାପ୍ତ ।

ଶବ୍‌ଦର ଅବତାରଂ ଓ ମୁହୂର୍ତ୍ତର ମୂର୍ତ୍ତି, କବି ଗିରିଜାକୁମାର ବଳିୟାରସିଂହଙ୍କ କାବ୍ୟିକ ଟେକ୍‌ନିକ୍ ଏକ ପ୍ରଭାବଶାଳୀ ପୁସ୍ତକ । ଏହା ଦୁଇଟି ଭାଗରେ ବିଭକ୍ତ । ପ୍ରଥମ ଭାଗରେ ରହିଛି - ୧) ସାହିତ୍ୟ ଗୋଟିଏ ବିଷୟ ନୁହେଁ, ଗୋଟିଏ ବୈଷୟିକତା, ୨) ଶବ୍‌ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି, ୩)କବିତା ସହିତ ପ୍ରେମର ସମ୍ପର୍କ : ଚର୍ଯ୍ୟାପଦଠୁ ଇଲିୟଟ୍‌ଙ୍କ ପର୍ଯ୍ୟନ୍ତ କିଛି ଦୃଷ୍ଟିକୋଣ ଓ ଦୃଷ୍ଟାନ୍ତ, ୪) ଏ ପୋର୍‌ଟ୍ରେଏଟ୍ ଅଫ୍ ଆନ୍ ଆର୍ଟିଷ୍ଟ୍ ଆଜ୍ ଏ ୟଙ୍ଗ୍ ମ୍ୟାନ, ୫) ଗ୍ରନ୍ଥସୂଚୀ । ଏଥିରେ ବିଶ୍ୱ ସାହିତ୍ୟର ମାନଦଣ୍ଡକୁ ପ୍ରତିଷ୍ଠା ଦିଆଯାଇଛି । ଦ୍ୱିତୀୟ ଭାଗରେ ଅଛି- ୧) ଗିରିଜା ବଳୀୟାରସିଂହଙ୍କ କବିତ୍ୱ, ମାଲାର୍ମେଙ୍କ ସନେଟ୍‌ର ଅର୍ଥ ଓ ବଏଲୀଙ୍କ ରୋମାଣ୍ଟିକ୍ ସର୍ଭାଇଭାଲ୍ ତତ୍ତ୍ୱ, ୨) ଜୀବନକୁ କେମିତି ଭୋଗୁଛି 'ଡାଇରିର ଶାଇରୀ'ର ଶାୟର୍, ୩) କବିତାର ଆଙ୍ଗିକ କେତେ ପ୍ରକାର, ୪) ଅମୃତର ଅନୁପ୍ରାସ : ଗିରିଜା ବଳୀୟାରସିଂହଙ୍କ 'ଭାରତବର୍ଷ', ୫) ଚେତନାର ଉଦ୍ଦୀପନା ଓ 'ତୃଷ୍ଣାତର୍ପଣ'ର ଶବ୍‌ଦସାଧନା, ୬) ସୁଫୀ ଚେତନାର ଫୁଲଶେଯ : 'ଚତୁର୍ଦ୍ଦଶୀର ଚନ୍ଦ୍ର', ୭) 'ଉତ୍ତରମେଘ'ର ବସ୍ତୁବୋଧ, ୮) ପ୍ରତୀକର ନିଜ ଭୂମିରେ ସୌନ୍ଦର୍ଯ୍ୟର ବିଷୟାଶ୍ରୟ, ୯) ସ୍ୱପ୍ନସାଉଁଳା ଘୋଷାପଦ ତଳର ରକ୍ତମାଂସ:ଚର୍ଯ୍ୟାରୁ ଚଉଦାଳୀର ଚେତନାଂଶ, ୧୦)'ଶୀତଶୀର୍ଷକ' : ଏ ଫ୍ୟୁଜୋନ୍ ଅଫ୍ ଥଟ୍, ପ୍ରାକ୍ତନ ପ୍ରେମର ନୂତନ ପ୍ଲଟ୍, ୧୧) କବିତା ଗୋଟିଏ ଅବଗତ ହେବା ପ୍ରକ୍ରିୟା, ୧୨) ପରିଶିଷ୍ଟ,୧୩) ଗ୍ରନ୍ଥସୂଚୀ । ଏଥିରେ ଗିରିଜା କୁମାରଙ୍କ କାବ୍ୟସରଣୀକୁ ବିଶ୍ୱସାହିତ୍ୟ ପ୍ରେକ୍ଷାପଟରେ ପର୍ଯ୍ୟାଲୋଚନା କରାଯାଇଛି । ଏତଦ୍‌ବ୍ୟତୀତ ବହିର ପ୍ରାରମ୍ଭରେ 'ସଂକ୍ଷିପ୍ତିକା' ପୁସ୍ତକର ସାର ନିର୍ଯ୍ୟାସକୁ ଆଲୋକିତ କରୁଛି । ପରିଶିଷ୍ଟରେ ରହିଛି ବଳିୟାରସିଂହଙ୍କ ସୃଷ୍ଟି ସଂଭାର, ତାଙ୍କ ରଚିତ ଓଡ଼ିଆ ବିପ୍ଳବ କବିତାର ପ୍ରେକ୍ଷାପଟ, ଶବ୍ଦର ଆକାଶର ଆଲୋଚନା, ପ୍ରଥମ ବହି ଶୀର୍ଷକରେ ଗିରିଜାଙ୍କ ବୟାନ, ଯାହା ପୁସ୍ତକର ସନ୍ଦର୍ଭମୂଲ୍ୟକୁ ବହୁଗୁଣିତ କରୁଛି । ନକୁଳ ବାବୁ ଉଭୟ ଭାଗରେ ସଂଯୋଜିତ କରିଛନ୍ତି ସହାୟକ ଗ୍ରନ୍ଥସୂଚୀ । ସାମଗ୍ରିକ ଭାବେ ପୁସ୍ତକଟି ଏକ ଗବେଷଣାତ୍ମକ ଉତ୍କୃଷ୍ଟ କୃତି । ଏଥିରେ ଗିରଜା ବାବୁଙ୍କ ସାରସ୍ୱତ କୃତିତ୍ୱକୁ ବିଶ୍ୱସାହିତ୍ୟ ମାନଦଣ୍ଡରେ କରାଯାଇଛି ମୂଲ୍ୟାୟିତ । ବିଶ୍ୱସାହିତ୍ୟରେ ଶିଳ୍ପକଳା, ସନେଟ୍ ରଚନାର

ଧାରା, ବୈଷୟିକତା, ବିଭିନ୍ନ ବାଦର ଥିଓରୀ, ଇତିହାସ ଓ ପୃଷ୍ଠଭୂମିକୁ ବିଶ୍ଳେଷଣ କରି ତା' ଉପରେ ନକୁଳ ବାବୁ ଗିରିଜାଙ୍କ କାବ୍ୟ ବିଚାର କରିଛନ୍ତି ସମାଲୋଚନା । ସୁକ୍ଷ୍ମ ନିରୀକ୍ଷଣ, ମନସ୍ତାତ୍ତ୍ୱିକ ଉଦ୍‌ବେଗର ସମୀକରଣ, ଶୈଳୀର ସଠିକ୍ ନିରୂପଣ, ଶିଳ୍ପପରାକାଷ୍ଠା ମାଧ୍ୟମରେ ଗିରିଜାଙ୍କ କାବ୍ୟ ଭୂମିର ଅନ୍ୱେଷଣ ଏବଂ ତାର ଯଥାଯଥ ମୂଲ୍ୟ ନିର୍ଦ୍ଧାରଣ ହିଁ ପୁସ୍ତକର ଆଭିମୁଖ୍ୟ ।

ନକୁଳ ବାବୁ ଗିରିଜାଙ୍କ କବିତାର ମୂଲ୍ୟାୟନ କରିବା ପୂର୍ବରୁ ବିଶ୍ୱ ବାତାୟନ ଖୋଲି ପ୍ରଦାନ କରିଛନ୍ତି କବିତାର ସଠିକ୍ ସଂଜ୍ଞା -

କବିତା ଗୋଟିଏ କହିବା ଶୈଳୀର ନାଁ, ଯାହା ପୂର୍ବରୁ ଜାଣିଥିଲେ ମଧ୍ୟ ପାଠକ ତାହା ଜାଣି ନାହିଁ ବୋଲି ନୂଆକରି କିଛି କରିବ ଆବିଷ୍କୃତ ! ପୁରୁଣା ଭାଷାର କାମିଜରେ ଇନ୍ଦ୍ରିୟ ସମ୍ବେଦ୍ୟ ଉପାଦାନ କାଢ଼ିଥିବ ତାହାର ବିଷୟାଶ୍ରୟୀ ବେକ । ସେହିଭଳି ପୁରୁଣା ବିଷୟବସ୍ତୁ ତ୍ରୟଯୁକ୍ତ ହେବା ବେଳେ ନୂଆ ବିଷୟବସ୍ତୁ ହୋଇପାରେ ଜଣେ ମାଛ ଧରାଳି ଆବେଗର ଅଭିବ୍ୟକ୍ତି ମାତ୍ର ! ଏହାର ଉଦାହରଣ ହେମିଂୱେଙ୍କ 'ଦି ଓଲ୍‌ଡମ୍ୟାନ୍ ଏଣ୍ଡ ଦି ସି' ବହି ଖଣ୍ଡିକ ।

କବି ଅଡେନ୍‌ଙ୍କ କାବ୍ୟିକତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ ପ୍ରଫେସର ଡାଭିଡ୍ ଡ୍ୟାଚେସ୍ ଉଚ୍ଚାରଣ କରିଥିଲେ, କବିତା ଅବଗତ ହେବା ପ୍ରକ୍ରିୟା । ଭାଷା ମାଧ୍ୟମରେ କବି ଆବିଷ୍କାର କରନ୍ତି ଆବେଗ ତଳେ ଲୁକ୍‌କାୟିତ ସମ୍ପର୍କକୁ, କଳା ପ୍ରକଟିତ କରାଇଥାଏ ସତ୍ୟ ଓ ସୌନ୍ଦର୍ଯ୍ୟକୁ । କଳାଗତ ସତ୍ୟ ଓ ସୌନ୍ଦର୍ଯ୍ୟ ସାମାଜିକ । ତାହା ଆଧ୍ୟାତ୍ମିକ ସତ୍ୟ ଓ ସୌନ୍ଦର୍ଯ୍ୟଠାରୁ ନିଆରା ।

ମୁଁ - ତୁମେ ଓ ସମ୍ପର୍କର ମଧୁମତୀ ଚନ୍ଦ୍ରବନ୍ଧନୀ ଚିହ୍ନ ଭିତରେ ଦୁଇଟି ଶବ୍ଦ । ତା' ମଝିରେ ଅଧିଷ୍ଠିତ ସେ ସମାଜର ବିମ୍ବ, ଗୋଟିଏ ବ୍ୟକ୍ତିତ୍ୱର ଗମ୍ଭୀର ପ୍ରତୀକ । କବିତାର ନିର୍ମଳ ଆକାଶସାରା ଖଣ୍ଡିଉଡା ପ୍ରେମର ବଉଦ । ତମାମ ରଙ୍ଗମୟ ଆଙ୍ଗୀକ ମାଧ୍ୟମରେ ସମାସୀନ ସାରାଟା କାବ୍ୟସାମ୍ରାଜ୍ୟ ଶବ୍‌ଦବସାଣର ନାନ୍ଦନିକତା ମଧ୍ୟରେ ଆତ୍ମାର ଲଳିତ ଆହ୍ୱାନ । ଏମିତି ଏକ କବିତାର ସାମ୍ରାଜ୍ୟରେ ନକୁଳ ବାବୁଙ୍କ ବକ୍ତବ୍ୟ ଛଳନାହୀନ, ସତ୍ୟନିଷ୍ଠ ଏବଂ ଆବେଗସ୍ନିଗ୍ଧ ।

ପ୍ରକୃତ କବିତା ଛଳନାର ଗୋଟେ ଠିକଣା, କବିତାରେ ପ୍ରେମିକ ପ୍ରେମିକା କରିଥାନ୍ତି ଯେଉଁ ଶପଥ, ତାହା ମଧ୍ୟ ଛଳନାର ଛଇ । କବିତା ଗୋଟିଏ ଛାଇ, ମୂଳ ବୃକ୍ଷଟିର ନାମ ଭଲ ପାଇବା ।(ପୃଷ୍ଠା-୨୭) କବିତା ଅବଗତ ହେବା ପ୍ରକ୍ରିୟା(ପୃ-୨୦). ଅଭିବ୍ୟକ୍ତିର ଅଭିଷେକ ହିଁ କବିତାର ଜୀବନ ଓ ବଂଚି ରହିବାର ଗୌରବ ।(ପୃ-୨୬), କବିତା ଆତ୍ମରତିର ଅପରଦିଗ(ପୃ-୩୭) ।

ଏମିତି କବିତାର ସଂଜ୍ଞାକୁ ଗିରିଜାଙ୍କ କାବ୍ୟ ନୈଭବ ଭିତରେ ଠାବ କରିଛନ୍ତି ନକୁଳବାବୁ । ଓଡ଼ିଆ କବିତାର ମହନୀୟ ପରଂପରାର ଔଜ୍ଜଲ୍ୟରେ ଦୀପ୍ତିମନ୍ତ ଗିରିଜାଙ୍କ

କବିତାର ପ୍ରତ୍ନଉଦ୍ଧାର କରିଛନ୍ତି ଲେଖକ । ସେ ନିବିଡ ଭାବେ ତଟସ୍ଥ ହୋଇ ଅଧ୍ୟୟନ କରିଛନ୍ତି ଗିରିଜାଙ୍କ କବିତା ଏବଂ ତାଙ୍କର ପ୍ରତିଟି ଶବ୍ଦ ବସାଣ, ଚିତ୍ରକଳ୍ପ, ପ୍ରତୀକ ଓ ଶୈଳୀର ପୃଷ୍ଠଭୂମିକୁ ସେ ଅନ୍ୱେଷଣ କରିଛନ୍ତି । ତେଣୁତ ଉଦାତ୍ତ ଭାବେ ନକୁଳବାବୁ ଘୋଷଣା କରନ୍ତି- ମାନସିଂହ, ଗଡ଼ନାୟକ ଓ ରାଉତରାୟଙ୍କ କାବ୍ୟିକ ଭୂମି ଉପରେ ଗିରିଜା ବଳୀୟାରସିଂହଙ୍କ ଜନ୍ମ । ମାନସିଂହ ଓ ରାଉତରାୟଙ୍କ ସହିତ ଅଣ୍ଡର ଗ୍ରାଜୁଏଟ୍ ଶ୍ରେଣୀରୁ ଗିରିଜାଙ୍କ ବ୍ୟକ୍ତିଗତ ସମ୍ପର୍କ । ମାନସିଂହଙ୍କ 'ଧୂପ'ର ଧାଡ଼ି, 'ରସ କବିତା / ଚିର ଯଉବନ ପ୍ରଣୟ ଗୀତା', 'ହାୟରେ ତରୁଣ କବିର ଆଶା' ତାଙ୍କ ଯୁବ ଆତ୍ମାକୁ କରିଛି ଆଚ୍ଛନ୍ନ । ତାଙ୍କ କାବ୍ୟଚେତନାରେ ମାନସିଂହଙ୍କ ଦେହବାଦୀ ଗୋଲାପୀ ସୁଗନ୍ଧ ଦେଇଛି ପ୍ରୋତ୍ସାହନ ଓ ପ୍ରେମର ନବଦିଗନ୍ତ, ଯେଉଁଠି ଘଟିଛି ଜହ୍ନର ରାଜତ୍ୱ ! 'ଚତୁର୍ଦ୍ଦଶୀର ଚନ୍ଦ୍ର', ହୋଇଛି ଭୋଗ ! ରାଉତରାୟ ଦେଇଛନ୍ତି ନୂତନ ଛନ୍ଦର ଉଜ୍ଜ୍ୱଳ ଦିଗପ୍ରାପ୍ତିର ଆଶୀର୍ବାଦ । 'ପାଣ୍ଡୁଲିପି'ର ମୁଖବନ୍ଧ ଓ 'ନୂତନ କବିତାର ଭୂମିକା'ରୁ ଗିରିଜା ଖୋଜି ପାଇଛନ୍ତି ନିଜ ଶବ୍ଦବସାଣର ନିଆରା ବାଟ ଏବଂ ଶ୍ରୁତି-ସଖ୍ୟ ଶୈଳୀ ପ୍ରୟୋଗ ଟେକ୍‌ନିକ୍ ।

ଅନେକ ଓଡ଼ିଆ କବିଙ୍କ ଉପରେ ବହୁଚର୍ଚ୍ଚିତ ପୁସ୍ତକ ରଚିତ ହୋଇଛି । ତାଙ୍କ କବିତାର ବିଭିନ୍ନ ଦିଗ ଓ ଦିଗନ୍ତ ଉପରେ ପର୍ଯ୍ୟାଲୋଚନା କରାଯାଇଛି । ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଆଧୁନିକ କବିଙ୍କ ସାହିତ୍ୟ ମୂଲ୍ୟାୟନ କରି ରଚିତ ହୋଇଛି ସଂଖ୍ୟାହୀନ ସନ୍ଦର୍ଭ ଚାଲୁରହିଛି ଗବେଷଣାର ଧାରା । କିନ୍ତୁ ମାର୍ମିକ ଭାବେ କବିର ସର୍ଜନା ଭୂମିକୁ ବିଶ୍ଳେଷଣ କରିବା, ତା'ର ପ୍ରୀତିପଦ କାବ୍ୟଚାରଣର ପ୍ରେକ୍ଷାପଟକୁ ଅବଲୋକନ କରିବାରେ କେତେଜଣ ଆଲୋଚକ ସଫଳ ହୋଇଛନ୍ତି ? ସତ୍ୟନିଷ୍ଠ ଭାବେ କେତେଜଣ କବିଟିର କବିତା ଭୂମିକୁ ପରଖିଛନ୍ତି ? ନିରପେକ୍ଷ ଭାବେ ବିଚାର କଲେ ଏହି ପୁସ୍ତକକୁ ଏକ ଉଚ୍ଚକୋଟିର ଆଲୋଚନା ପୁସ୍ତକ ବା ନିର୍ଭେଜାଲ ଶକ୍ତିଶାଳୀ ସନ୍ଦର୍ଭରୂପେ ସ୍ୱୀକାର କରାଯାଇପାରେ । ନକୁଳ ବାବୁ ଗିରିଜା ବଳିୟାରସିଂହଙ୍କ କବିତା ସ୍ଫୁରଣର ଆଦ୍ୟ ମୁହୂର୍ତ୍ତରୁ ଏଯାବତ ବ୍ୟାପ୍ତ କାବ୍ୟଧାରାକୁ ନିରୀକ୍ଷଣ କରିଛନ୍ତି ଏବଂ ସତ୍ୟନିଷ୍ଠ ଭାବେ ଠିଆ କରିଛନ୍ତି କବି ଗିରିଜାଙ୍କୁ ପାଠକଙ୍କ ସମ୍ମୁଖରେ । ନକୁଳ ବାବୁଙ୍କ ଭାଷାରେ ଗିରିଜାଙ୍କୁ ଦେଖିବା- ଧାଡିରେ ଝୁଲନ୍ତା ଶବ୍ଦ ମାନେ କହୁଛନ୍ତି କ'ଣ, କବି କରିଥାନ୍ତି ତାହାରି ଶ୍ରବଣ, ଗିରିଜାଙ୍କ ଶବ୍ଦମାନେ କ'ଣ କହୁଛନ୍ତି, ଇମୋସନ୍ ଓ ତାହାର ଗୋପନୀୟ ସମ୍ପର୍କର କଥା ? ଏହି ଦୃଷ୍ଟିରୁ କବିତା ଏକ ଅବଜ୍ଞାତ ହେବା ପ୍ରକ୍ରିୟାର ଆଙ୍ଗିକ । କବି ଜଣେ ମଣିଷ ପ୍ରାଥମିକତଃ, ଯିଏ ଶବ୍ଦ ଚିନ୍ତାଭୂତ । ଗିରିଜା ଉକ୍ତ ଦିଗରୁ ଆଧୁନିକ କବିମାନଙ୍କ ପରି ନୁହନ୍ତି ମାନସିକ ବିଭ୍ରାନ୍ତ, ବରଂ ସୁଶୃଂଖଳିତ ।

ଗିରିଜାଙ୍କ କବିତ୍ୱ କାଲିର କବିତା (୧୯୭୬)ଠାରୁ ଚାରଣଚର୍ଯ୍ୟା(୨୦୧୧) ପର୍ଯ୍ୟନ୍ତ ପ୍ରବହମାନ ଏକ ଧାରା । ପ୍ରାକୃତିକ ସୁଗନ୍ଧିତ ଝରଣା ପରି ଏହା ଛଳଛଳ କଳକଳ ଆଟୋପହୀନ ସୌନ୍ଦର୍ଯ୍ୟମୟ ଏବଂ ସୁଦୃଶ୍ୟ । ଏତେ ପ୍ରାକୃତିକ ଯେ ମନେହୁଏ ରଙ୍ଗୀନ ପବନର ହାଲ୍‌କା ଓଠର ସୁସୁରି । ବୃନ୍ତାଗ୍ରରେ ଦୋଳି ଖେଳୁଥିବା କୁମାରୀ ଫୁଲ ଖାଲି କଟାକ୍ଷଟିଏ ହାଣିଦେଉ ସୁନାରଙ୍ଗୀ ମରିଚିକା କିଛି । ପ୍ରାଇଭେଟ୍ ଜଗତର ଇମେଜ୍‌କୁ ବୃତ୍ତ ଓ ଛନ୍ଦର ସ୍ପର୍ଶ ଦେଇ ପବ୍ଲିକ୍ ୱାର୍ଲଡରେ ପରିବର୍ତ୍ତିତ କରିଛନ୍ତି ତାଙ୍କ କାବ୍ୟାଙ୍ଗିକକୁ କବି ବଳିୟାରସିଂ । ପ୍ରେମର ନିଃଶ୍ୱାସ ଜୀବନର ପ୍ରଶ୍ୱାସ ରୂପେ ପରିବର୍ତ୍ତିତ ହେବା ବେଳେ ସୌନ୍ଦର୍ଯ୍ୟ ଗୋଲାପଟିଏ ହୋଇ ଫୁଟିଛି । ଅତୀତର ପ୍ରେମର ପ୍ରତୀକ, ଭବିଷ୍ୟତ ମୃତ୍ୟୁର ପ୍ରତୀକ ଏବଂ ବର୍ତ୍ତମାନଟି ତ ଜୀବନ ! ତାଳଲୟହୀନ ତରଙ୍ଗାୟିତ ରଜସଂଗୀତ ଉଚ୍ଚାଟ କରିଦିଏ ପବନର ସୁସୁରିକୁ ?

ବିଶ୍ୱ ସାହିତ୍ୟର ଦ ରୋମାଣ୍ଟିକ୍ ସର୍ଭାଇଭାଲ୍ ତତ୍ତ୍ୱକୁ ଘାଣ୍ଟି ନକୁଳବାବୁ ପରଖିଛନ୍ତି ଗିରିଜାଙ୍କ କାବ୍ୟ ସାମର୍ଥ୍ୟ ଏବଂ ଘୋଷଣା କରନ୍ତି । ଆଧୁନିକ ଓଡ଼ିଆ କବିତାରେ ଏହି ରୋମାଣ୍ଟିକ୍ ସର୍ଭାଇଭାଲ୍ ଧାରାଟି ପ୍ରତି କୌଣସି ଆଧୁନିକ କବି ସଚେତନ ନୁହନ୍ତି । ସମସ୍ତେ ଓ୍ୱେଷ୍ଟଲ୍ୟାଣ୍ଡର ଜଟିଳତା ମଧ୍ୟରେ ନିଜ କବିତାକୁ କରିଛନ୍ତି ବନ୍ଦୀ । ସେହି ଧାରାର ବ୍ୟତିକ୍ରମ ଗିରିଜାକୁମାର ବଳିୟାରସିଂହଙ୍କ ସୃଷ୍ଟି । ସିଏ ନୂତନ ଜୀବିତାବସ୍ଥାର ଅନୁସନ୍ଧିତ୍ସୁ ଓ ଅସମାପ୍ତ ବାସ୍ତବିକତାର ନିଜ ଅନ୍ତର୍ଦୃଷ୍ଟିରେ ଅଟନ୍ତି ଅନ୍ୱେଷୀ । ସର୍ବୋଚ୍ଚ ସତ୍ୟ ଓ ଆଲୋକ ମୁହୂର୍ତ୍ତର ଦର୍ପଣରେ ସିଏ ଯାହା ଦେଖିଲେ ତାହାକୁ ତାଙ୍କ କାବ୍ୟଫର୍ଦ୍ଦରେ ବାଡ଼ିବସିଲେ । ଆଧୁନିକ ମଣିଷର ସେହି ମୁହୂର୍ତ୍ତ ଅତ୍ୟନ୍ତ କରୁଣ ।

ଗିରିଜାଙ୍କ 'ଡାଇରୀର ସାଇରୀ' ସର୍ବଶ୍ରେଷ୍ଠ ରୋମାଣ୍ଟିକ୍ କାବ୍ୟ । ଏହି କାବ୍ୟକୁ ବିଶ୍ୱସାହିତ୍ୟର ରୋମାଣ୍ଟିକ ଭାବଧାରା ସହିତ ନକୁଳବାବୁ କରିଛନ୍ତି ତୁଳନା ଏବଂ ପରଶି ଦେଇଛନ୍ତି ତାର ମାଧୁର୍ଯ୍ୟ ଓଡ଼ିଆ ପାଠକଙ୍କୁ ।

ସିନାଏସ୍‌ଥେସିଆ ଓ ସନେଟ୍ ପ୍ରବନ୍ଧରେ ନକୁଳବାବୁଙ୍କ ଉପସ୍ଥାପନା ଅତ୍ୟାଧୁନିକ ଓ ସର୍ବୋତ୍ତମ । ସିନାଏସ୍‌ଥେସିଆ ତତ୍ତ୍ୱ ଓଡ଼ିଆ ସାହିତ୍ୟରେ ପ୍ରଥମ କରି ନକୁଳବାବୁଙ୍କ ଦ୍ୱାରା ହୋଇଛି ପର୍ଯ୍ୟାଲୋଚିତ । ନକୁଳବାବୁ କୁହନ୍ତି ଗୋଟିଏ ଅନୁଭୂତି ଅନ୍ୟଗୋଟିଏ ଅନୁଭୂତିରେ ପରିବର୍ତ୍ତିତ ହୋଇ ପ୍ରଦାନ କଲେ ନାନ୍ଦନିକ ତୃପ୍ତି, ସେହି ଅନୁଭୂତିର ବର୍ଣ୍ଣନାକୁ ସିନାଏସ୍‌ଥେସିଆ ବୋଲି କୁହାଯାଇଛି । ସିନାଏସ୍‌ଥିଆର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ ଗିରିଜାଙ୍କ ନୀଳ ନିର୍ବାଣ କାବ୍ୟ ଗ୍ରନ୍ଥ ।

'ଅମୃତର ଅନୁପ୍ରାସ': ଗିରିଜା ବଳିୟାରସିଂହଙ୍କ ଭାରତବର୍ଷ । ବିବର୍ତ୍ତନବାଦୀ ଗୋଟିଏ ନୂତନ ବିପ୍ଳବର ସାମାଜିକ ଓ ଶାବ୍‌ଦିକ ଆରାମ ଏବଂ ଆନନ୍ଦଦାୟକ ପ୍ରବଣତାର ତୀକ୍ଷ୍ଣ ବ୍ୟକ୍ତିଗତ ଦୃଷ୍ଟି ଲିରିକ୍ ହୋଇଛି । 'ଭାରତବର୍ଷ' ଭୂମି ନୁହେଁ, କେତେବେଳେ ଭୂମା,

କେତେବେଳେ କାହ୍ନା, କେତେବେଳେ ସଖୀ ତ କେତେବେଳେ ପକ୍ଷୀ ! କେତେବେଳେ ତ୍ରସ୍ତ ତ କେତେବେଳେ ଅସ୍ତ; କେତେବେଳେ ଭ୍ରଷ୍ଟ ତ କେତେବେଳେ ଭସ୍ମ, କେତେବେଳେ ଦୁର୍ଗ ତ କେତେବେଳେ ଦୃଶ୍ୟ ! କେତେବେଳେ ସିଏ ଧର୍ମ ତ କେତେବେଳେ ପୁଣି ସଂଘ । କେତେବେଳେ ଆତ୍ମା ତ ଅନ୍ୟବେଳେ ଦେହ ! ଗୋଟିଏ ସଂଦିଗ୍ଧ ଦିଗନ୍ତର ଚିତ୍ର ଗିରିଜା ବଳୀୟାରସିଂହଙ୍କ କବିତାର କମକୂଟ ନକ୍ଷତ୍ର ଏଇ 'ଭାରତବର୍ଷ' ! 'ଭାରତବର୍ଷ'ର ଚାରିତ୍ରିକତା ପ୍ରବଳ ଭାବେ ବିସ୍ମୟକର ଓ ବିସ୍ମୟପୂର୍ଣ୍ଣ ଭାବେ ଜଟିଳ । ସେକ୍ସପିୟରଙ୍କ ସନେଟ୍‌ଗୁଡିକ ପରି ଏହାର ଅନୁଭବ ଏକ ଶ୍ରେଣୀୟ । 'ଭାରତବର୍ଷ'ରେ ମଧ୍ୟ ଗିରିଜାକୁମାର ବଳୀୟାରସିଂହ has treated love in a novel way ; ଗୋଟିଏ common familiar sentimentକୁ ସିଏ ଦେଇଛନ୍ତି ନୂତନ ନିର୍ମାଣବିଧି ବା ଅଭୂତପୂର୍ବ ଆକୃତି । ଘଟଣାକ୍ରମରେ ସିଏ ଭାରତବର୍ଷକୁ ଦେଇଛନ୍ତି ଏକ ନିଆରା ଅନୁଭବ(Sense) ବା 'ଭାରତବର୍ଷ' ତାଙ୍କର ଏକ ନୂଆ ଉପଲବ୍ଧି । ଏହା ଦୈର୍ଘ୍ୟ ଓ ପ୍ରସ୍ଥ ବିଶିଷ୍ଟ ଅରାଏ ଭୂମି ନୁହେଁ, ଇନ୍ଦ୍ରିୟଗ୍ରାହ୍ୟ ଅଭିମାନୀ କବିର ଆବେଗପୂର୍ଣ୍ଣ ଅଭିମତ (Sentiment)

'ଚେତନାର ଉଦ୍ଦୀପନା ଓ ତୃଷ୍ଣାତର୍ପଣର ଶବ୍ଦ ସାଧନା' ସନ୍ଦର୍ଭରେ ତୃଷ୍ଣାତର୍ପଣକୁ ଆଧ୍ୟାତ୍ମିକ ପ୍ରେମର ପ୍ରତୀଭୂ ରୂପେ ନକୁଳ ବାବୁ ପରିଚିହ୍ନିତ କରିଛନ୍ତି । ମୌଳିକ ଆହ୍ଲାଦର ଯେମିତି ଗୋଟିଏ ପବିତ୍ର ଉପବୀତ ! ପ୍ରେମ ପାଇଁ ପ୍ରାର୍ଥନା, ତନ୍ତ୍ରର 'ସର୍ବବୀଜ-ଉତ୍ପାଦକ', ପ୍ରଣୟୀର ନିବେଦନ ଯେମିତି ଗୋଟିଏ Eternal Syllable !ତାଂତ୍ରିକ 'ବୀଜ-ଅକ୍ଷର' ! 'ପଦାନି ପରିମିତା' କିନ୍ତୁ ତୃଷ୍ଣା ଅପରିମିତ । ତର୍ପଣରେ ଆସିଥାଏ ବା ଅବତରଣ କରିଥାଏ ଯେଉଁ ତୂରୀୟସ୍ଥିତି, ତାହା କବିତା ହୋଇ ପ୍ରବାହିତ ହୋଇଛି । ତୃଷ୍ଣାତର୍ପଣର ଅବଗାହନ କଲା ବେଳେ ନକୁଳବାବୁ ରଗ୍‌ବେଦରୁ ଧ୍ୱନି, ଅର୍ଥ, ଅକ୍ଷର ଶବ୍‌ଦର ବୀଜ ସଂଗ୍ରହ କରିଛନ୍ତି ଏବଂ ତାକୁ ଅତି ସୁଚତୁର ଭାବେ ଆଦ୍ରେଁଜିଦ୍‌ଙ୍କ ନିୟୁଟେକ୍‌ନିକ୍ସରେ ପ୍ରତିରୋପଣ କରିଛନ୍ତି । ରଗ୍‌ବେଦ, ଭଗବତଗୀତାର ବାଣୀ ପରି ତରଳ ଶବ୍‌ଦ ପୁଞ୍ଜର ହ୍ଲାଦିନୀଶକ୍ତିକୁ ଜୟଦେବଙ୍କ ଅନ୍ତ୍ୟବର୍ଣ୍ଣମେଳକ ବା ଅନୁପ୍ରାସର ଯମକରେ ପ୍ରତ୍ୟକ୍ଷ କରିଥିବା ନକୁଳବାବୁ ଗିରିଜାଙ୍କ କବିତାରେ ଇନ୍ଦ୍ରିୟଗ୍ରାହ୍ୟ ଓ ସୁଖକର ଅନୁଭୂତି ପରି ଉପଲବ୍ଧି କରିଛନ୍ତି ।

'ସୁଫୀ ଚେତନାର ଫୁଲଶେଯ' ରୂପେ ଗିରିଜାଙ୍କ 'ଚତୁର୍ଦ୍ଦଶୀର ଚନ୍ଦ୍ର' ସଂକଳନକୁ ଅଭିହିତ କରିଛନ୍ତି ନକୁଳବାବୁ । କବି ଗିରିଜା ବଳିୟାରସିଂହଙ୍କ ପରବର୍ତ୍ତୀ କଂଚାଘାସର କାରୁକର୍ମ, ବ୍ୟବସ୍ଥିତ ବର୍ଣ୍ଣମାଳାର ହାର୍ଦ୍ଦିକ ହସ୍ତାକ୍ଷର, ତଥା ତାଙ୍କ ଚନ୍ଦ୍ରମୁଖୀ ଚେତନାର ଉତ୍ତରଣ, ସମୟକୁ ସଂଜ୍ଞାସିଦ୍ଧ କରିବାର ଅସରନ୍ତି ଆଶ୍ୱାସନାର ନାମ 'ଚତୁର୍ଦ୍ଦଶୀର ଚନ୍ଦ୍ର' । ସଂସ୍କୃତି ସଂପନ୍ନ, ପ୍ରତ୍ନ ପ୍ରଜ୍ଞାନ, ପ୍ରଖର ପ୍ରତ୍ୟୟ ଆଣେ, ଅଂତହୀନ ଅନ୍ୱେଷା ବୁଣେ, ଏଇ 'ଚତୁର୍ଦ୍ଦଶୀ' ଶବ୍ଦଟିର ଅଙ୍କନ । ଗିରିଜାଙ୍କ ଚତୁର୍ଦ୍ଦଶୀ ବୈଷ୍ଣବୀୟ ପୂର୍ଣ୍ଣିମାର ପୂର୍ବ ବିନ୍ଦୁ ବିନ୍ଦ୍ ବିଂବିତ ବିସ୍ତାରିତ ଜହ୍ନିଫୁଲିଆ ମୁହୂର୍ତ୍ତ ।

'ଉତ୍ତର ମେଘ' ଅନୁଭବର ଚନ୍ଦ୍ରାୟିତ କାୟାକଳ୍ପ ଚେତନାର ଉତ୍ତୀର୍ଣ୍ଣ ଉଚ୍ଚାରଣ । ଶୀତଶୀର୍ଷକକୁ ଭାବର ଗମ୍ଭୀରାଘର ରୂପେ ନକୁଳ ବାବୁ ସ୍ୱୀକାର କରିଛନ୍ତି । ପ୍ରେମ ଦୈହିକ କାମ ତାହିଁରେ ଥାଏ ଅପ୍ରାପ୍ତିର ବିଷାଦ । ପ୍ରେମ ଆଧ୍ୟାତ୍ମିକ ହୋଇଗଲେ ତହିଁରେ ଥାଏ ନିଜକୁ ସାମଗ୍ରିକ ଭାବେ ସମର୍ପି ଦେବାର ସ୍ୱାଦ । ଏମିତି ଏକ ଚାତୁର୍ଯ୍ୟପୂର୍ଣ୍ଣ ସୃଜନୀଶକ୍ତି ସଂପନ୍ନ କାବ୍ୟକାର ଗିରିଜା ବଳିୟାରସିଂହ । ତାଙ୍କ କାବ୍ୟପଣକୁ ନକୁଳବାବୁ ଆତ୍ମିକଭାବେ ହୃଦୟର କଷଟୀରେ ପରଖିଛନ୍ତି । ଚିତ୍ରପ୍ରତିମା, ଚର୍ଯ୍ୟାଚୟନ ଓ ଚାରଣଚର୍ଯ୍ୟା କାବ୍ୟ ସଂକଳନର ମହାର୍ଘତାକୁ ନକୁଳବାବୁ ସ୍ପର୍ଦ୍ଧାର ସହିତ ଚିତ୍ରିଛନ୍ତି । ଏହାକୁ କାବ୍ୟିକ ବିମୁଗ୍ଧ ଆର୍ତ୍ତ ଓ ଆକୁଳ ଅନ୍ତରାତ୍ମାର ଅତୁଳ ଅନ୍ତଃସ୍ୱର ରୂପେ ନକୁଳବାବୁ ସ୍ୱୀକାର କରିଛନ୍ତି ।

ଗିରିଜାବାବୁ ଆଧୁନିକ କାବ୍ୟ ଚର୍ଯ୍ୟାର ଶ୍ରେଷ୍ଠତମ ଚର୍ଯ୍ୟାଚାରଣ । କହିବା ଶୈଳୀ ତାଙ୍କର ଖୁବ୍ ସୁନ୍ଦର, ଆଧୁନିକ ଓ ମର୍ମସ୍ପର୍ଶୀ । ଗିରିଜା ଚମକପ୍ରଦ ଶବଦ୍‌ବସାଣର ଗୋଟିଏ ନୂଆ ନିଆରା କାବ୍ୟ ପରଂପରା ସୃଷ୍ଟି କରିଛନ୍ତି । ପାରମ୍ପରିକ ଶବ୍ଦ ଓ ଅନୁପ୍ରାସର ପଂକ୍ତିର ଅଭିବ୍ୟକ୍ତିରେ କବିତା ତାଙ୍କର ପ୍ରତିଷ୍ଠିତ । ବିଶାଳ ଶବ୍ଦ ଭଣ୍ଡାର ଉପରେ ସ୍ଥିତ ସୁମଧୁର ବାଣୀ ବିତାନରେ ଗିରିଜାଙ୍କ ଶବ୍ଦ ବପନର ସ୍ପର୍ଦ୍ଧା ପାଖରେ ସମୟସ୍ୱତଃ ହୋଇଯାଏ ସଂକୁଚିତ । କବିତା ଲଭିଥାଏ ନୂଆ ଜନ୍ମ, ଶବ୍ଦର ପ୍ରହେଳିକା ଭିତରେ ଦ୍ୟୋଦିତ ହୁଏ ଅର୍ଥର ପ୍ରଭାମଣ୍ଡଳ । ସେଥିରେ ପ୍ରତିଫଳିତ ହୁଏ ଅଭ୍ୟସ୍ତ ଖେଳାଳୀର ଖେଳ, ଗିରିଜାଙ୍କ କବିତା କଲ୍ଲୋଳ ।

ଗିରିଜା ବଳିୟାରସିଂହ ପୁରାତନ ଭିତରେ ଆଧୁନିକ, ଆଧୁନିକ ଭିତରେ ପୁରାତନ । ପ୍ରାଚ୍ୟ କାବ୍ୟ ପରଂପରାରେ ସେ ପାଶ୍ଚାତ୍ୟ କାବ୍ୟାଦର୍ଶ । ପାଶ୍ଚାତ୍ୟ କାବ୍ୟ ଶିଳ୍ପ ଭିତରେ ପ୍ରାଚ୍ୟ ଭାବର ମର୍ମକଥନ । ଏମିତି ଏକ ସହୃଦୟ କାବ୍ୟସରଣୀର ଉଦ୍‌ଗାତା ଗିରିଜାଙ୍କ ଶବ୍ଦ ସାମ୍ରାଜ୍ୟକୁ ଭେଦ କରି ତା'ର ଅପରୂପ ମାଧୁର୍ଯ୍ୟକୁ ଲୋକ ସମ୍ମୁଖରେ ବିପଣନ କରିବାରେ ସଫଳ ହୋଇଛନ୍ତି ଆଲୋଚକ ନକୁଳଚନ୍ଦ୍ର ସାହୁ ଏବଂ ଗିରିଜା କାବ୍ୟ ମୂଲ୍ୟାୟନର ଶିଖରାରୋହଣ ଶବ୍ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି । ଗିରିଜା ବଳିୟାରସିଂ ଛନ୍ଦ ଅନୁପ୍ରାସ ଓ ବର୍ଣ୍ଣମେଳକ କାବ୍ୟ ପରଂପରାର ଆଧୁନିକ ସଂସ୍କରଣ । ତାଙ୍କ କୃତିର ଏହି ଆକଳନ ସର୍ବଶ୍ରେଷ୍ଠ ପଦବ୍ୟଞ୍ଜନା, ସର୍ବଶ୍ରେଷ୍ଠ ଅଧ୍ୟୟନ । ନକୁଳ ବାବୁଙ୍କ ଶବ୍ଦର ଅବତାରକୁ ଅତିକ୍ରମିବା ସମକାଳୀନ ସାରସ୍ୱତ ସାଧକଙ୍କ ପକ୍ଷେ ସହଜ ନୁହେଁ । ଏହା ହିଁ ଗିରିଜା କାବ୍ୟ ଆକଳନର ଅନୁପମ ପୁଷ୍ପାର୍ଘ୍ୟ, ଅନତିକ୍ରମଣ୍ୟ ଶବ୍ଦଜସ୍ଥାପତ୍ୟ ।

ସୃଷ୍ଟିର ସ୍ନାୟୁ ଓ ଶବ୍ଦର ଆତ୍ମା, ସାହିତ୍ୟ ଦର୍ଶନ ପରି ରୁଚିଶୀଳ ଗଦ୍ୟ ପୁସ୍ତକର ରଚୟିତା ନକୁଳଚନ୍ଦ୍ର ସାହୁଙ୍କର ଅନ୍ୟତମ ଶ୍ରେଷ୍ଠ କୃତି 'ଶବ୍ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି' । ସୁଦୃଶ୍ୟ ପ୍ରଚ୍ଛଦ ଏବଂ ଶବ୍ଦ ପ୍ରତିମାର ପରିଷ୍କାର ପ୍ରକାଶନ ବହିଟିର ଆଙ୍ଗିକକୁ କରିଛି ଆହ୍ଲାଦକର ଓ ରୁଚିବନ୍ତ, ଓଡ଼ିଆ କାବ୍ୟ ସମାଲୋଚନାର ଦିଗନ୍ତକୁ ଏ ବହିଟି କରିଛି ମର୍ଯ୍ୟାଦାବନ୍ତ ଓ ବହୁ ଆୟାମବିଶିଷ୍ଟ ।

## ଖ) ଊର୍ଦ୍ଧ୍ୱ ଉଡାଣ ଓ କାବ୍ୟିକ ଅଂତର୍ଧ୍ୱନି

ନକୁଳଚନ୍ଦ୍ର ସାହୁଙ୍କ ସଦ୍ୟତମ ବୀକ୍ଷଣ "ଊର୍ଦ୍ଧ୍ୱ ଉଡାଣ ଓ କାବ୍ୟିକ ଅଂତର୍ଧ୍ୱନି"। ସମକାଳୀନ କାବ୍ୟଚର୍ଯ୍ୟାର ସୁନିର୍ବାଚିତ ବେଦାନ୍ତ। ନିଓ କ୍ଲାସିକ କ୍ରିଟିକ ଡ. ସାମୁଏଲ ଜନସନଙ୍କ Lives of the Poet ଇଂରାଜୀ ସାହିତ୍ୟର ଏକ ସ୍ମାରକ ଗ୍ରନ୍ଥ। ଏଥିରେ ବାଉନ ଜଣ କବିଙ୍କ ଜୀବନୀ ଓ ସାହିତ୍ୟର ବିଶ୍ଳେଷଣାତ୍ମକ ଦୃଷ୍ଟି ଗ୍ରଥିତ। ଏହି ପୁସ୍ତକ ପ୍ରଚୋଦିତ କରିଛି ନକୁଳ ସାହୁଙ୍କୁ "ଊର୍ଦ୍ଧ୍ୱ ଉଡାଣ ଓ କାବ୍ୟିକ ଅଂତର୍ଧ୍ୱନି" ପୁସ୍ତକ ରଚନା ପାଇଁ। ବହି ସଂପର୍କରେ ଆଲୋଚକଙ୍କ ଦୃପ୍ତ ଓ ସତ୍ୟନିଷ୍ଠ ଉଚ୍ଚାରଣ "ଊର୍ଦ୍ଧ୍ୱ ଉଡାଣ ଓ କାବ୍ୟିକ ଅଂତର୍ଧ୍ୱନି" ବହିଟି ସମୀକ୍ଷା ଓ ସମାଲୋଚନାର ଶିଖରସ୍ପର୍ଶୀ ଖଣ୍ଡିଏ କ୍ଲାସିକ୍। ମୋ ସମକାଳୀନ ଆଲୋଚିତ ପ୍ରାୟ ସମସ୍ତ କବି ସମକାଳର ଫର୍ଦ୍ଦରେ ଲିପିବଦ୍ଧ ଏମାନଙ୍କ ନାମ। ସମକାଳ କବିତାର ଇତିହାସ ପାଇଁ ଅମାପ ଏମାନଙ୍କର ଅବଦାନର ପୁଣ୍ୟ।" (ପୃ-୧୧)

ଊର୍ଦ୍ଧ୍ୱ ଉଡାଣ ଓ କାବ୍ୟିକ ଅଂତର୍ଧ୍ୱନି(ୟା ପରଠୁ ଊର୍ଦ୍ଧ୍ୱ ଉଡାଣ) ପୁସ୍ତକରେ ଏଗାର ଜଣ ନିର୍ବାଚିତ କବିଙ୍କ କାବ୍ୟଚର୍ଯ୍ୟାକୁ ନକୁଳ ବାବୁ ଆଲୋଚନା କରିଛନ୍ତି। ପୁସ୍ତକ ପ୍ରାରମ୍ଭରେ ପଦ୍ମନାଡ(ଭୂମିକା) ଏବଂ ଶେଷରେ ସହାୟକ ପୁସ୍ତକସୂଚୀ ସଂଯୋଜନା ଊର୍ଦ୍ଧ୍ୱ ଉଡାଣର ପ୍ରାମାଣିକତାକୁ ସିଦ୍ଧ କରୁଛି।

ଊର୍ଦ୍ଧ୍ୱ ଉଡାଣର ପ୍ରଥମ ସୋପାନ "ଘାଟରୁ ବନସ୍ତ, ବନସ୍ତରୁ ଅମୃତଲୋକ-କବି-ଫନୀ ମହାନ୍ତିଙ୍କ କାବ୍ୟିକ ତତ୍ତ୍ୱ" ଏଠାରେ କବି ଫନୀ ମହାନ୍ତିଙ୍କ କାବ୍ୟ ଫସଲର ବାସ୍ନାକୁ ବିଚ୍ଛୁରିତ କରିଛନ୍ତି ନକୁଳ ବାବୁ। ଭାରତୀୟ ସଂସ୍କୃତିରୁ ସେ କବିର ସଂଜ୍ଞା ନିରୂପଣ କରିଛନ୍ତି। ରଗବେଦ, ଭରତଙ୍କ ନାଟ୍ୟଶାସ୍ତ୍ର, ଭାମହ, ଅଗ୍ନିପୁରାଣ ପ୍ରଭୃତିରୁ ସମାଲୋଚକ କବି ଓ କବିତାର ଅର୍ଥ ପ୍ରଦାନ କରିଛନ୍ତି। ଏହା ବ୍ୟତୀତ ପାଶ୍ଚାତ୍ୟ କାବ୍ୟ ତତ୍ତ୍ୱରୁ ମଧ୍ୟ ସେ ଭୁରିଭୁରି ଦୃଷ୍ଟାନ୍ତ ଉଦ୍ଧାର କରିଛନ୍ତି। ଶେଲୀ, ଆରନୋଲ୍ଡ, ଇମରସନଙ୍କ ବକ୍ତବ୍ୟ ଆଲୋଚନାକୁ ଶବଳିତ କରିଛି। ଜୀବନର ବିଭିନ୍ନ ବିଭାବକୁ ନେଇ ସବୁ ଯୁଗରେ ସବୁ କାଳରେ କବିତା ଋଦ୍ଧିମନ୍ତ। ସେମିତି ଆଧୁନିକ କବି ଫନୀ ମହାନ୍ତିଙ୍କ ଊର୍ଦ୍ଧ୍ୱଚେତନାର ପ୍ରତିଫଳନକୁ "ଚେତନାର ଐଶ୍ୱର୍ଯ୍ୟ : ମୃଗୟା ପ୍ରେମର ଭୂମି" ଶୀର୍ଷକରେ ନକୁଳବାବୁ କରିଛନ୍ତି ଠାବ। ସମାଲୋଚକଙ୍କ ଭାଷାରେ "କବି ଫନୀ ମହାନ୍ତିଙ୍କ ଖଣ୍ଡିଏ ସୁପ୍ରସିଦ୍ଧ ରଚନା 'ମୃଗୟା' ଯେଉଁଠି the idea is the fact. ତାହାର କାବ୍ୟିକ ସୌନ୍ଦର୍ଯ୍ୟ ସମୟର ନିଶ୍ୱାସ ପରି ସୁରଭିତ, ଅସଂଖ୍ୟ ପାଠକଙ୍କୁ କରେ ବିମୋହିତ" (ପୃ-୧୬)

ଫନୀ ବାବୁଙ୍କ କାବ୍ୟ ସୌନ୍ଦର୍ଯ୍ୟକୁ ବିଶ୍ଳେଷଣ କରିବାରେ ନକୁଳବାବୁଙ୍କ ସାମର୍ଥ୍ୟ ସଫଳୀକୃତ। ଫନୀବାବୁଙ୍କୁ ଜଣେ ରୋମାଣ୍ଟିକ କବିର ମୋହରମାରି ସନ୍ତୁଷ୍ଟ ହୋଇଥିବା

ସମାଲୋଚକମାନଙ୍କୁ ନକୁଳବାବୁଙ୍କ ଏହି ଆଲୋଚନାଟି ଏକ ସୃଜନାତ୍ମକ ଆହ୍ୱାନ । ଫନୀ ମହାନ୍ତିଙ୍କ କାବ୍ୟର ଅନ୍ତଃସୌନ୍ଦର୍ଯ୍ୟ ସହିତ ଶୈଳୀର ନିରାଡମ୍ବର ଶବ୍ଦଚର୍ଯ୍ୟାକୁ ନକୁଳବାବୁ ଉନ୍ମୋଚିତ କରିଛନ୍ତି । କବିତାର ଭାବମୟ ପିଣ୍ଡ କିପରି ଲୋକକଥା, ରହସ୍ୟ ଓ ମନସ୍ତତ୍ତ୍ୱକୁ ଆବୋରି ଉର୍ଦ୍ଧ୍ୱଗ ଚେତନାରେ ରୂପାନ୍ତରିତ ହୁଏ ତାକୁ ଦର୍ଶାଇଛନ୍ତି ନକୁଳଚନ୍ଦ୍ର । ଜୀବନ ସମାପ୍ତି ପରେ ମୃତ୍ୟୁ ନାହିଁ, ନୂଆ ଜୀବନଟିଏ ଅଛି ଏବଂ ସେହି ଜୀବନ ଯାତ୍ରାର ନାଁ ବୋଧେ ମୃଗୟା । ଫନୀ ମହାନ୍ତିଙ୍କ "ମୃଗୟା" କାବ୍ୟ ସଂକଳନକୁ ଯାଠୁ ବଳି ଆଉ କି ସଂଜ୍ଞା ପ୍ରଦାନ କରାଯାଇପାରେ ?

କବି ଦିଲ୍ଲୀପ ଦାସଙ୍କ 'ନୀଳମାଧବ' କୁ ନକୁଳବାବୁ ଏକ ପ୍ରତିମା ନୁହେଁ, ଏକ ପ୍ରତ୍ୟୟ... ଏକ ଅବ୍ୟକ୍ତକୁ ବିମ୍ବ କରି ଇନ୍ଦ୍ରିୟଗ୍ରାହ୍ୟ କରାଇବା ଅତୀନ୍ଦ୍ରିୟ ଭାବର ନାମ ନୀଳମାଧବ ରୂପେ ଅବିହିତ କରିଛନ୍ତି । ଦିଲ୍ଲୀପ ଦାସଙ୍କ କାବ୍ୟିକ ଉତ୍ତରଣକୁ ପ୍ରଥମରୁ ପରିଚିହ୍ନିତ କରିଛନ୍ତି ନକୁଳଚନ୍ଦ୍ର - ମହାନଦୀ ଚିତ୍ରୋତ୍ପଳାପରି ଗୈରିକ ଅଂବରା ତାଙ୍କ କବିତାର ଧାରା । କି ସଂଗୀତ ଗାଏ କି ରାଗିଣୀ ବୁଣି ସ୍ରଷ୍ଟା ତାହା ଥାଏ ଅବଜ୍ଞାତ ! କିନ୍ତୁ ଥାଏ ପୁଲକିତ ! ଶବ୍ଦଟିଏ ମାତ୍ର ! କାକଳୀରେ ଉଚ୍ଛୁଳେ ଉଲ୍ଲାସ ! ଧ୍ୱନିତ ଝରଣାର କୁଳୁକୁଳୁ, ତାର ଅର୍ଥ ଅନ୍ୱେଷା, ଶୁଷ୍କତୃଷ୍ଣା । ଭାବନାକୁ ଶବ୍ଦ ଶତପ୍ରତିଶତ କରି ପାରିନଥାଏ ବ୍ୟକ୍ତ ।ସେ ଏକ ସଜଫୁଟା ଅଶୋକ ସ୍ତବକ । ତ୍ରିକାଳର ସଂଯୋଜକ ଫୁଟନ୍ତା କୋରକ ! ସେ ଏକ ଉଦାର ସତ୍ୟ । ନିର୍ବୋଧ ଶବ୍ଦର ଭୈରବୀ, ଭୃକୁଟିରେ ଏକ ବିନ୍ଦୁ ସ୍ୱପ୍ନର ଅଙ୍କନ । ଦିଲ୍ଲୀପ ଦାସ ତାହାକୁ କହିଛନ୍ତି ନୀଳମାଧବ ।

ନକୁଳବାବୁ ଜଣେ ବହୁପାଠୀ ସମାଲୋଚକ । ଓଡିଆ, ଇଂରାଜୀ, ହିନ୍ଦୀ ଓ ସଂସ୍କୃତ ଭାଷାରେ ତାଙ୍କର ଅଗାଧ ପ୍ରବେଶ । ତେଣୁ କୌଣସି କବିର ଭାବଭୂମିକୁ ନିରୀକ୍ଷଣ କଲାବେଳେ ସେ ବହୁ ପ୍ରସ୍ଥଯୁକ୍ତ ତାର ଆବେଦନକୁ ଅନୁଭବ କରନ୍ତି । ଆଂର୍ତଭାଷୀୟ ତୁଳନା ମାଧ୍ୟମରେ ସେ ପ୍ରଦାନ କରନ୍ତି କବିତାକୁ ଅଭାବନୀୟ ତୁଙ୍ଗିମା । ଦିଲ୍ଲୀପ ଦାସଙ୍କ ନୀଳମାଧବର ଭାବ ସାନ୍ଦ୍ରତାକୁ ଉପନିଷଦୀୟ 'ପୂର୍ଣ୍ଣମିଦମ୍' ଠାରୁ A. Burke ଙ୍କ For a poem is an act, the symbolic act of the poet who made it an act of such nature that, in surviving as a structure or object it enables us as readers re-enact it (Grammer of motives) (ପୃ-୩୧)

ନୀଳମାଧବ ଦିଲ୍ଲୀପ ଦାସଙ୍କ କାବ୍ୟ ବାସ୍ତବତାର ଉତ୍ତରିତ ଅଧ୍ୟାୟ । ଆଧ୍ୟାତ୍ମିକ ଭାବକଳ୍ପ ସହିତ ରୋମାଣ୍ଟିକ କାବ୍ୟ ସାଧନାର ସୁନୀଳରମଣ ମାଧ୍ୟମରେ ନୀଳମାଧବର ବ୍ୟାପ୍ତି । ଏହି ବ୍ୟାପ୍ତିକୁ ସଠିକ ନିରୂପଣ କରିଛନ୍ତି ନକୁଳ ଚନ୍ଦ୍ର ସାହୁ । କାବ୍ୟିକ ପରିଚର୍ଯ୍ୟାରେ ସେ ନୀଳମାଧବ ସହିତ କବି ଦିଲ୍ଲୀପ ଦାସଙ୍କ କାବ୍ୟାନୁଭବକୁ ସୁନ୍ଦର ଭାବେ ଚିତ୍ରଣ କରିଛନ୍ତି । ନୀଳମାଧବ ଏକ ଆଧ୍ୟାତ୍ମିକ ଉତ୍ତରଣ । ଭଲ ପାଇବାର ଅଳୀକ ସାମ୍ରାଜ୍ୟ ବିଲୁପ୍ତ

ହେବାପରେ କବିଙ୍କ ସାମ୍ନାରେ ଥିଲା ହଳଦିଆ ରଂଗର ପକ୍ଷୀଟିଏ । ଯାହାର ଛାଇ ପଡିଛି ପୋଖରୀ ଜଳରେ । ଶେଷକୁ ପକ୍ଷୀ ଓ ଛାଇ କେହି ନାହିଁ । ସଂସାର ତ ଧୁ ଧୁ ମଧ୍ୟାହ୍ନ ! ସେଇ ମଧ୍ୟାହ୍ନ ଏବେ ଅପରାହ୍ନରେ ରୂପାନ୍ତରିତ ଏବଂ ଅପରାହ୍ନ ପରର ପ୍ରକୃତି ସନ୍ଧ୍ୟାର ଯୁବତୀ ଭାବମୟ ଜଗତକୁ ଆଚ୍ଛାଦିତ କରି ଆସୁଛି । ସିଏ ରାତ୍ରୀର ଅଗ୍ରଦୂତୀକା, ବେଦନାର ମୁଗ୍ଧ ଠିକଣା, ଆସୁଛି ଡାକୁଆ, ନେଇ ଜ୍ୟୋଛନା ଚିଠି (ପୃ-୩୪) । ଦିଲ୍ଲୀପ ଦାସଙ୍କ କାବ୍ୟ ସାମ୍ରାଜ୍ୟକୁ ଏହାଠୁ ଭଳି ଆଉକି ଉପମା ଦେଇପାରେ ଜଣେ ସମଧର୍ମା ଶବଦ୍ଶିଳ୍ପୀ ।

ଓଡିଆ ସମାଲୋଚନା ସାହିତ୍ୟରେ ଜଣେ ଧୂରୀଣ ସମାଲୋଚକ ଭାବରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ସିଦ୍ଧିପ୍ରାପ୍ତ । କିନ୍ତୁ ତାଙ୍କ କାବ୍ୟ ପ୍ରତିଭାର ଆଲୋଚନା ଖୁବ୍ କମ ଦୃଷ୍ଟିଗୋଚର ହୁଏ । ଏହି ପ୍ରସଙ୍ଗରେ ପ୍ରଫେସର ଶତପଥୀଙ୍କ 'ସବାସାନ ପ୍ରେମିକା ଓ ଅନ୍ୟାନ୍ୟ କବିତା' କାବ୍ୟ ପୁସ୍ତକର ଉର୍ଦ୍ଧ୍ୱଉଡାଣକୁ ପରଖିଛନ୍ତି ନକୁଳବାବୁ । ପ୍ରଫେସର ଶତପଥୀଙ୍କ କବିତାରେ ପ୍ରେମ, ପ୍ରଣୟ ଓ ବିରହର କଳାତ୍ମକ ଅଭିଳାଷକୁ ଭାରତୀୟ ସଂସ୍କୃତିର କାମଶାସ୍ତ୍ର, ଚରମାନନ୍ଦ, ତାନ୍ତ୍ରିକ ସାଧନା, ଭୋଗୈଷଣା ସହିତ ତୁଳନା କରିଛନ୍ତି ନକୁଳ ଚନ୍ଦ୍ର । ଆଲୋଚନାର ପ୍ରତି ଛତ୍ରେ ଛତ୍ରେ ସେ ପ୍ରେମ, ଯୌନକର୍ମ, କାମବାସନା, ଆଗମଦର୍ଶନର ମୌଳିକ ତତ୍ତ୍ୱକୁ ବିଶ୍ଳେଷଣ କରିଛନ୍ତି । ମାନସିଂହଙ୍କ ଧୂପ, ବିଭୂଦତ୍ତ ମିଶ୍ରଙ୍କ 'ଉର୍ବଶୀର ଚିଠି' ସହିତ ସମ ପର୍ଯ୍ୟାୟବାଚୀ ପ୍ରେମ ପ୍ରଣୟର ଧାରାର ଖଣ୍ଡିଏ ଚମତ୍କାର ସୃଷ୍ଟି ନିତ୍ୟାନନ୍ଦଙ୍କ "ସବାସାନ ପ୍ରେମିକା ଓ ଅନ୍ୟାନ୍ୟ କବିତା" ।

ନିତ୍ୟାନନ୍ଦ ଶତପଥୀ ଆଧୁନିକ ଓଡିଆ କବିତାର ମୂଲ୍ୟାୟନ ମଧ୍ୟରେ ଜୀବନର ବହୁମୂଲ୍ୟ ସମୟକୁ ଉତ୍ସର୍ଗୀ ଦେଇଛନ୍ତି । ତାଙ୍କ ଜୀବନର ପ୍ରେମ ପ୍ରତାରଣା ଓ ରୋମାଣ୍ଟିକ ଭାବୁକତାର ଅମୃତମୟ ସ୍ୱାକ୍ଷର "ସବାସାନ ପ୍ରେମିକା ଓ ଅନ୍ୟାନ୍ୟ କବିତା" ସଂକଳନ । ଦୁଇଟି ଚମତ୍କାର ଧାଡିରେ କବି ନିଜର ଭାବକୁ ପ୍ରକାଶ କରିଛନ୍ତି "ତୁମେ ନଷ୍ଟ ନଦୀର ନାରୀ/ ମୁଁ ଉଜୁଡି ଯାଉଥିବା କ୍ଷେତର ଋଇତ" ନିଜର ନିରୋଳା ଅନୁଭବ ଓ ଲୁହଭିଜା ପ୍ରେମର ବଶଂବଦ ଶବ୍ଦକୁ ସଜାଇ କବି ସୃଷ୍ଟି କରିଛନ୍ତି ପ୍ରେମର ବାଇଶି ପାହାଚ ଯାହା "ସବାସାନ ପ୍ରେମିକା ଓ ଅନ୍ୟାନ୍ୟ କବିତା" ରୂପରେ ପ୍ରତିଭାତ । ଏହି କବିତା ସମୂହର ସୂକ୍ଷ୍ମ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ସହିତ ବାସ୍ତବବାଦୀ ଶିଳ୍ପ ସୌକର୍ଯ୍ୟକୁ ଆଲୋଚକ ସୁନ୍ଦର ଭାବେ ଉପସ୍ଥାପନ କରିଛନ୍ତି ।

ଉର୍ଦ୍ଧ୍ୱ ଉଡାଣର ଚତୁର୍ଥ ପରିଚ୍ଛେଦରେ କବି ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ କାବ୍ୟ ପରାକାଷ୍ଠା ଅଭିବ୍ୟଞ୍ଜିତ । ପ୍ରକୃତି, ଅରଣ୍ୟ, ଆକାଶ ଓ ସମୁଦ୍ରକୁ ନେଇ କବି ନନ୍ଦଙ୍କର କାବ୍ୟ ସାମ୍ରାଜ୍ୟ । ପ୍ରକୃତିର ସ୍ୱପ୍ନରେ ମସଗୁଲ୍ ବୃକ୍ଷର ପ୍ରେମରେ ରସାପ୍ଳୁତ କବି ନନ୍ଦଙ୍କର ପ୍ରତିଟି କବିତା । କବିଙ୍କର କାବ୍ୟ ପ୍ରୟାସର ଧାରାକୁ ଅତି ନିବିଡ ଭାବେ ନିରୀକ୍ଷଣ କରିଛନ୍ତି ନକୁଳବାବୁ, ତାଙ୍କ ମତରେ - "ନିଶବ୍ଦ ଆକାଶର ଡାକ ଡକ୍ଟର ନନ୍ଦଙ୍କର କାବ୍ୟିକତାର

ପହିଲି ଆଷାଢ ଅନ୍ୟ ଖଣ୍ଡିଏ ବହି ସେହି ଶୃଙ୍ଖଳାରେ 'ଅରଣ୍ୟର ଡାକ' ତାଙ୍କ ପ୍ରାକ୍ ଶ୍ରାବଣର ସ୍ୱର । ତାଙ୍କ ତୃତୀୟ କାବ୍ୟାଲୋକର ଶୀର୍ଷକ 'ଶୂନ୍ୟବିନ୍ଦୁ' । ନିଶବ୍ଦ ଅକାଶର ଶୂନ୍ୟତାରୁ ସୃଷ୍ଟି ଯେଉଁ ନାନ୍ଦନିକ ଚେତନାର ପୁଷ୍ପ ତାହା ଉତ୍ତରଣରେ ହୋଇଛି ଶୂନ୍ୟବିନ୍ଦୁ ଗୋଟିଏ । ସେ ଶୂନ୍ୟତା ଶୂନ୍ୟତା ନୁହେଁ ସଂପର୍କର ପୂର୍ଣ୍ଣତାର ଚିତ୍ରଟିଏ । X X X X ଭିତରେ ଭିତରେ ସମସ୍ତେ ଖଞ୍ଜା/ ପାଦ ଥିଲେବି ଚାଲିହୁଏନାହିଁ ଅଭୀଷ୍ଟ ପଥ/ ପାଦ ନଥିଲେ ବି ଏଖେପି ହୁଏ/ ପାହାଚ ପରେ ପାହାଚ... ଭୋଗି ଭୋଗି କାକୁସ୍ଥ ପ୍ରାଣର ଜଞ୍ଜାଳ ।" ଆଦାମର ଅଭିଶପ୍ତ ଇମିତି ଏକ କାବ୍ୟ ପୁରୁଷର ଜୀବନମାଟିକୁ ଆର୍ଦ୍ରକରି ରଚନା କରିଛନ୍ତି ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ ଏକ ଅମୃତ ଫଳର ଆଖ୍ୟାନ "ପାଦ ନାହିଁ ବୋଲି" ।

ଫଣୀନ୍ଦ୍ରଙ୍କ କାବ୍ୟିକ ଦୃଷ୍ଟିଟି ସବୁଜ କିନ୍ତୁ ଜୀବନବାଦୀ । ଗଛ, ପକ୍ଷୀ, ଝରଣା, ପବନ, ମାଟି ଓ ଗୀତ ପରି ସୃଜନଶୀଳ ଶବଦର ଅନୁରଣନରେ ମୁଖରିତ ଫଣୀନ୍ଦ୍ରଙ୍କ କାବ୍ୟ ଫୁଲବନ । ଯେଉଁ ସ୍ୱପ୍ନ ଓ ପ୍ରେମ ସ୍ମୃତିସାରା ଅସରା ପଗୁଣ । ଗୋଟିଏ ମଧୁମୟ ଓ ସବୁଜ ବେଷ୍ଟନୀ ମଧ୍ୟରେ କାବ୍ୟପୁରୁଷ ହନ୍ତସନ୍ତ ଆହ୍ଲାଦିତ, ଚେନାଏ ଭସା ବାଦଲ ଭିତରେ ତଲ୍ଲୀନ । ଦୂର ସହରରେ ତା ପାଇଁ ବୁଣା ସରିଛି ସୁଖର ବିହନ । ସେହିପରି ତା' ପାଇଁ ଜଙ୍ଗଲ ଭିତରେ ପ୍ରେମର ଫଲ୍‌ଗୁ । ଗଛରେ ମମତାର ଫଳ । ସଂସାରଟା ତା ପାଇଁ ଆତ୍ମୀୟତାରେ ପୂର୍ଣ୍ଣ । ଏମିତି ଆତ୍ମୀୟ କାବ୍ୟ ଫସଲକୁ ଖୁବ୍ ନିରେଖି ଦେଖିଚନ୍ତି ନକୁଳ ଚନ୍ଦ୍ର ଏବଂ ଫଣୀନ୍ଦ୍ରଙ୍କ କାବ୍ୟ ବ୍ୟାପ୍ତିକୁ କରିଛନ୍ତି ନିରପେକ୍ଷ ମୂଲ୍ୟାୟନ ।

କବି ସୌବାଗ୍ୟବନ୍ତ ମହାରଣାଙ୍କ 'ମାୟାଦର୍ପଣ' କବିତା ସଂକଳନର ଏକ ଉଚ୍ଚାଙ୍ଗ ପର୍ଯ୍ୟବେକ୍ଷଣ ଉର୍ଦ୍ଧ୍ୱଉଡାଣର ପୃଷ୍ଠା ମଣ୍ଡନ କରିଛି । 'ଶାଗୁଆ କ୍ଷେତର ସହର' ଠାରୁ ସୌଭାଗ୍ୟବନ୍ତଙ୍କ କାବ୍ୟ ଯାତ୍ରାର ପ୍ରାରମ୍ଭ । ଏହି କାବ୍ୟ ଯାତ୍ରାର ଉତ୍ତରଣ 'ମାୟାଦର୍ପଣ' । ମାୟାଦର୍ପଣରେ କାବ୍ୟପୁରୁଷ ଗଣତନ୍ତ୍ରର ଭେଳିକି ଦେଖି ମୁହ୍ୟମାନ, ଦୁଃଖାର୍ତ୍ତ । ସାମାଜିକ ଜୀବନର ଧୂସର ପ୍ରତିଲିପି ମାୟାଦର୍ପଣ । କବିତା ସମକାଳ ସାମାଜିକ ଇତିହାସର ସାମ୍ନାଫର୍ଦ୍ଦ । ମଣିଷ ସଫଳତାର ଶିଖର ଯେତେ ଉଚ୍ଚ ଦରିଦ୍ରର ପାତାଳ ସେତିକି ଖାଲ । ବସ୍ତି କୁକୁର ପରି ଏଠି ବଞ୍ଚୁଛନ୍ତି ବେକାର । .... ଇଲିୟଟ ଦେଖିଥିଲେ ଦଗ୍ଧ ଭୂମି, ସୌଭାଗ୍ୟବନ୍ତ ଦେଖିଛନ୍ତି ଭୋକଭୂମି । ବିସ୍ଥାପିତ ମଣିଷର ତତଲା ନିଶ୍ୱାସ । ଶାଗୁଆ କଂକାଳର ଅଶୁଖା ଲୋତକ । ଦ୍ରୁତ ଶିଳ୍ପାୟନର ଛଳନା, ସୌଭାଗ୍ୟବନ୍ତଙ୍କ ବସ୍ତି କୁକୁର, ଦଳିତ ଉବାଚ, ରାଉରକେଲା, ଚାଷୀ ଆତ୍ମହତ୍ୟା, ମାନ୍ଦାବସ୍ଥା ଭଳି ଅନେକ କବିତାରୁ ଧୂଳି ଧୂସରିତ ମନୁଷ୍ୟ ଓ ତାହାର ଆତ୍ମାକୁ ସାକ୍ଷାତ କରିହୁଏ । ମାୟାଦର୍ପଣ ପରିକ୍ରମଣ କାଳରେ ନକୁଳ ସାହୁ ଉଚ୍ଚାରଣ କରିଛନ୍ତି ନିରୁତା ଭାବମଗ୍ନ ବାକ୍ୟଟିଏ - ସୌଭାଗ୍ୟବନ୍ତଙ୍କ କବିତା ନିରୋଳା କବିତାର ଝରଝର ଧାରା ! ତା ରକ୍ତରେ ନିଆଁ, ନିଶ୍ୱାସରେ ମାନବିକତାର ବାସ୍ନା, ମନପରି ପବିତ୍ର ଓ ସୁନ୍ଦର ତାଙ୍କର ଭାଷା ।(ପୃ-୭୧)

ଓଡିଆ କବିତାରେ ଜଣେ ବହୁ ଚର୍ଚ୍ଚିତ ନିରଳସ କାବ୍ୟ କର୍ମୀ ଭିକାରୀ ଧଳ । ସମୟର ସ୍ୱର (୧୯୮୬) ରୁ ଭିକାରୀ ଧଳଙ୍କ କାବ୍ୟ ପ୍ରୟାଣର ଅୟମାରମ୍ଭ । ପରେ ପରେ, ଏକା ଏକା ସବୁଦିନ, ସମୟ ଭଲ ନାହିଁ, ପକ୍ଷୀର ସକାଳ ଗୀତ ପ୍ରଭୃତି ସଂକଳନ ଭିକାରୀ ଧଳଙ୍କୁ ଜଣେ କୃତବିଦ୍ୟ କବିର ସମ୍ମାନ ପ୍ରଦାନ କରିଛି । ଗ୍ରାମୀଣ ଲୋକ ସଂସ୍କୃତି ସହିତ ସାମାଜିକ ଓ ବ୍ୟକ୍ତିଗତ ପ୍ରତୀତିର ସମ୍ମିଶ୍ରଣରେ ଭିକାରୀ ଧଳଙ୍କ କାବ୍ୟ କୋଣାର୍କ ଗଠିତ । ଭିକାରୀ ଧଳଙ୍କ କାବ୍ୟ ଆବେଦନ ଯେତିକି ବାସ୍ତବଧର୍ମୀ ସେତିକି ନିର୍ଭେଜାଲ । 'ପକ୍ଷୀର ସକାଳ ଗୀତ କେତେ ବାସ୍ତବ ଓ ରୋକଠୋକ୍ କବିର ବେଦନା କେତେ ମର୍ମଭେଦୀ ଓ ପୀଡାଦାୟକ ତାହାକୁ ଗୋଟିଏ ଉଦାହରଣ ମାଧ୍ୟମରେ ନକୁଳ ବାବୁ ପ୍ରତୀକିତ କରିଛନ୍ତି "ଅନେକ ଥର ତୁମେ କହିଛ/ମୁଁ ଶୁଣିଛି/ମୁଁ କହିବା ବେଳକୁ..../ଶୋଇ ପଡିଥାଅ ତୁମେ" ସରଳ ଶୈଳୀକୁ ଅତିକ୍ରମ କରି ଏକ ଦୁର୍ବୋଧ ଶୈଳୀର ଯାଦୁକରୀ କବିତା ମୈଦାନରେ ଘୋଷଯାତ୍ରା ଆରମ୍ଭ କରିଥିଲା । କିନ୍ତୁ ସେହି ଶୈଳୀ ପଥବଣା ହେଲାବେଳକୁ ଭିକାରୀ ବାବୁଙ୍କ ସରଳ ନିରାଡମ୍ବର ଶୈଳୀ ଉତ୍ତର ଆଧୁନିକତାର ମାନ୍ୟତା ଲଭିଲା । 'ପ୍ରୀତି ପାଇଁ କବିତା' ସଂକଳନରେ ଭିକାରୀ ଧଳଙ୍କ ଦାର୍ଶନିକ ଦୃଷ୍ଟିଭଙ୍ଗୀ ରୋମାଣ୍ଟିକ ଭାବସାନ୍ଦ୍ରତାରେ ଉପସିକ୍ତ । ଭିକାରୀ ଧଳଙ୍କ କାବ୍ୟ ସାମ୍ରାଜ୍ୟର ଆଭିମୁଖ୍ୟକୁ ସୁନ୍ଦର ଭାବେ ନକୁଳ ବାବୁ ଶବ୍ଦର ବେହରଣ ପିନ୍ଧାଇଛନ୍ତି । "କାବ୍ୟିକ ସତ୍ୟକୁ ସବୁଠି ଆଶ୍ଳେଷରେ ଭିଡି ଧରିଛି ସାମାଜିକ ବାସ୍ତବବାଦର ବିକଟାଳ ରୂପ । ସାମାଜିକ ବାସ୍ତବବାଦୀ ଦୃଷ୍ଟିର ସେହି ବିକଟାଳ ରୂପ କାବ୍ୟିକ ସୌନ୍ଦର୍ଯ୍ୟର ଗୋଲାପୀ ସୁଷମାକୁ କରିଛି ବିଷାଦ ପୀଡିତ" । ଭିକାରୀ ଧଳଙ୍କ କବିତା ଯେତିକି ସମାଜ ନିର୍ଭର ସେତିକି ଜୀବନ ନିର୍ଭର/ଯେତିକି ବାସ୍ତବବାଦୀ ସେତିକି ରୋମାଣ୍ଟିକ ।

ବ୍ୟକ୍ତିଗତ ଅନୁଭୂତି ପ୍ର[illegible] ତୀବ୍ର ହେଲେ ବିଶ୍ୱଗତ ହୁଏ । ଏହି ବିଶ୍ୱମୁଖୀନତାକୁ କବିତା କୁହାଯାଏ । କବିତାତ କବି ହାତଗଢା ମୁହୂର୍ତ୍ତର ମୂର୍ତ୍ତି । ସୁବର୍ଣ୍ଣ ମୁହୂର୍ତ୍ତର କୋମଳ ସମ୍ମୋହନକୁ ସିଏ ସାଇତି ପାରନ୍ତି । ଶବ୍ଦର ଅବତାର ଅନୁଭବର ମସୃଣ ମୁହୂର୍ତ୍ତରୁ ସମୁଦ୍ର ଜଳର ନୀଳ ଆସ୍ତରଣ ଆସନ୍ତି ଟପି । କବିତା କେବଳ କବିତା ନୁହେଁ କବିଙ୍କ ଅନୁଭୂତି. ସାମ୍ନାରେ ମହକିତ ଦୃଶ୍ୟରାଜି, ଯେମିତି ନୀଳ ଦ୍ରୁମରାଜି , କବି ବୈକୁଣ୍ଠନାଥ ସାହୁଙ୍କ ଭାଷାରେ ତାହା 'ବାଟବଣା ନଦୀ' ।

ବୈକୁଣ୍ଠନାଥ ସାହୁଙ୍କ କାବ୍ୟ ଭୂମି ବେଶ ଦୃଢ ଓ ବୈଚିତ୍ର୍ୟମୟ । ସେ ଜୀବନର ହରରଂଗୀ ବାସ୍ତବତାକୁ କବିତାରେ ରୂପାନ୍ତରିତ କରିବାରେ ବିଚକ୍ଷଣ ।.ଚେତନାକୁ ଇତିହାସ ସହିତ, ଲୋକକଥାକୁ ସର୍ଜନଶୀଳ ବାସ୍ତବତା ସହିତ ସମନ୍ୱିତ କରି ସେ ସୃଷ୍ଟି କରନ୍ତି ଅପରୂପ କବିତାର କଳା । ବୈକୁଣ୍ଠନାଥ ସାହୁଙ୍କ କବିତାରେ ଶବ୍ଦ ବସାଣ ବେଶ୍ ଯାଦୁକରୀ । ଅନ୍ତରୀଣ ଛନ୍ଦ ପ୍ରବାହ ଫଲ୍ଗୁ ପରି [illegible] ଅନ୍ତଃସୌନ୍ଦର୍ଯ୍ୟକୁ ମହୀୟାନ

କରେ । ଧ୍ୱନି ତଳେ ପ୍ରସରୁଥାଏ ଧ୍ରୁପଦୀଟିଏ । ବାଟବଣା ନଦୀ, ମୁଁ ଖଣ୍ଡେ ଭାସମାନ ମେଘ ପ୍ରଭୃତି କବିତା ସଂକଳନ କବିଙ୍କ ଜାତୀୟ ସଂପତି । ଛତିଶଗଡରୁ ସୁନ୍ଦରଗଡ, ବରପାଲିରୁ ଭୁବନେଶ୍ୱର ଯାଏ ତାଙ୍କର କାବ୍ୟଯାତ୍ରା ଅନାହତ, ରସସଂବେଦୀ ଅନୁଭବ ବହୁଧା ବିଭକ୍ତ । ଏହି ସ୍ମୃତିସିକ୍ତ ବ୍ୟାପ୍ତି ବୈକୁଣ୍ଠଙ୍କ କବିତାରେ ଯେତିକି ଆନ୍ତରିକତାରେ ସଜଳ ସେତିକି ଶକ୍ତିଶାଳୀ ଓ ଅନ୍ତର୍ଭେଦୀ । ଜୀବନର ନାନାବିଧ ରୂପ ଓ ତାର ପରିଚର୍ଯ୍ୟାକୁ ମହିମ୍ନ ଶବଦରେ ରୂପାୟିତ କରିଛନ୍ତି କବି । ନକୁଳ ବାବୁ ବାସ୍ତବରେ ଉଚ୍ଚାରିଛନ୍ତି, "କବି ବୈକୁଣ୍ଠ ନାଥ ଅତିରଂଜନ ନୁହନ୍ତି, ଅଞ୍ଜଳିଭରା ଆକାଂକ୍ଷାର ସବୁଜିମା । ତାଙ୍କ କବିତା ପହଂଚ ସ୍ୱପ୍ନ, ପରିଚିତ ପ୍ରତୀକର ବାସ୍ନା ତାଙ୍କ ଆଙ୍ଗିକର ଆତ୍ମା".(ପୃ-୮୭)

ଊର୍ଦ୍ଧ୍ୱଉଡାଣ ପୁସ୍ତକର ଅଷ୍ଟମ ଅଧ୍ୟାୟରେ କବି ଗୌରାଙ୍ଗ ଚନ୍ଦ୍ର ଦାସଙ୍କ କାବ୍ୟିକ ପରାକାଷ୍ଠା ପ୍ରଦର୍ଶିତ । ତାଙ୍କର 'ଜହ୍ନ ପରି ଦିଶୁଥିବା ମୁହଁ ' ସଂକଳନର ଇନ୍ଦ୍ରିୟଗ୍ରାହ୍ୟ ଆବେଦନକୁ ବିମୁଗ୍ଧ ଭାବରେ ଅବଲୋକନ କରିଛନ୍ତି ନକୁଳ ବାବୁ । କବିତାଗୁଡିକ ପ୍ରଣୟ ମୂଳକ ଓ ଜୀବନର ସୂକ୍ଷ୍ମ ଇନ୍ଦ୍ରିୟାନୁଭୂତିକୁ ଉଖାରି ଦେବାରେ ସଫଳ । 'ଜହ୍ନ ପରି ଦିଶୁଥିବା ମୁହଁ' ରେ ଗୌରାଙ୍ଗ ଚନ୍ଦ୍ରଙ୍କ ସ୍ମୃତି, ପ୍ରେମ ଓ ପ୍ରଣୟ ଜୀବନ୍ୟାସ ପାଇଛି । ଶବ୍‌ଦର କେଳି ଗୃହରେ ଉତପ୍ତ ହୁଏ ସ୍ନାୟୁର ଝରଣା, ସ୍ନେହର ନଈରେ ଫୁଟେ ପ୍ରଣୟର ପଦ୍ମ । ପରମ ପୁଲକ ଓ ପରମ ମାଧୁର୍ଯ୍ୟର ଘଟେ ଧରାବତରଣ । ନକୁଳବାବୁ ଗୌରାଙ୍ଗ ଚନ୍ଦ୍ରଙ୍କ କବିତାର କରିଛନ୍ତି ନିଷ୍କପଟ ମୂଲ୍ୟାୟନ । ପ୍ରେମର ସରଣୀରେ କବିତାର ଶାପମୁକ୍ତି । ସମାଲୋଚକଙ୍କ ଭାଷାରେ- ପ୍ରେମ; ପାଇ ନପାଇବାହିଁ ଏହି ଶବ୍ଦଟିର ଅର୍ଥ । ଇଚ୍ଛା, ତୃଷ୍ଣା, କୌତୁକ ଓ କଳ୍ପନାର ଅତ୍ୟୁଲ୍ଲାସ ହୃଦୟରେ ବିକଶିତ କରେ ଯେଉଁ ଶୋଷର ପୁଷ୍ପ, ତାହା ଫୁଟେ ଓ ତାର ସୁବାସରେ ଚମକାଏ ଦିଗ୍‌ବିଦିଗ । ଜୀବନକୁ ଦିଏ ନୂଆ ଅର୍ଥଜହ୍ନ ପରି ଦିଶୁଥିବା ମୁହଁ ସେହିପରି ଏକ ସାରସ୍ୱତ ସାରସ । ତାର ମଧୁଲୀଳାରେ ହୃଦୟକୁ କରେ ରସାପ୍ଲୁତ । (ପୃ-୯୫)

ଓଡିଆ କାବ୍ୟ ଇତିହାସରେ କବି ମନୋରଞ୍ଜନ ଦାସଙ୍କ 'ଶୂନ୍ୟ ପ୍ରବାହ' ଏକ ବିଲକ୍ଷଣ ସୃଷ୍ଟି ।ଏହି ସଂକଳନର ପ୍ରତିଟି କବିତା ନକୁଳ ବାବୁଙ୍କୁ ମୋହାବିଷ୍ଟ କରିଛି । କବିଙ୍କ ସୃଜନଶୀଳ ପ୍ରତିଭା ଓ ନିଛକ କବିତା ରଚନା ସାମର୍ଥ୍ୟକୁ ପ୍ରଶଂସା କରିଛନ୍ତି ସମାଲୋଚକ । କବିଙ୍କ ପବିତ୍ର ଲେଖନୀ ସ୍ପର୍ଶରେ ତୁଚ୍ଛ ତୁଠ ପଥରଟିଏ ପରିବର୍ତ୍ତିତ ହୋଇଛି ଅପସ୍ୱରୀରେ । ଶବ୍‌ଦର କୌଳିକ ପ୍ରବାହରେ କବିତାର ମୋହମୁକ୍ତି ଘଟିଛି । ମନୋରଞ୍ଜନ ବାବୁ ଜଣେ ଅକପଟ ଶବଦ ଶିଳ୍ପୀ ତାଙ୍କର ପ୍ରତିଟି କବିତା ଜୀବନକୁ ବିଭିନ୍ନ ବାଗରେ ଅଭିବ୍ୟଞ୍ଜିତ କରିଛି ।

କବି ରମେଶ ଚନ୍ଦ୍ର ପତିଙ୍କ ଦୁଇଟି ଚର୍ଚ୍ଚିତ ସଂକଳନ 'ଦଂଶିତ କୃଷ୍ଣଚୂଡା' ଏବଂ 'ଭୋକଭିଜା ଭୂଇଁ' । ଜୀବନବାଦୀ ଶିଳ୍ପୀ ରମେଶ ପତି । ପ୍ରେମ ପ୍ରଣୟର ଊର୍ଦ୍ଧ୍ୱରେ

ମାନବିକତାର ସବୁଜ ସିଂହାସନ ସେ ପ୍ରତିଷ୍ଠା କରିଛନ୍ତି । ସର୍ବଜନୀନ ସମସ୍ୟାକୁ ସର୍ବକାଳୀକ ଭାବ ଆବେଦନରେ ରସାପ୍ଲୁତ କରିବା ରମେଶ ପତିଙ୍କ କବି କର୍ମ । ଏହି କବିଙ୍କ କାବ୍ୟ ସ୍ୱାକ୍ଷରକୁ ନକୁଳ ବାବୁ କଳାତ୍ମକ ଔଜଲ୍ୟରେ ଦେଦୀପ୍ୟମାନ କରିଛନ୍ତି । କବିତାପରି ତାଙ୍କର ମନ୍ତବ୍ୟ ଆହୁରି କାବ୍ୟିକ- "ଦଂଶିତ କୃଷ୍ଣଚୂଡା ପ୍ରଚ୍ଛଦ ଓଲଟାଇଲେ ସାମ୍ନାରେ ପଡେ ବିନ୍ଦୁଏ ବ୍ରହ୍ମାଣ୍ଡ, ରମେଶ ପତିଙ୍କ କାବ୍ୟ ଭୂମି । ସମ୍ଭାବନାର ଢେଉ ତଳେ କେମିତି ସେ ଅଣ୍ଡାଳୁଛନ୍ତି ମୁକ୍ତା ଗର୍ଭା ଶାମୁକାଟେ । ସମୟର ଜୁଆରରେ ଧସି ଯାଉଛି ପାଦ ତଳର ମାଟି । ହାତ ବଢିଛି ଆଗକୁ, ଘୁଞ୍ଚି ଘୁଞ୍ଚି ଯାଇଛି ଦୂରରୁ ଦୂରକୁ ପାପୁଲି ପାଖ ସୁକୁମାରୀ ଫୁଲଟିର ଛାଇ । ଆଶାର ପାହାଡ ଉପରେ ବସି ଅନେଇଲେ ଦିଶୁନାହିଁ ପାହାଡ କି ନଈ । ଏମିତି ଏକ ହୃଦୟ ଭର୍ତ୍ତି କ୍ଷୁଧାକୁ ନେଇ ମଣିଷ ବଞ୍ଚିଛି ଅଭିଶପ୍ତ କବିଟିଏ ହୋଇ ।" (ପୃ-୧୦୪) ଭୋକ ଭିଜା ଭୂଇଁରେ ରମେଶ ପତିଙ୍କ ସ୍ୱର ତୀବ୍ର ଓ ବିଦ୍ରୋହୀ ହୋଇଛି । ଅସୁଖୀ ମାନବର ଯାବତୀୟ ଅନିଭୋଗ ପାଇଁ ରମେଶ ପ୍ରତିବାଦର ସ୍ୱର ଉଠାଇଛନ୍ତି । ତାଙ୍କର ଫର୍ଦ୍ଦେ ଜୀବନ ସଂକଳନର କବିତା ଗୁଡିକରେ ଏହି ବିଦ୍ରୋହୀ ସ୍ୱର ଦାର୍ଶନିକ ସୁଲଭ ଗାମ୍ଭୀର୍ଯ୍ୟରେ ଉର୍ଜସ୍ୱଳ । ସାମାଜିକ ଚେତନାକୁ ଆଙ୍ଗୀକ ରୂପେ ଗ୍ରହଣ କରିଥିବା କବି ବାସ୍ତବର ମୂର୍ତ୍ତି ରୂପକୁ କବିତାର ଆତ୍ମିକ ବିଭବ ରୂପେ ଗ୍ରହଣ କରିଛନ୍ତି ।ଅତି ସହଜ ସାବଲୀଳ ପ୍ରକାଶ ମଧ୍ୟରେ ଜଟିଳ ଭାବପ୍ରସ୍ଥ କବିତାରେ ସୁରକ୍ଷିତ । ବହୁ ଭାବ ଓ ବହୁ ତଥ୍ୟକୁ ନେଇ କବିତାର ବିମ୍ବ ନିର୍ମାଣ କରିଛନ୍ତି କବି । ଜୀବନବାଦୀ ବିଦ୍ରୋହୀ ସ୍ୱର ରମେଶଙ୍କର ଫର୍ଦ୍ଦେ ଜୀବନ ବେଳକୁ ମନସ୍ତାତ୍ତ୍ୱିକ ଅବୁଝା ପଣରେ ଭାରାକ୍ରାନ୍ତ । ଯେତିକି ଦାର୍ଶନିକ ସେତିକି ସୂକ୍ଷ୍ମ ଅବେଗପ୍ରବଣ । ଆଲୋଚକ ରମେଶଙ୍କ କାବ୍ୟ ମାୟାରେ ଆଚ୍ଛନ୍ନ ବିଭୋର ।

ଉର୍ଦ୍ଧ୍ୱଉଡାଣ ପୁସ୍ତକର ଶେଷ ଆଲୋଚନା କବି ସୁରେନ୍ଦ୍ର ପାଣିଗ୍ରାହୀଙ୍କ କାବ୍ୟ ଆବେଦନର ପରିଚର୍ଚ୍ଚା । ମେଘ ମେଘ ଆକାଶ ଓ ଖାଲେଇ ସଂକଳନର ମୂଲ୍ୟାୟନ କରିଛନ୍ତି ଆଲୋଚକ । ମେଘ ମେଘ ଆକାଶରେ କବି ଦୃଷ୍ଟି ମେଦିନୀ ନିବଦ୍ଧ ଓ ଆକାଶମୟ । ସୁରେନ୍ଦ୍ରଙ୍କ କାବ୍ୟ ଚେତନାରେ ମେଘ ମହ୍ଲାର ସ୍ୱନ ତୋଳିଥିଲା ଜୀବନକୁ ଛଳ ଛଳ ମହମହ ସଂଗୀତରେ ରସସିକ୍ତ କରି । ତାଙ୍କର କବିତା ଋତୁମତୀ ପୁଷ୍ପର ସୁବାସ ଯେମିତି ପ୍ରସରିଛି ଜୀବନ ଆକାଶ । ସୀମିତ ଦୃଷ୍ଟିଭଙ୍ଗୀ ଭିତରେ ଅସୀମ ସୌନ୍ଦର୍ଯ୍ୟର ଅଭୀପ୍ସା ଲହଡି ଭାଙ୍ଗୁଛି । ମେଘ ମେଘ ଆକାଶର ସ୍ୱପ୍ନ ପ୍ରବଣତା, କିଆ କେତକୀର କବିତାରେ ମାଟି ମନସ୍କ ହୋଇଛି । ପଂଜୁରୀ ପାରୀର ପକ୍ଷୀରେ ପରିଚିତ ପୃଥିବୀର ବାସ୍ନା, ଅସ୍ମିତାକୁ ଖୋଜିବାର କାକୁସ୍ଥତା ଖାଲେଇ ସଂକଳନରେ ଜୀବନ ମୁହାଁ ହୋଇଛି । ଚମତ୍କାର ବିମ୍ବରେ ନିଜର କାବ୍ୟିକତାକୁ ଖାଲେଇରେ ଉପସ୍ଥାପିତ କରିଛନ୍ତି ସୁରେନ୍ଦ୍ର । କବି ଦରଦୀ ସଂବେଦନଶୀଳ ଦ୍ରଷ୍ଟାଟିଏ । ସେ ସମାଜର ନିର୍ଯ୍ୟାତନା, ଦୁଃଖ ଯାତନାକୁ ସହାନୁଭୂତିପୂର୍ଣ୍ଣ

ଦୃଷ୍ଟିରେ ପରଖି ନିଏ । ଯନ୍ତ୍ରଣାକ୍ତ ମାନବର ଦୁଃଖରେ ସମଦୁଃଖୀ ହୁଏ । ଅହା ପଦରେ ଖସିପଡେ ଆକାଶ, ଶବ୍‌ଦରେ ଶବ୍‌ଦରେ ବାଂଧି ଦିଏ ଦୁଃଖ । ଅନ୍ଧକାର ଯେମିତି ପ୍ରସ୍ତୁତ କରି ରଖିଛି ଅପର୍ଯ୍ୟାପ୍ତ ସୌଭାଗ୍ୟର ସୁରଭିତ ଆଲୋକ ।

ମଣିଷ ଜୀବନର ନିଷ୍କାପର ପ୍ରତିଫଳନ ସାହିତ୍ୟ । ସାହିତ୍ୟର ଲଳିତ କଳା ବିଭବର ମହିମ୍ନ ଉଚ୍ଚାରଣ କବିତା । ଯେଉଁ କବିତାର ଶବ୍ଦ ଗଢଣ ଯେତିକି ସୂକ୍ଷ୍ମ କାରୁକାର୍ଯ୍ୟମୟ ତାହା ସେତିକି ସୁନ୍ଦର । ସ୍ରଷ୍ଟାର ଅନୁଭୂତିସିକ୍ତ ଆନ୍ତରିକ ପରିପ୍ରକାଶ କବିତାକୁ ଉତ୍କର୍ଷତାର କୋଟିରେ ଅଧିଷ୍ଠିତ କରେ । ଜୀବନର ନାନାବିଧ ରୂପ ମାର୍ମିକ ଭାବେ କବିତାରେ ରୂପ ପାଏ । ଯେଉଁ କବିତାରେ ଜୀବନର ପ୍ରତିଫଳନ ଯେତିକି ଗଭୀର ସେହି କବିତା ସେତିକି ଅନ୍ତର୍ଭେଦୀ ସେତିକି ଶକ୍ତିଶାଳୀ । ସମାଲୋଚକ କବିର ସେହି ମର୍ମଭେଦୀ ଦୃଷ୍ଟିକୁ ଆବିଷ୍କାର କରେ ସର୍ବଜନୀନ କରେ । କବିର ଉର୍ଦ୍ଧ୍ୱ ଉଡାଣକୁ କାବ୍ୟିକ ଅଂତର୍ଧ୍ୱନିର ସଂଶ୍ଳେଷରେ ସମାଲୋଚକ ନୂତନ ବ୍ୟାପ୍ତି ପ୍ରଦାନ କରେ । ସମାଲୋଚନାର କଷଟୀରେ ପରଖା ଯାଇଥିବା କାବ୍ୟିକତା ପାଠକର ଅନ୍ତରକୁ ମୁଗ୍ଧ ଚକିତ କରେ । କାବ୍ୟର ରସବୋଧକୁ ସମାଲୋଚନା ଅମୃତମୟ କରିତୋଳେ । କଣ୍ଟକିତ ଗୋଲାପର ମାଧୁର୍ଯ୍ୟରେ କବିତାକୁ ରସସ୍ନିଗ୍ଧ କରେ । ମାନବ ଜୀବନର ସକଳ ଭାବ ଭାବନା, ସୂକ୍ଷ୍ମ ଆବେଦନକୁ କେତେ ମାର୍ମିକ ଭାବେ କବିଟିଏ ଫୁଟାଇପାରିଛି ତାହାହିଁ ଦର୍ଶାଇବା ସମାଲୋଚକର ଧର୍ମ ।

ଓଡଆ ସାହିତ୍ୟରେ ନକୁଳ ଚନ୍ଦ୍ର ସାହୁ ଜଣେ ଗୁଣମୁଗ୍ଧ ଉଚ୍ଚକୋଟୀର ଭାବନିଷ୍ଠ ସମାଲୋଚକ । ବହୁ ଶାସ୍ତ୍ରଦର୍ଶୀ ଏହି ଆଲୋଚକ ପାଶ୍ଚାତ୍ୟ ସାହିତ୍ୟ ଓ ଦର୍ଶନରେ ବେଶ୍ ଧୂରୀଣ । କବିତାର ମୂଲ୍ୟାୟନ କଲାବେଳେ ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟ ତତ୍ତ୍ୱର ମାନଦଣ୍ଡକୁ ଗ୍ରହଣ କରିଛନ୍ତି । ଆଲୋଚନାର ପୃଷ୍ଠଭୂମିକୁ ଶୁଷ୍କ ଗଦ୍ୟମୟ ନକରି ସେ ରସମୟ ଓ କାବ୍ୟିକ କରିଛନ୍ତି । ଶୈଳୀ ତାଙ୍କର କାବ୍ୟମୟ ଚିତ୍ରିତ ଓ ପ୍ରାଣବାନ । ଯେ କୌଣସି କବିର ଅଂର୍ତଦୃଷ୍ଟିକୁ ଭେଦକରି ତାର କାବ୍ୟ ଆବେଦନର ମର୍ମସ୍ଥଳକୁ ଆବିଷ୍କାର କରିବାରେ ନକୁଳବାବୁ ସିଦ୍ଧହସ୍ତ । ସୃଷ୍ଟିର ସ୍ନାୟୁ ଓ ଶବ୍‌ଦର ଆତ୍ମାରେ ଯେଉଁ ଆନ୍ତର୍ଜାତିକ ସାହିତ୍ୟର ପାଚିର୍ଯ୍ୟାକୁ ସେ ଓଡିଆ ପାଠକଙ୍କୁ ଭେଟି ଦେଇଥିଲେ । ତାହା ଆହୁରି ରସଘନ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ହୋଇଥିଲା, ଶବ୍‌ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି ଆଲୋଚନା ପୁସ୍ତକରେ । ଶବ୍‌ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି ରେ କୃତବିଦ୍ୟ କବି ଗିରିଜା କୁମାର ବଳିୟାରସିଂହଙ୍କ କାବ୍ୟିକ ଟେକ୍‌ନିକ୍‌ର ସାମଗ୍ରିକ ବିଶ୍ଳେଷଣ କରିଛନ୍ତି ନକୁଳ ବାବୁ । ଏହି ବିଶ୍ଳେଷଣ ପ୍ରକ୍ରୀୟାର ପରିବ୍ୟାପ୍ତ ଓ ବୃହତ୍ତର କାନଭାସ ସୃଷ୍ଟି କରିଛି ସଂଶିତ ପୁସ୍ତକ । ଏଥିରେ ଏଗାର ଜଣ କବିଙ୍କ କାବ୍ୟିକ ଅବଦାନର ସୂକ୍ଷ୍ମ ଆଲୋଚନା କରିଛନ୍ତି ନକୁଳ ବାବୁ । ନକୁଳ ବାବୁ କବିତାକୁ ଜୀବନର ବ୍ୟାଖ୍ୟା ରୂପେ ଅଭିହିତ କଲାବେଳେ ତାଙ୍କର କମନୀୟ ଆଲୋଚନାକୁ କବିତାର ରସମୟ ବ୍ୟାଖ୍ୟା ରୂପେ ଗ୍ରହଣ କରିବା ଅଧିକ ସମୀଚୀନ

ହେବ । ବହିର ନାନ୍ଦିପାଠରେ ନକୁଳ ବାବୁ ଘୋଷଣା କରନ୍ତି "ବହିଟି ଉତ୍କଳୀୟ ସମକାଳ କାବ୍ୟିକ ସଂସ୍କୃତିର ଖଣ୍ଡିଏ ପ୍ରାମାଣିକ ଗ୍ରନ୍ଥ । ଓଡିଆ କାବ୍ୟିକ ସମୃଦ୍ଧିର ଅଥଳ ଚିତ୍ର ।" ସମାଲୋଚକଙ୍କ ଏହି ଘୋଷଣାକୁ ପୁସ୍ତକଟି ସିଦ୍ଧ କରିଛି, କରିଛି ମହିମାମଣ୍ଡିତ ।

ନକୁଳ ବାବୁ କାୟମନୋବାକ୍ୟରେ ଜଣେ କବି, ତାପରେ କଥାକାର ଏବଂ ସର୍ବୋପରି ଜଣେ ଅନନ୍ୟ ସମାଲୋଚକ । ତାଙ୍କର ପ୍ରତିଟି ସୃଷ୍ଟି ଲାଳିତ୍ୟପୂର୍ଣ୍ଣ, କାବ୍ୟମୟ ଓ ସୌନ୍ଦର୍ଯ୍ୟ ପୂରିତ । ଏହି ପୁସ୍ତକ ଦୁଇଟି ତାର ଅମୃତମୟ ଦୃଷ୍ଟାନ୍ତ । ନକୁଳବାବୁଙ୍କ ସାରସ୍ୱତ ଫସଲର ମହନୀୟ ସ୍ମାରକୀ ଅନୁଭବର ମହିମ୍ନ ପ୍ରକାଶ ରୂପେ ଏହା ଓଡିଆ ସାରସ୍ୱତ ଜଗତରେ ଚିର ଦେଦୀପ୍ୟମାନ ।

# ଆଧୁନିକ ସାହିତ୍ୟ ସଂପାଦନାର ଉପକରଣ ଓ ଓଡିଆ ସାହିତ୍ୟ ପରିପ୍ରେକ୍ଷୀରେ ଏ ସକଳର ବ୍ୟବହାର

ସାହିତ୍ୟ ସଂପାଦନା ଏକ କଳା, ଏକ ତତ୍ତ୍ୱ, ଏକ ସଂଭାବନା । ଯା'ମଧ୍ୟରେ ସାରସ୍ୱତ ଧାରା, ଇତିହାସ ଓ ସର୍ଜନା ଶୁଚିଶୁଭ୍ର ପ୍ରକାଶରେ ବିମଣ୍ଡିତ ହୁଏ । ଉନ୍ମୋଚିତ ହୁଏ ସାହିତ୍ୟର ନୂତନ ଦିଗ ଓ ଦିଗନ୍ତ । ଅନୁଶୀଳନ, ଅଧ୍ୟୟନ ଓ ସତ୍ୟାନୁସନ୍ଧାନ ସାହିତ୍ୟ ରାଜ୍ୟର ବର୍ଦ୍ଧିତ ଜ୍ଞାନକୋଷକୁ ସରଳ ସାବଲୀଳ ଓ ମହିମା ମଣ୍ଡିତ କରେ । ସାହିତ୍ୟର ବିଭିନ୍ନ ବାଦ, ବିଭିନ୍ନ ତତ୍ତ୍ୱ, ଚିନ୍ତା ଓ ଚେତନାର ଧାରାକୁ ଋଦ୍ଧିମନ୍ତ କରିଥିଲା ବେଳେ ସେଗୁଡିକୁ ପୃଷ୍ଠଭୂମି ଓ ଇତିହାସ ସହିତ ଯୋଡି ନୂତନ ବିଶ୍ୱାସଯୋଗ୍ୟ ସଂଜ୍ଞା ପ୍ରଦାନରେ ସଂପାଦକର ଭୂମିକା ପ୍ରଣିଧାନଯୋଗ୍ୟ । ପାଠକ, ବିଭିନ୍ନ ବୁଦ୍ଧିଜୀବୀ ଗୋଷ୍ଠୀ ଓ ସାହିତ୍ୟର ବିଭିନ୍ନ ପ୍ରାରୂପକୁ ସମକାଳୀନ ସ୍ଥିତିରୁ ଉଦ୍ଧାର କରି ଯୋଡିବାର ଆୟାସସାଧ୍ୟ ଉଦ୍ୟମ କଲାବେଳେ ସଂପାଦକଟିଏ କେତେ ଘର୍ମାକ୍ତ, ଲହୁଲୁହାଣ ଓ ମାନସିକ ନିର୍ଯ୍ୟାତନାର ଶିକାର ହୁଏ ତାହା ବୁଝିବା ଯେତିକି କଷ୍ଟକର ଶବ୍‌ଦରେ ବ୍ୟକ୍ତ କରିବା ସେତିକି କଷ୍ଟସାଧ୍ୟ । ଏହି କଷ୍ଟସାଧ୍ୟ ଅନୁଭୂତିକୁ ନିଜସ୍ୱ ଭିତ୍ତିରେ ପରଖିବାର ସୂକ୍ଷ୍ମ ପ୍ରଚେଷ୍ଟା ଶଂସିତ ଆଲୋଚନାର ବିଷୟ ପ୍ରସ୍ଥ ।

ଭାଷାକୁ ଚିରଦିନ ସାହିତ୍ୟ ଅନୁସରଣ କରେ । ସାହିତ୍ୟ ମାଧ୍ୟମରେ ସଂରଚନାର ବିଭିନ୍ନ ବିଭାବ ପ୍ରସ୍ଫୁଟିତ ଓ ଜୀବନ୍ତ ହୋଇଥାଏ । ଭାଷା ସାହିତ୍ୟର ବିବର୍ତ୍ତନ ଦେଇ ସମୟାନୁକୂଳ ସୃଷ୍ଟି ସମାଜ ଓ ଜୀବନକୁ ଋଦ୍ଧିମନ୍ତ କରେ । ପାଠକର ପ୍ରାଣଚର୍ଯ୍ୟାରେ ଲେଖକର ସଂବେଦନଶୀଳ ସୂକ୍ଷ୍ମାନୁଭୂତିର ତରଙ୍ଗ ସୃଷ୍ଟି କରି ଜୀବନ୍ମୟ ଭାବାବେଗ ଏବଂ ଏକ ମହତ୍ତର ଜୀବନ ଯାପନ ଉଦ୍ଦେଶ୍ୟରେ ଦିଗ୍‌ନିର୍ଦ୍ଦେଶ କରିବା ସଂପାଦକର କାର୍ଯ୍ୟ । ଏହି କାର୍ଯ୍ୟର ପରମ ସହାୟକ ସତ୍ୟାନୁସନ୍ଧାନ ଓ ମେଦିନୀଦୃଷ୍ଟି । ଏପରି ଏକ ମିଳିତ ପ୍ରଚେଷ୍ଟା ମଧ୍ୟରେ କିପରି ସଂଗଠିତ ହୁଏ ସାହିତ୍ୟ ସଂପାଦନାର ପରମସୂତ୍ର ଏହାହିଁ ଆଶ୍ଚର୍ଯ୍ୟଜନକ । ଏହି ଆଶ୍ଚର୍ଯ୍ୟଜନକ ଦୁନିଆରେ ବିଚରଣ କରୁଥିବା ଅନେକ ଅନୁସନ୍ଧିତ୍ସୁ ମଣିଷମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଅଜାଣତରେ ମୁଁ ଯେ ଏ ଭିତରେ ପ୍ରବେଶ କରିଛି ଏହା ଆହୁରି ଆଶ୍ଚର୍ଯ୍ୟକର । ଏହି ଆଶ୍ଚର୍ଯ୍ୟକର ବ୍ୟାପାରକୁ ସାର୍ବଜନୀନ ଭାବ ଆବେଦନ ପ୍ରଦାନ କରିବା ହିଁ ଏହି ଆଲୋଚନାର ପ୍ରାଣଭୂମି ।

ଶଂସିତ ବିଷୟ ଖୁବ୍ ଜଟିଳ ଓ ଅନୁଭୂତିଲବ୍ଧ । ଗଛରେ ଫୁଲ ଫୁଟେ ପ୍ରଜାପତି ଆକୃଷ୍ଟ ହୁଏ କିନ୍ତୁ ଗଛ ନିଜରବାସ୍ନା ପ୍ରତି ଉଦାସୀନ ଥାଏ । କସ୍ତୁରୀମୃଗ ଜାଣିନଥାଏ କସ୍ତୁରୀ ଗନ୍ଧର ମର୍ମସ୍ଥଳ । ସେମିତି ଅନୁସନ୍ଧିତ୍ସୁ ଗବେଷକ ସଂପାଦନାରେ ମଗ୍ନଥାଏ ଜାଣିପାରେନା କାର୍ଯ୍ୟକାରଣର ସମାବେଶ । ସେ ଅନେକ ଉପକରଣ, ସୂତ୍ର ଧରି ଅଗ୍ରସର ହୁଏ କିନ୍ତୁ ସେ ସଂପର୍କରେ ପ୍ରଶ୍ନ କଲେ ସବୁକିଛି ଗୋଳମାଳ ହୋଇଯାଏ । ସେ ଯା ହେଉ ଏହି ଅନୁଭୂତିଲବ୍ଧ ସମସ୍ୟା ସମୂହକୁ ଏହି ପରିପ୍ରେକ୍ଷୀରେ ପ୍ରକାଶାଲୋକ ଦେଖାଇବାର ପ୍ରଚେଷ୍ଟା କରାଯାଉ ।

**ସାହିତ୍ୟ ସଂପାଦନାର ଉପକରଣ :** ସାହିତ୍ୟ ସଂପାଦନା କାର୍ଯ୍ୟରେ ସାହାଯ୍ୟରେ ଆସୁଥିବା ଉପକରଣଗୁଡିକ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ ।

୧. ମୁଖ୍ୟ ଉପକରଣ

୨. ସହଯୋଗୀ ଉପକରଣ

**(୧)ମୁଖ୍ୟ ଉପକରଣ :** ମୁଖ୍ୟ ଉପକରଣ ରୂପେ ନିମ୍ନ ଗୁଡିକୁ ଚିହ୍ନିତ କରାଯାଇପାରେ ।

(କ) ମୂଳ ପାଣ୍ଡୁଲିପି (ପ୍ରକାଶିତ ରଚନାର / ଅପ୍ରକାଶିତ ରଚନାର)

(ଖ) ପତ୍ର ପତ୍ରିକାରେ ପ୍ରକାଶିତ ଉପାଦାନ

(ଗ) ପୁସ୍ତକର ବିଭିନ୍ନ ସଂସ୍କରଣ ।

## (କ) ମୂଳ ପାଣ୍ଡୁଲିପି :

ପାଣ୍ଡୁଲିପି ମୁଖ୍ୟତଃ ଲେଖକ ଦ୍ୱାରା ପ୍ରସ୍ତୁତ ବା ଲେଖକ ନିର୍ଦ୍ଦେଶରେ ପ୍ରସ୍ତୁତ ହୋଇଥାଏ । ଲେଖକଙ୍କ ତିରୋଧାନ ପରେ ଅନ୍ୟ ଜଣକଦ୍ୱାରା ମଧ୍ୟ ପ୍ରସ୍ତୁତ ହୋଇଥାଏ । ପାଣ୍ଡୁଲିପି ଲେଖକଙ୍କ ଜୀବଦ୍ଦଶାରେ ବା ମୃତ୍ୟୁ ପରେ ପୁସ୍ତକ ଭାବରେ ମୁଦ୍ରିତ ହୋଇ ପ୍ରକାଶିତ ହୋଇଥାଏ । ଏହି ସମସ୍ତ ଘଟଣାକ୍ରମକୁ ଅନୁଧ୍ୟାନ କରିବା ସଂପାଦକର ପ୍ରଧାନ କର୍ତ୍ତବ୍ୟ । ଉପର୍ଯ୍ୟୁକ୍ତ ଚାରୋଟି ଅବସ୍ଥାରେ ପ୍ରସ୍ତୁତ ପାଣ୍ଡୁଲିପିକୁ ବିଭିନ୍ନ ମାନଦଣ୍ଡରେ ସଂପାଦକକୁ ଗ୍ରହଣ କରିବାକୁ ପଡିବ । ପାଣ୍ଡୁଲିପି ପ୍ରସ୍ତୁତି ଅନୁସାରେ ପାଠର ଗୁରୁତ୍ୱ ଓ ମୂଲ୍ୟ ନିର୍ଦ୍ଧାରିତ ହୋଇଥାଏ ।

(i) ଲେଖକଙ୍କ ଦ୍ୱାରା ପ୍ରସ୍ତୁତ ପାଣ୍ଡୁଲିପିକୁ ମୌଳିକ ଉପାଦାନ ରୂପେ ଗ୍ରହଣ କରାଯାଇଥାଏ । ଲେଖକର ସ୍ୱହସ୍ତ ଲିଖିତ ପାଣ୍ଡୁଲିପି ଉପଲବ୍ଧ ହେଲେ ସଂପାଦନର ପ୍ରୟୋଜନୀୟତା ବିଶେଷ ନଥାଏ । ବିଚାର ବିଶ୍ଳେଷଣ ବ୍ୟତିରେକେ ପାଠଚୟନ ବା ପାଠ ସଂଶୋଧନର କୌଣସି ଆବଶ୍ୟକତା ନଥାଏ । ମୂଳ ପାଣ୍ଡୁଲିପି ଅଧିକାଂଶ କ୍ଷେତ୍ରରେ ଦୁର୍ଲ୍ଲଭ ଓ ଦୁଷ୍ପ୍ରାପ୍ୟ ହୋଇଥିବାରୁ ସଂପାଦକକୁ ସମୟ କ୍ରମେ ଲିପିବଦ୍ଧ ହୋଇଆସୁଥିବା

ପ୍ରତିଲିପି ଉପରେ ହିଁ ନିର୍ଭର କରିବାକୁ ପଡିଥାଏ । ପ୍ରତିଲିପିର ପ୍ରାଚୀନତାହିଁ ଶୁଦ୍ଧତାର ପରିମାପକ ରୂପେ ଗ୍ରହଣ କରାଯାଉଥିବା ଦୃଷ୍ଟିକୋଣକୁ ବିଜ୍ଞାନ ସମ୍ମତ କୁହାଯାଇନପାରେ । ସଂପାଦକ ପାଣ୍ଡୁଲିପିର ଶୁଦ୍ଧପାଠ ପ୍ରକାଶ ଦିଗରେ ଯତ୍‌ପରୋନାସ୍ତି ପ୍ରଚେଷ୍ଟା କରିଥାଏ ।

(ii) ଲେଖକଙ୍କ ନିର୍ଦ୍ଦେଶରେ ଅନ୍ୟଦ୍ୱାରା ପ୍ରସ୍ତୁତ ପାଣ୍ଡୁଲିପିରେ ପ୍ରସ୍ତୁତକାରୀଙ୍କ ମାନସିକ ଚେତନାର ସୂକ୍ଷ୍ମ ପ୍ରଭାବ ପରିଲକ୍ଷିତ ହୋଇଥାଏ । ଏହି ପ୍ରସଙ୍ଗରେ ଲେଖକଙ୍କ ଅନ୍ୟାନ୍ୟ କୃତି ସହିତ ଏହାକୁ ତୁଳନା କଲେ ଏହାର ଭିନ୍ନତା ପ୍ରମାଣିତ ହୁଏ । ଏଥିରେ ଲେଖକଙ୍କ ମୌଳିକତା ପ୍ରସ୍ତୁତକାରୀଙ୍କ ଅନୁପ୍ରବେଶ ଦ୍ୱାରା ଆଂଶିକ କ୍ଷୁଣ୍ଣ ହେବାର ସଂଭାବନା ଦେଖାଯାଏ । ଏହି ବିଷୟକୁ ସଂପାଦକ ଯତ୍ନ ସହକାରେ ଅନୁଧାନ କରିବା ଉଚିତ ଏବଂ ପ୍ରକ୍ଷିପ୍ତ ଅଂଶର ଆବିଷ୍କାର ଓ ତାର ବହିଷ୍କରଣ ନିତାନ୍ତ ଜରୁରୀ ।

(iii) ଲେଖକଙ୍କ ଜୀବଦ୍ଦଶାରେ ପ୍ରକାଶିତ ପୁସ୍ତକରେ ବାହ୍ୟପ୍ରଭାବ ଖୁବ୍ କମ୍ ଥିବାର ଦେଖାଯାଏ । ଯଦିବା କିଛି ଦୃଷ୍ଟିଗୋଚର ହୁଏ ତାକୁ ଲେଖକଙ୍କ ଅନୁମୋଦିତ ସୃଷ୍ଟିକର୍ମ ରୂପେ ଗ୍ରହଣ କରି ନେବାରେ ଅସୁବିଧା କିଛି ନାହିଁ । ଏଥିରେ ପାଣ୍ଡୁଲିପିଟି ଲେଖକଙ୍କ ଦ୍ୱାରା ଡକାଯାଇ ଅନ୍ୟଦ୍ୱାରା ଲିଖିତ ଅଥଚ ଲେଖକଙ୍କ ଦ୍ୱାରା ସଂଶୋଧିତ ହୋଇନାହିଁ । ଏପରି ଏକ ପାଣ୍ଡୁଲିପି ନିକଟରେ ଏହି ସଂପାଦକର ହସ୍ତଗତ ହୋଇଛି । ବୃନ୍ଦାବନ ନାଥଶର୍ମାଙ୍କ ଗ୍ରନ୍ଥାବଳୀ ସଂପାଦନା କଲାବେଳେ ମୁଁ ବୃନ୍ଦାବନଙ୍କ ସମସ୍ତ ଲେଖା ସଂଗ୍ରହର ଉଦ୍ୟମ କରିଥିଲି । ଏହି ସମୟରେ ବୃନ୍ଦାବନଙ୍କ ନାତି ତାଙ୍କର ଏକ ଅପ୍ରକାଶିତ ପାଣ୍ଡୁଲିପି ମୋତେ ପ୍ରଦାନ କରନ୍ତି । ଏହାଥିଲା 'ସାହିତ୍ୟ ସେବକର ଚିନ୍ତାଧାରା' ଶୀର୍ଷକରେ ସହକାର ଓ ଅନ୍ୟାନ୍ୟ ପତ୍ର ପତ୍ରିକାରେ ପ୍ରକାଶିତ ରଚନାବଳୀର ଅପ୍ରକାଶିତ ଅଂଶବିଶେଷ । କ୍ଷୁଦ୍ର ନିବନ୍ଧ ପରି ଅନେକ ରଚନା ଏଥିରେ ସନ୍ନିବିଷ୍ଟ । ପାଣ୍ଡୁଲିପିଟି ପରୀକ୍ଷା କରିବାରେ ଦେଖାଗଲା ଏଥିରେ ତିନିଜଣଙ୍କ ହସ୍ତାକ୍ଷର ବିଦ୍ୟମାନ । କିଛି ଲେଖା ଲେଖକଙ୍କର, ଅନ୍ୟଗୁଡିକ ଲେଖକଙ୍କ ଦ୍ୱାରା ଡକାଯାଇଛି ଏବଂ ତାଙ୍କର ଦୁଇଜଣ ବନ୍ଧୁ ଲିପିବଦ୍ଧ କରିଛନ୍ତି । ବଂଧୁମାନଙ୍କ ଦ୍ୱାରା ଲିଖିତ ଅଂଶ ସଂଶୋଧନ କରିବାର ଅବକାଶ ଲେଖକ ପାଇନାହାନ୍ତି । ଏହି ପାଣ୍ଡୁଲିପିଟି ସମ୍ପାଦନା କଲାବେଳେ ଏହି ସଂପାଦକ ସତର୍କତାର ସହିତ ଅନୁଧାନ କରି ଜାଣିଛି ପାଣ୍ଡୁଲିପିର ଲେଖକଙ୍କ ଦ୍ୱାରା ପ୍ରସ୍ତୁତ ଓ ଅନ୍ୟଦ୍ୱାରା ପ୍ରସ୍ତୁତ ଅଂଶ ଭିତରେ ସାମାନ୍ୟ ଶୈଳୀଗତ ବୈସାମ୍ୟ ବିଦ୍ୟମାନ । ଏହି ପ୍ରସଙ୍ଗରେ ଅନ୍ୟ ଏକ ଦୃଷ୍ଟାନ୍ତ ହେଲା "ଆତ୍ମଜୀବନୀ : ପଣ୍ଡିତ ନୀଳକଣ୍ଠ ଦାଶ" ଓ "ଜୀବନ ପଞ୍ଜିକା : ଚିନ୍ତାମଣି ମହାନ୍ତି" । ଏହି ପୁସ୍ତକ ଦ୍ୱୟରେ ଲେଖକମାନଙ୍କର ବୟସାଧିକ୍ୟ ଯୋଗୁଁ ଅନେକ ତଥ୍ୟଗତ ଭ୍ରାନ୍ତି ଦୃଷ୍ଟିଗୋଚର ହୁଏ । ସମୟ, ଚରିତ୍ରମାନଙ୍କ ନାମ ଓ ଘଟଣା କ୍ରମରେ ବୈଷମ୍ୟ ଏହି ପୁସ୍ତକ ଦୁଇଟିରେ ବିଦ୍ୟମାନ । ଉପଯୁକ୍ତ ସଂପାଦନା ଅଭାବରୁ ଏହି ପୁସ୍ତକଗୁଡିକ ଭୁଲ

ତଥ୍ୟ ପରିବେଷଣ କରିଛନ୍ତି । ଘଟଣାର କ୍ରମାନ୍ୱୟତା ଖଣ୍ଡିତ, ଏ ବର୍ଷର ଘଟଣା ଅନ୍ୟ ବର୍ଷରେ ଲିଖିତ ହୋଇଛି । ଫଳରେ ସଂପାଦନା ଅଭାବରୁ ଭୁଲ୍ ତଥ୍ୟ ସମାଜକୁ ଆସୁଛି । ସଂପାଦନାରେ ନିଷ୍ଠାପରତା ଓ ସତ୍ୟାନୁସନ୍ଧାନର ଅଙ୍ଗୀକାରବଦ୍ଧତା ହିଁ ଏସବୁ ପୁସ୍ତକକୁ ତଥ୍ୟନିଷ୍ଠ କରିପାରିଥାନ୍ତା । ଯାହାର ଅଭାବରେ ଭୁଲତଥ୍ୟ ସୃଷ୍ଟି କରୁଛି ଅନ୍ଧ ପରଂପରା ଓ ବାଟବଣା ହେଉଛି ସାହିତ୍ୟ ।

(iv) ଲେଖକଙ୍କ ତିରୋଧାନ ପରେ ପ୍ରସ୍ତୁତ ପାଣ୍ଡୁଲିପିରେ ସଂପାଦକ, ସଂକଳକ ବା ପ୍ରକାଶକଙ୍କ ହାତର କାରିଗରୀ ଓ ପରୋକ୍ଷ ପ୍ରଭାବ ସୃଷ୍ଟିକୁ ଭିନ୍ନ ଏକ ରୂପ ଦିଏ । ଯାହା ଘଟିଛି ଫକୀରମୋହନଙ୍କ ଆତ୍ମ ଚରିତରେ ମୋହିନୀ ମୋହନଙ୍କ ଦ୍ୱାରା ଏବଂ ଗୋପବନ୍ଧୁଙ୍କ ରଚନାରେ ରାଧାନାଥ ରଥଙ୍କ ଦ୍ୱାରା । ଏହି ପର୍ଯ୍ୟାୟରେ ପାଣ୍ଡୁଲିପିର ମୌଳିକତା ରକ୍ଷା ସଂପାଦକର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ପାଣ୍ଡୁଲିପିଟି ଲେଖକଙ୍କ ତିରୋଧାନ ପରେ ନିଜର ଆତ୍ମୀୟ ତଥା ଜଣେ ବୁଦ୍ଧିଜୀବୀ ଲେଖକଦ୍ୱାରା ପ୍ରକାଶିତ ହେବା ଅଧିକ ବିପଦପୂର୍ଣ୍ଣ । ଏମାନେ ଲେଖକଙ୍କୁ ସର୍ବଶ୍ରେଷ୍ଠ ସାରସ୍ୱତ ସମ୍ମାନ ପ୍ରଦାନ କରିବାପାଇଁ ପାଣ୍ଡୁଲିପିର ଦୁର୍ବଳ ସ୍ଥାନଗୁଡିକ (ତାଙ୍କ ମତରେ) କାଟି ନୂତନ କିଛି ସଂଯୋଜିତ କରିଦିଅନ୍ତି । ଯା'ଫଳରେ ଅନ୍ତର୍ନିହିତ ଭାବସ୍ରୋତ ବ୍ୟାହତ ହୁଏ । ବାହାରକୁ ସୁନ୍ଦର ଦେଖାଯାଉଥିବା ଅଂଶଟି ବିକଳାଙ୍ଗ ବା ବର୍ଣ୍ଣଶଙ୍କର ରୂପେ ଉଭାହୁଏ । ଏଠାରେ ପ୍ରସଙ୍ଗକ୍ରମେ ଏହି ସଂପାଦକର ସଂପାଦିତ ମୌଲାନା ମୁସ୍ତକିମ୍ ଖାଁ ଗ୍ରନ୍ଥାବଳୀ (ଓଡିଶା ସାହିତ୍ୟ ଏକାଡେମୀ-୨୦୧୪) କୁ ଅନୁଧ୍ୟାନ କରାଯାଇପାରେ । ମୁସ୍ତକିମ୍ ଖାଁଙ୍କ ପୁତ୍ର ବିଶିଷ୍ଟ କବି କୁମାର ହସନ ଏହି ଗ୍ରନ୍ଥାବଳୀ ସଂକଳନ ସମୟେ ସଂପାଦକକୁ ବିଶେଷ ସାହାଯ୍ୟ କରିଛନ୍ତି । ମୁସ୍ତକିମ୍ ଖାଁ ପ୍ରାଚୀନ କବି । ରସ, ଲୀଳା, ସୁଆଙ୍ଗ, ଦାୟିକା ରଚନାରେ ସେ ସିଦ୍ଧହସ୍ତ । ତାଙ୍କ ରଚନାରେ ଲୋକ ଶୈଳୀ ସହିତ ଶିଷ୍ଟ ସାହିତ୍ୟର ସଂଶ୍ଳେଷ ଏକ ଉଚ୍ଚକୋଟିର ସାରସ୍ୱତ ଧାରା ନିର୍ମାଣରେ ସଫଳ ହୋଇଛି । ପାଣ୍ଡୁଲିପି ପ୍ରସ୍ତୁତ ସମୟରେ କୁମାର ହସନ ଅନେକତ୍ର ନିଜସ୍ୱ ଶୈଳୀର ଉପଯୋଗ କରିଥିବାର ଦେଖାଗଲା । ସଂପାଦକ କୁମାର ହସନଙ୍କ ସହିତ ଆଲୋଚନା କରି ଯଥା ସମ୍ଭବ ମୁସ୍ତକିମ୍‌ଙ୍କ ଶୈଳୀକୁ ମୌଳିକ ଭାବରେ ଗ୍ରନ୍ଥାବଳୀରେ ସ୍ଥାନ ଦେଇଥିଲା ।

'ପାଣ୍ଡୁଲିପି' ହସ୍ତଗତ ହେଲାପରେ ତାର ପରୀକ୍ଷଣ ଅପରିହାର୍ଯ୍ୟ । ଉପରୋକ୍ତ ଚାରୋଟି ଅବସ୍ଥା ଅନୁସାରେ ପାଣ୍ଡୁଲିପିର ଗୁରୁତ୍ୱ ଓ ମୂଲ୍ୟ ନିର୍ଦ୍ଧାରଣ କରାଯାଇପାରେ । ଲେଖକଙ୍କ ନିର୍ଦ୍ଦେଶରେ ଅନ୍ୟଜଣେ ପ୍ରସ୍ତୁତ କରିଥିବା ପାଣ୍ଡୁଲିପିକୁ ଦୁଇଟି ପର୍ଯ୍ୟାୟରେ ଅନୁଧ୍ୟାନ କରାଯାଇପାରେ -

(୧) ଲେଖକଙ୍କ ନିର୍ଦ୍ଦେଶରେ ଅନ୍ୟଦ୍ୱାରା ପ୍ରସ୍ତୁତ ଅଥଚ ଲେଖକ ସ୍ୱୟଂ ସଂଶୋଧନ କରିଥିବା ।

(୨) ଲେଖକଙ୍କ ଦ୍ୱାରା ସଂଶୋଧିତ ଅଥଚ ଈପ୍‌ସିତ ମାନରକ୍ଷା କରିପାରିନଥିବା । ଏହି ପ୍ରସଙ୍ଗରେ ଶୈଳବାଳା ଦାସଙ୍କ ମଧୁସୂଦନ ଜୀବନୀ "Life of Madhusudan Das" କୁ ଗ୍ରହଣ କରାଯାଇପାରେ । ଏଥିରେ ବୟସାଧିକ୍ୟ ଯୋଗୁଁ ଶୈଳବାଳା ପୁସ୍ତକପ୍ରତି ଉପଯୁକ୍ତ ନ୍ୟାୟ ଦେଇ ପାରିନାହାନ୍ତି । ଶୈଳବାଳା ଦାସଙ୍କ ପ୍ରସ୍ତୁତ Life of Madhusudan Das ପାଣ୍ଡୁଲିପିଟି ଦୀର୍ଘଦିନ ଅପ୍ରକାଶିତ ଅବସ୍ଥାରେ ଥିଲା । ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶଙ୍କ ସଂପାଦନାରେ ପ୍ରକାଶିତ Madhusudan Das his : The man and his Mission (୧୨୨୪) ପୁସ୍ତକରେ ପ୍ରଥମ ଥର ଏହା ପ୍ରକାଶିତ ହୋଇ ଲୋକଲୋଚନକୁ ଆସିଲା । ଏହି ପାଣ୍ଡୁଲିପିଟିରୁ ଅନେକ କୃତବିଦ୍ୟ ସାଧକ ମଧୁବାବୁଙ୍କ ଜୀବନୀର ଉତ୍କୃଷ୍ଟ ଅଂଶଗ୍ରହଣ କରି ନିଜ ପୁସ୍ତକକୁ ପୁଷ୍ଟ କରିଛନ୍ତି । ପ୍ରସଙ୍ଗ କ୍ରମେ ସୁରେନ୍ଦ୍ର ମହାନ୍ତିଙ୍କ 'କୁଳବୃଦ୍ଧ' ଓ 'ଶତାବ୍ଦୀର ସୂର୍ଯ୍ୟ' ଏବଂ ସୂର୍ଯ୍ୟନାରାୟଣ ଦାସଙ୍କ 'ଦେଶ ପ୍ରାଣ ମଧୁସୂଦନ' ପୁସ୍ତକକୁ ସ୍ମରଣ କରାଯାଇପାରେ । କିନ୍ତୁ କୌଣସି ଲେଖକ ଏହି ପାଣ୍ଡୁଲିପିର ପ୍ରକାଶନ ପାଇଁ ସାମାନ୍ୟତମ ଉଦ୍ୟମ କରିଥିବାର ଜଣାପଡେନାହିଁ । ଏହି ପ୍ରସଙ୍ଗକୁ ଉତ୍‌ଥାପନ କରିବାର ଉଦ୍ଦେଶ୍ୟ ହେଲା ତଥ୍ୟର ଉପଯୋଗ କରିବାକୁ ଆମର ସଂପାଦକଗଣ ବ୍ୟଗ୍ର କିନ୍ତୁ ତଥ୍ୟକୁ ସାର୍ବଜନୀନ ପ୍ରକାଶକୁ ଆଣିବା ପାଇଁ ପରାଙ୍‌ମୁଖ । ଏପରିକି ମୂଳ ଉପାଦନକୁ ଗୋପନ ରଖିବା, ନଷ୍ଟ କରିଦେବା ପ୍ରଭୃତି ଇତରଜନସୁଲଭ କାର୍ଯ୍ୟ ସଂପାଦନା କ୍ଷେତ୍ରକୁ କଳଙ୍କିତ କରେ । ନାମ ନନେଇ ଏଠି କୁହାଯାଇପାରେ ଜଣେ ଗତାୟୁ ବିଶିଷ୍ଟ ସାହିତ୍ୟିକ ତଥା ପ୍ରଫେସର ଉତ୍କଳ ଦୀପିକା- ୧୮୬୭,୧୮୬୮ ଦୁଇବର୍ଷର ସଂଖ୍ୟା ଲାଇବ୍ରେରୀରୁ ଗୋପନରେ ନେଇଯାଇଥିଲେ । ତାଙ୍କ ପୁତ୍ରର ମାର୍ଫତରେ ଏହି ଜାତୀୟ ସଂପତ୍ତି ରହିଛି । ଏହି ଲେଖକ ତାଙ୍କ ପୁତ୍ରକୁ ବାରଂବାର ଅନୁରୋଧ କରିବା ସତ୍ତ୍ୱେ ଏବଂ ବିକ୍ରୟ ସୂତ୍ରରେ ଦୀପିକାକୁ ନେବାକୁ ପ୍ରସ୍ତାବ ଦେବା ସତ୍ତ୍ୱେ ସେ ଆଜି କାଲି ଆସନ୍ତୁ କହି ସମୟ ଗଡେଇଲେ । ଏପରିକି ସେ ଏହି ଲେଖକ ଅଧ୍ୟାପକ ନୁହେଁ ଏବଂ ଦେବଗଡରୁ ଆସିଛି ବୋଲି ଜାଣିବା ପରେ କେବଳ ସେହି ସଂଖ୍ୟା ଗୁଡିକୁ ଥରେ ମାତ୍ର ଦେଖାଇଥିଲେ । ଏପରି ଅନେକ ମୂଳ ଉପାଦାନ ଅନ୍ଧାର ମଧ୍ୟରେ ପ୍ରକାଶର ବାଟ ଖୋଜୁଛି । ଆମର କିଛି ସଂପାଦକଙ୍କ ସ୍ୱାର୍ଥପର କାର୍ଯ୍ୟ ଉପାଦନ ଗୁଡିକୁ ନଷ୍ଟ ହେବାରେ ସାହାଯ୍ୟ କରୁଛି ଏବଂ ଓଡିଶାର ସାରସ୍ୱତ ଦାରିଦ୍ର୍ୟକୁ ବିଜ୍ଞାପିତ କରୁଛି । ଏହି ପର୍ଯ୍ୟାୟରେ ସୁଧାକର ପଟ୍ଟନାୟକଙ୍କ 'ସଂବାଦପତ୍ରରୁ ଓଡିଶାର କଥା' ପୁସ୍ତକକୁ ଏକ ବିରଳ ବ୍ୟତିକ୍ରମ ରୂପେ ଗ୍ରହଣ କରାଯାଇପାରେ । ସଂପାଦକ ମାନେ ଅଧିକ ନିଷ୍ଠାପର ନିଃସ୍ୱାର୍ଥପର ଓ ନିରପେକ୍ଷ ହେଲେହିଁ ସାହିତ୍ୟ ସଂପାଦନାର ଧାରା ଉଜ୍ଜ୍ୱଳ ଓ ସତ୍ୟନିଷ୍ଠ ହେବ ।

## (ଖ) ପତ୍ର ପତ୍ରିକାରେ ପ୍ରକାଶିତ ଉପାଦାନ :

ପତ୍ର ପତ୍ରିକାରୁ ସଂଗୃହୀତ ଉପାଦାନକୁ ପ୍ରାଥମିକ ସୂତ୍ର ରୂପେ ଗ୍ରହଣ କରାଯାଇଥାଏ । ପ୍ରକୃତରେ ପାଣ୍ଡୁଲିପି ଓ ତାର ସଂଶୋଧିତ ପ୍ରୁଫ୍ ସମୂହକୁ ପ୍ରକାଶିତ ଉପାଦାନ ସହିତ ତୁଳନା ନକଲେ ଲେଖାର ମୌଳିକତା ପ୍ରତିପାଦିତ ହୋଇପାରିବ ନାହିଁ । ଏଥିରେ ଲେଖାଟି ଲେଖକ ହସ୍ତରୁ ସଂପାଦକ, ସଂପାଦକ ହସ୍ତରୁ କଂପୋଜିଟର ଓ ପ୍ରୁଫରିଡରଙ୍କ ହାତ ଦେଇ ପ୍ରକାଶିତ ହୁଏ । ଏଣୁ ଏଥିରେ ଲେଖକର ଲେଖାଟି କିଛିକାଂଶରେ ପରିବର୍ତ୍ତିତ ହେବାର ଆଶଙ୍କା ଦେଖାଯାଏ । ନୀଳମଣି ବିଦ୍ୟାରତ୍ନ ବା ବିଶ୍ୱନାଥ କରଙ୍କ ପରି ସଂପାଦକଙ୍କ ହାତରେ ଲେଖାଟି ପଡିଲେ ସଂଶୋଧିତ ଓ ପରିବର୍ତ୍ତିତ ରୂପ ଧାରଣକରି ପରିଚ୍ଛନ୍ନ ହୋଇଉଠେ । ଏ ପ୍ରସଙ୍ଗରେ ନୀଳମଣି ବିଦ୍ୟାରତ୍ନଙ୍କ ସଂବଲପୁର ହିତେଷିଣୀ (୭/୪୭) ୬.୪.୧୮୯୨ରେ 'ପଦ୍ୟ ପ୍ରକାଶ' ଶୀର୍ଷକ ବକ୍ତବ୍ୟକୁ ଏଠାରେ ଉଦ୍ଧୃତ କରାଯାଇପାରେ - "ହିତୈଷିଣୀରେ ସମୟେ ସମୟେ କେତେକ ପଦ୍ୟ ପ୍ରେରିତ ସ୍ତମ୍ଭରେ ସ୍ଥାନ ପାଇଥାଏ । ଯାହା ହୁଏତ ପ୍ରକୃତ ବିବେଚନାରେ ପ୍ରକାଶଯୋଗ୍ୟ ହୋଇ ନପାରେ । ସେପରି ପଦ୍ୟ ପ୍ରବନ୍ଧ ପ୍ରକାଶ ହେତୁ ସମୟତଃ କେହି କେହି ବିରକ୍ତ ହେଉଥିବେ । ବାସ୍ତବରେ ସେପରି ପଦ୍ୟ ପ୍ରକାଶ କରି ପତ୍ରିକାର ସ୍ଥାନ ନଷ୍ଟ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହଇ । କିନ୍ତୁ ଏ ଅଞ୍ଚଳର ଲୋକମାନେ ଓଡିଆ ଭାଷା ଭଲ ଜାଣୁ ନଥିବା ଏବଂ ରଚନା ଆଦି କାର୍ଯ୍ୟରେ ସେମାନଙ୍କ କେହି ଉତ୍ସାହଦାତା ନଥିବା ବିବେଚନାରେ ସେମାନଙ୍କ ଲିଖିତ ପ୍ରବନ୍ଧ ସବୁ ସେମାନଙ୍କର ଉତ୍ସାହ ଓ ପ୍ରବୃତ୍ତି ବୃଦ୍ଧି ଉଦ୍ଦେଶ୍ୟରେ ସମୟେ ସମୟେ ସଂଶୋଧିତ କରି ମୁଦ୍ରିତ କରିଥାଉଁ । ଯାହାହେଉ ଏତାଦୃଶ ପ୍ରବନ୍ଧ ଅଧିକ ପ୍ରକାଶ ନକରିବା ସମ୍ବନ୍ଧେ ଏଣିକି ଯଥା ସମ୍ଭବ ସତର୍କତା ଅବଲମ୍ବନ କରିବୁଁ ।"

ଏହି ପ୍ରସଙ୍ଗରେ ଉତ୍କଳସାହିତ୍ୟର ସଂପାଦକ ବିଶ୍ୱନାଥ କରଙ୍କ ସଂପାଦନା ଉଲ୍ଲେଖଯୋଗ୍ୟ । ସେ ଲେଖାକୁ ଗଭୀର ଭାବେ ଅଧ୍ୟୟନ କରି ଉପଯୁକ୍ତ ସଂଶୋଧନ ଓ ସଂପାଦନା ପରେ ଛାପିବାକୁ ଦିଅନ୍ତି । ଅନ୍ୟ ପକ୍ଷରେ ମୁକୁର ସଂପାଦକ ଲେଖକର ମୌଳିକତା ଅକ୍ଷୁଣ୍ଣ ରଖିବାରେ ବଦ୍ଧ ପରିକର । ଦୃଷ୍ଟାନ୍ତ ରୂପେ ଫକୀରମୋହନଙ୍କ ଉତ୍କଳସାହିତ୍ୟ (୧୬/୧୧) ଫାଲଗୁନ ୧୩୨୦ ରେ ପ୍ରକାଶିତ'ଧୂଳିଆବାବା' ଓ ମୁକୁର (୬/୭) ଆଶ୍ୱିନ ୧୩୨୦ ସଂଖ୍ୟାରେ ପ୍ରକାଶିତ 'ଡାକ୍ ମୁନ୍‌ସି' ଗଳ୍ପ ଦ୍ୱୟକୁ ଗ୍ରହଣ କରାଯାଇପାରେ । ପ୍ରଥମ ଗଳ୍ପଟି ବିଶ୍ୱନାଥ କରଙ୍କ ହାତରେ ପରିଚ୍ଛନ୍ନ ରୂପ ଗ୍ରହଣ କରିଥିଲେ ମଧ୍ୟ ଫକୀରମୋହନୀୟ ଶୈଳୀ ଆଂଶିକ ବିକଳାଙ୍ଗ ହୋଇଥିବାର ଅନୁମିତ ହୁଏ । ଦ୍ୱିତୀୟଟିରେ ବ୍ରଜସୁନ୍ଦର ଦାସଙ୍କ ହସ୍ତକ୍ଷେପହୀନତା ଫକୀରମୋହନ ଶୈଳୀକୁ ନିଜସ୍ୱ ଢଙ୍ଗରେ ପ୍ରତିଭାତ ହେବାର ସୁଯୋଗ ଦିଏ ।

ଡାକ ମୁନସି : "ହରି ସିଂ ସରକାରୀ କର୍ମରେ ବାହାଲ ହେବା ଦିନଠାରୁ ମଫସଲର ସାନ ବଡ ଅନେକ ପୋଷ୍ଟ ଅଫିସକୁ ବଦଳି ହୋଇ କର୍ମ ଇଞ୍ଜାମ-କରି ଆସିଲେଣି । ଆଜିକୁ ଦଶବରଶ ହେଲା କଟକ ସଦର ପୋଷ୍ଟ ଅଫିସରେ ବରାବର ରହି କର୍ମ କରୁଛନ୍ତି । ଭଲରୂପେ କର୍ମ କରିବାରୁ ପ୍ରମୋଶନ ପାଇଲେଣି, ବର୍ତ୍ତମାନ ସେ ହେଡ ପିୟନ୍ - ଦରମା ମାସକୁ ନଅ ଟଙ୍କା । କଟକ ସହରରେ ସବୁ ଜିନିସ କିଣା- ନିଆଁ ଟିକକ ପାଇଁ ଦିଆସିଲାଇଟା ମଧ୍ୟ ନ କିଣିଲେ ନୁହେଁ । ଅତି କଷ୍ଟରେ ଚଳି ସୁଦ୍ଧା ମାସକୁ ପାଞ୍ଚ ଟଙ୍କାରୁ ଊଣା ଖରଚ ପଡେ ନାହିଁ । କୌଣସି ରୂପେ ଘରକୁ ଚାରିଟଙ୍କା ନ ପଠାଇଲେ ନୁହେଁ । ଘରେ ସ୍ତ୍ରୀ ଆଉ ଆଠ ବରଷର ପୁଅ ଗୋପାଳ । ମଫସଲର ଜାୟଗା ଚାରିଟଙ୍କାରେ କୌଣସିରୂପେ ଟାଣଟୁଣ ହୋଇ ଚଳିଯାଏ । ସେଥିରୁ ପଇସାଏ ଊଣା ହେଲେ ଅଚଳ । ଗୋପାଳ ଅପର ପ୍ରାଇମେରୀ ସ୍କୁଲରେ ପଢେ । ସ୍କୁଲ ଦରମା ମାସକୁ ଦୁଇଅଣା - ସ୍କୁଲ ଦରମା ଛଡା ଆଜି ବଇ ଖଣ୍ଡେ କାଲି ସ୍ଲେଟ କାଗଜ ଏ ସବୁ ଜିନିସ କିଣିବାକୁ କେବେ କେବେ କିଛି କିଛି ବେଶି ଖରଚ ପଡେ । ଏପରି ଉପୁରି. ଖରଚ ପଡିଗଲେ ସେ ମାସରେ ଭାରି କଷ୍ଟ । ଦିନେ ଦିନେ ବୁଢାକୁ ଉପାସ ରହିଯିବାକୁ ହୁଏ । ଉପାସ ହେଉ ପଛେ ମୋ ଗୋପାଳଟି ପଢୁ ।" (ମୁକୁର - ୭/୬, ପୃ-୧୩୬)

ଧୂଳିଆ ବାବା : "ଦେଗାଁର ହନୁମାନ ଜୀ ପ୍ରତ୍ୟକ୍ଷ ଦେବତା- ସେ ତ କିଛି ଆଜିକାଲିକା କଳିଯୁଗର ଦେବତା ନୁହନ୍ତି- ସତ୍ୟଯୁଗରୁ ବିରାଜୁଅଛନ୍ତି । ମହନ୍ତ ମହାରାଜଙ୍କ ନାମ ହନୁମାନ ଦାସ, ତାଙ୍କର ବି ସେହିପରି ମହିମା- ବଡ ବଚନସିଦ୍ଧ ପୁରୁଷ ଥିଲେ । ଯାହାକୁ ଯାହା ଆଜ୍ଞା କରୁଥିଲେ, ତୁରନ୍ତ ଫଳି ଯାଉଥିଲା । ତାଙ୍କ ମହିମା କଥା ପୃଥିବୀ ଯାକ ଜାରି । ନାଗପୁର ମରହଟ୍ଟା ଫୌଜଦାର ସବୁ କଥାଶୁଣି ପାରି ତାଙ୍କୁ ଦର୍ଶନ କରିବାକୁ ଅଇଲା । ସକାଳ ଓଳିଆ ମହନ୍ତ ମହାରାଜ ଗୋଟାଏ କାନ୍ଥୁଡା ଉପରେ ବସି ଗଞ୍ଜେଇ ଟିପୁଥିଲେ- ଦୂରକୁ ଅନାଇ ଦେଲେ ଯେ ଗୋଟାଏ ଖୁବ୍ ବଡ ଦନ୍ତା ହାତୀ ଉପରେ ଅମାରି କସା, ତା ଉପରେ ପାଟଛତା ଉଡୁଛି, ଫୌଜଦାର ତା ଉପରେ ବସି ଆସୁଛି । ମହନ୍ତ ମହାରାଜ ଖାଲି ଏତିକି କହିଲେ, ହୁଁ- ଚେଲ୍ ବାବା କାନ୍ଥୁଡା ଚେଲ୍ । ଆଉକଣ କାନ୍ଥୁଡା ରହିପାରେ, ଚାଲିଲା । ତେଣୁ ଆସୁଛି ହାତୀ, ଏଣୁ ଯାଉଛି କାନ୍ଥୁଡା, ଅଧ ବାଟରେ ଭେଟାଭେଟି । ଫୌଜଦାର ଯେମିତି ଅନାଇ ଦେଇଛି, ଆଉ କଣ ହାତୀରେ ବସିପାରେ- ଝପକରି ହାତୀରୁ ଡେଇଁପଡି ଲମ୍‌ତମ୍ ଗୋଡତଳେ ପଡିଗଲା । ମହନ୍ତ ମହାରାଜ କଲ୍ୟାଣ କଲେ, ଜୀତେ ରହୋ - ଜୀତେ ରହୋ - ବଚ୍ଚା, ଉଠ-ଉଠ । ଫୌଜଦାର ଯେମିତି ଉଠିଛି - ସାଙ୍ଗେ ସାଙ୍ଗେ ତମ୍ବା ପାଟିଆରେ ବାରବାଟୀ ଜମି ଅକ୍ରା ସନନ୍ଦ କରିଦେଲା । ଏହି ମହନ୍ତ ଗାଦିରେ ବସିଥିଲେ - ବାର ଶ ବାର ବରଶ ବାର ମାସ ବାର ଦିନ । ସେ

ଥିଲେ ଇଚ୍ଛାମୟ ପୁରୁଷ, ଆଉ ପୃଥିବୀରେ ରହିବାକୁ ମନ ବଳିଲା ନାହିଁ - ଅଯୋଧାକୁ ଖବର ଗଲା । ହନୁମାନ ଗାଦିରୁ ଜଣେ ଚେଲା ଆସିଲେ, ଯାଙ୍କ ହାତରେ ଗାଦିଦେଇ ସ୍ୱର୍ଗକୁ ଚାଲିଗଲେ ।" (ଉତ୍କଳ ସାହିତ୍ୟ -୧୬/୧୧, ପୃ -୩୨୬)

ବିଶ୍ୱନାଥ କରଙ୍କ ସଂପାଦନା ରୀତିକୁ ତାଙ୍କ ସ୍ମୃତିଚାରଣ ଆଳରେ ଗୋପାଳଚନ୍ଦ୍ର ପ୍ରହରାଜ ସ୍ୱୀକାର କରନ୍ତି,- "ମୋର ପ୍ରଥମ ଲେଖା ଦେଖି ସେ ମୋତେ ସାହିତ୍ୟସାଧନା କ୍ଷେତ୍ରକୁ ସ୍ୱାଗତ ସମ୍ଭାଷଣ କଲେ ଓ କ୍ରମଶଃ ମୋ ପ୍ରବନ୍ଧମାନ ମୂଳରୁ ଶେଷ ପର୍ଯ୍ୟନ୍ତ ମୋ ଆଗରେ ପାଠକରି ସେମାନ ଇସ୍କୁଲ ପିଲାଙ୍କ ଏକ୍ସରସାଇଜ ବହିରେ ଲେଖା ସନ୍ଦର୍ଭମାନଙ୍କୁ ଶିକ୍ଷକମାନେ ସଂଶୋଧନାଦି କଲା ପରି ସଂଶୋଧନ, ସମ୍ମାର୍ଜନ, ପରିବର୍ତ୍ତନ ଓ ପରିବର୍ଦ୍ଧନ କରିଦେଉଥିଲେ । (ପୃ-୨୭୯) x x x x x x

"ମୁଁ ତାଙ୍କ ବଚନରେ ଉତ୍ସାହିତ ହୋଇ କାହାଣୀ ଲେଖିବାକୁ ଆରମ୍ଭ କଲି । ଏଠାରେ କହି ରଖିବା ଉଚିତ ଯେ, ମୁଁ ଜଣେ ଇଂରାଜୀ ଉଚ୍ଚଶିକ୍ଷାପ୍ରାପ୍ତ ଓଡିଆ ଯୁବକ ଥିଲି, ତଥାପି ମୋ ଲେଖାର ଇ, ଈ, ଉ, ଊ, ର, ଋ, ଶ, ଷ, ସ ଆଦି ବିଷୟରେ ଶତଶତ ବର୍ଣ୍ଣାଶୁଦ୍ଧି ଓ ବ୍ୟାକରଣ ଦୋଷଯୁକ୍ତ ପଦ ଓ ବାକ୍ୟ ଓ ପ୍ରୟୋଗମାନ ରହୁଥିଲା । ମୋ ଲିଖିତ ସନ୍ଦର୍ଭଗୁଡିକ ସେ ସହାସ୍ୟବଦନରେ ମୋ ଉପସ୍ଥିତିରେ ସଂଶୋଧନ କରିବା ପରେ ଉତ୍କଳ ସାହିତ୍ୟ ପତ୍ରିକାରେ ମୁଦ୍ରିତ ହେବାକୁ ଦେଉଥିଲେ (ପୃ-୨୮୦) ।" (ଉତ୍କଳ ସାହିତ୍ୟ ୩୮/୭, କାର୍ତ୍ତିକ -୧୩୪୨ : ସ୍ୱର୍ଗତ ବିଶ୍ୱନାଥକର, ଗୋପାଳଚନ୍ଦ୍ର ପ୍ରହରାଜ)

ପତ୍ରିକାରୁ ଉପାଦାନ ସଂଗ୍ରହ ସମୟେ ଛଦ୍ମନାମ ବା ବିନାନାମରେ ପ୍ରକାଶିତ ରଚନାଗୁଡିକର ପିତୃତ୍ୱ ନିର୍ଦ୍ଧାରଣ କଷ୍ଟକର ବ୍ୟାପାର । ଏହି ପ୍ରସଙ୍ଗରେ ବିଭିନ୍ନ ପତ୍ରପତ୍ରିକାରୁ ଆନୁସଙ୍ଗିକ ପ୍ରମାଣ ଯୋଗାଡ କରିବାକୁ ପଡିଥାଏ । ଓଡିଆ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ବହୁତ । ଉତ୍କଳ ଦୀପିକା, ସମ୍ବଲପୁର ହିତୈଷିଣୀ, ସଂବାଦବାହିକା ପ୍ରଭୃତି ପ୍ରାରମ୍ଭିକ ପର୍ଯ୍ୟାୟର ପତ୍ର ପତ୍ରିକାରେ ଅନେକ ସାରସ୍ୱତ କୃତି ବିନାନାମରେ ପ୍ରକାଶ ପାଉଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଲେଖକର ସଂକଳନରେ ପ୍ରକାଶ ପାଇବା ପରେ ବା ଅନ୍ୟ ଜଣେ ସମକାଳୀନ ଲେଖକ ବା ସଂପାଦକ ସୂଚନା ଦେବାପରେ ହିଁ ପ୍ରକୃତ ଲେଖକର ପରିଚୟ ମିଳୁଥିଲା । ବେଳେବେଳେ ଲେଖକର ସାରସ୍ୱତ ପ୍ରତିଭା, ଆଗ୍ରହ ଓ ଶୈଳୀକୁ ନେଇ ଲେଖାଟିର ପିତୃତ୍ୱ ନିର୍ଦ୍ଧାରଣ କରିବାକୁ ପଡେ । ଏପରି ଅନେକ ଦୃଷ୍ଟାନ୍ତ ପତ୍ରପତ୍ରିକା ପୃଷ୍ଠାରେ ସହଜଲଭ୍ୟ କିନ୍ତୁ ମୁଁ ନିଜେ ସମ୍ମୁଖୀନ ହୋଇଥିବା ଅନେକ ସମସ୍ୟା ଭିତରୁ ଦୁଇଟି ଏଠାରେ ପ୍ରାସଙ୍ଗିକ ମନେକରି ଉତ୍‌ଥାପନ କରୁଛି । ବାସୁଦେବ ସୁଢଳଦେବଙ୍କ ଗ୍ରନ୍ଥାବଳୀ ସଂପାଦନା (୨୦୦୩) ସମୟେ ସୁଢଳଦେବଙ୍କ 'କିଷ୍କିନ୍ଧ୍ୟା' କାବ୍ୟକୁ ନେଇ ଏହି ସଂପାଦକ ବିଭିନ୍ନ ଅସୁବିଧାର ସମ୍ମୁଖୀନ ହୋଇଥିଲା । କାବ୍ୟଟି ସମ୍ବଲପୁର ହିତୈଷିଣୀ (୪/୪୭) ତା ୨୬.୪.୧୮୯୩ ସଂଖ୍ୟାରେ 'ଜଣେ ଦର୍ଶକ ବାମଣ୍ଡା' ଛଦ୍ମନାମରେ

ପ୍ରକାଶିତ । ୧୮୯୦ ରେ ସୁଢଳଦେବ ଦାକ୍ଷିଣାତ୍ୟ ଭ୍ରମଣରେ ଯାଇଥିଲେ ଏବଂ ବର୍ଣ୍ଣିତ ସ୍ଥାନ ଗୁଡିକ ଦର୍ଶନ କରିଥିଲେ । ସାର୍ ବାସୁଦେବ ଜୀବନୀ (ବଙ୍ଗଳା- ୧୯୧୬)ରେ ଏ ବିଷୟ ବିଷଦ୍ ଭାବେ ବର୍ଣ୍ଣିତ ହୋଇଛି ଏବଂ କିଷ୍କିନ୍ଧ୍ୟା କାବ୍ୟ ସମ୍ବଲପୁର ହିତୈଷିଣୀରେ ପ୍ରକାଶ ପାଇବା କଥା ମଧ୍ୟ ଲେଖାଯାଇଛି । ପୁନଶ୍ଚ ସୁଢଳଦେବ ସମକାଳୀନ ଅନେକ ପତ୍ର ପତ୍ରିକାରେ ଶ୍ରୀ-ବାମଣ୍ଡା ଓ ଅନ୍ୟାନ୍ୟ ଛଦ୍ମନାମରେ ଲେଖିଥିବାର ପ୍ରମାଣିତ ହୁଏ । କିଷ୍କିନ୍ଧ୍ୟା କାବ୍ୟର ଶୈଳୀ ସୁଢଳଦେବଙ୍କ 'ବୀରବାମା' କାବ୍ୟ ସହିତ ସାମ୍ୟରକ୍ଷା କରୁଥିବାରୁ ଏହାକୁ ସୁଢଳଦେବଙ୍କ ରଚନା ବୋଲି ନିର୍ବିବାଦରେ ଗ୍ରହଣ କରି ଗ୍ରନ୍ଥାବଳୀସ୍ଥ କରାଯାଇଥିଲା । ପୁନଶ୍ଚ ସମ୍ବଲପୁର ହିତୈଷିଣୀ (୫/୧) ନବବର୍ଷ ସଂଖ୍ୟାରେ ସଂପାଦକ ଗତବର୍ଷ (୧୮୯୩)ସୁଢଳଦେବଙ୍କ ଅନେକ ଗଦ୍ୟପଦ୍ୟ ପ୍ରକାଶର ସୂଚନା ଦିଅନ୍ତି । ସମସ୍ତ ବିବରଣୀକୁ ବିଶ୍ଳେଷଣ କଲେ 'କିଷ୍କିନ୍ଧ୍ୟା' କାବ୍ୟ ସୁଢଳଦେବଙ୍କ ରଚିତ ବୋଲି ପ୍ରମାଣିତ ହୁଏ ।

ଉତ୍କଳଦୀପିକା ୧୮୮୬ ଓ ୧୮୮୭ ର ଅନେକ ସଂଖ୍ୟାରେ ବୈଦିକ ପ୍ରସ୍ତାବ ଶ୍ରୀ-ବାମଣ୍ଡା ଛଦ୍ମନାମରେ କ୍ରମଶାଃକାରେ ପ୍ରକାଶିତ । ଶ୍ରୀ-ବାମଣ୍ଡା କିଏ ? ଏହା ଅନୁସନ୍ଧାନ କରିବାକୁ ମୋତେ ଉତ୍କଳଦୀପିକା, ସଂସ୍କାରକ, ସାମ୍ୟବାଦୀ, ନବସଂବାଦ ଓ ସଂବାଦବାହିକା ପତ୍ରିକାକୁ ତନ୍ନତନ୍ନ କରି ପଢିବାକୁ ପଡିଲା । ବାମଣ୍ଡା ବିଜ୍ଞାପନ ସ୍ତମ୍ଭରେ ଏହି ଲେଖାଗୁଡିକ ପ୍ରକାଶ ପାଉଥିଲା। ସୁଢଳଦେବଙ୍କ ଅନୁରୋଧ କ୍ରମେ ଗୌରୀଶଙ୍କର ଦୀପିକାର ପ୍ରଥମ ପୃଷ୍ଠାକୁ ବାମଣ୍ଡା ବିଜ୍ଞାପନ ପାଇଁ ପ୍ରଦାନ କରିଥିଲେ । ଏଣୁ ଏହି ପୃଷ୍ଠାରେ ପ୍ରକାଶିତ ରଚନା ସୁଢଳଦେବଙ୍କ ହେବା ସଂଭବ ବୋଲି ମୁଁ ଅନୁମାନ କଲି । ଅନୁମାନକୁ ପ୍ରାମାଣିକ ତଥ୍ୟଦ୍ୱାରା ସିଦ୍ଧ କରିବାକୁ ଦୀର୍ଘ ଏକବର୍ଷ ଧରି ସମକାଳୀନ ସଂବାଦ ପତ୍ରଗୁଡିକୁ ପଢିଲି । ଲେଖକ ଭ୍ରମଣୋପଲକ୍ଷେ କିଛି ସମୟ ବୈଦିକ ପ୍ରସ୍ତାବ ସ୍ଥଗିତ କରିବା କଥା ଦୀପିକା (୨୨/୭)ରେ ସ୍ୱୀକାର କରନ୍ତି । ବୈଦିକ ପ୍ରସ୍ତାବରେ ଚତୁର୍ଥ ପ୍ରସ୍ତାବରେ ଖ୍ରୀଷ୍ଟିଆନ ଧର୍ମଯାଜକ P.E. Heberletଙ୍କ ସହିତ ଆଲୋଚନାର ଅବତାରଣା କରାଯାଇଛି । ସମ୍ବଲପୁର ହିତୈଷିଣୀରୁ ଜଣାପଡେ ଏହି ଆଲୋଚନା ସୁଢଳଦେବ ଓ ହେବରଲେଟ ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ଶ୍ରୀ-ବାମଣ୍ଡାଙ୍କ ଉତ୍କଳଦୀପିକା (୨୧/୪୫) ପ୍ରକାଶିତ ବ୍ରାହ୍ମମାନେ ହିନ୍ଦୁକି ନା ପ୍ରତିବାଦରେ ଲଳିତମୋହନ ଚକ୍ରବର୍ତ୍ତୀ ନିବେଦନ ଶୀର୍ଷକରେ ଏକ ଦୀର୍ଘ ପ୍ରତିବାଦ ଦୀପିକା ୪.୧୨.୧୮୮୬ରେ ପ୍ରକାଶ କରନ୍ତି । ଏହି ପ୍ରତିବାଦ ପତ୍ର ଦୀପିକାରୁ ସଂସ୍କାରକ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । ନିବେଦନରେ ଲଳିତ ମୋହନଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ- ଉତ୍କଳ ଦୀପିକାର ବାମଣ୍ଡା ସ୍ତମ୍ଭରେ ବ୍ରାହ୍ମମାନଙ୍କୁ ଆକ୍ରମଣ କରି ଗୋଟିଏ ପ୍ରବନ୍ଧ ଲେଖାହୋଇଅଛି । ଲୋକ ପରମ୍ପରା ଏପରି ଶ୍ରୁତ ହେଲୁ କି ଏହି ପତ୍ର ବାମଣ୍ଡାଧିପତି ଶ୍ରୀଯୁକ୍ତ ସୁଢଳଦେବଙ୍କ ଦ୍ୱାରା ଲିଖିତ

ହୋଇଅଛି । ଯଦି ଏକଥା ଠିକ ହୁଏ ତେବେ ବଡ ସୁଖର ବିଷୟ । (ଉତ୍କଳ ଦୀପିକା ତା ୪.୧୨.୧୮୮୬)

ଏହି ବୈଦିକ ପ୍ରସ୍ତାବର ବକ୍ତବ୍ୟର ଶୈଳୀ ତଥା ବାମଣ୍ଡାଧିପତି ନାମରେ ପ୍ରକାଶିତ ଅନ୍ୟାନ୍ୟ ସମକାଳୀନ ରଚନା ଶୈଳୀର ସାମ୍ୟତା ଦୃଷ୍ଟେ ଏହି ସଂପାଦକ ବୈଦିକ ପ୍ରସ୍ତାବ ଗୁଡିକ ସୁଢଳଦେବଙ୍କ ରଚନା ବୋଲି ଗ୍ରହଣକରି "ବାସୁଦେବ ଗ୍ରନ୍ଥାବଳୀ"ରେ ସ୍ଥାନିତ କରିଥିଲା । ବାସୁଦେବ ଗ୍ରନ୍ଥାବଳୀ ପ୍ରକାଶ(୨୦୦୩) ପରେ ସଂପାଦକର କାର୍ଯ୍ୟକୁ ସମର୍ଥନ କରି ଏକ ବଳିଷ୍ଠ ବକ୍ତବ୍ୟ ଦୃଷ୍ଟିକୁ ଆସିଲା । ତାହା ସଂସ୍କାରକ ୨୪.୭.୧୮୮୬ ବିବିଧସ୍ତମ୍ଭରେ ପ୍ରକାଶିତ ନିମ୍ନସୂଚନା- "ବାମଣ୍ଡାଧିପତି ମହାରାଜା ସୁଢଳଦେବ ଉତ୍କଳଦୀପିକା ସ୍ତମ୍ଭରେ 'ବୈଦିକ ପ୍ରସ୍ତାବ' ନାମରେ ଗୋଟିଏ ହିନ୍ଦୁଧର୍ମ ବିଷୟକ ପ୍ରବନ୍ଧ ପ୍ରକାଶ କରୁଅଛନ୍ତି । ପ୍ରବନ୍ଧ ଶେଷ ହୋଇନାହିଁ, କିନ୍ତୁ ପ୍ରବନ୍ଧର ଯେଉଁ ଅଂଶ ପ୍ରକାଶିତ ହୋଇଅଛି ସେଥିରୁ ମହାରାଜାଙ୍କର ବୁଦ୍ଧିର ତୀକ୍ଷ୍ଣତା ଓ ହିନ୍ଦୁଶାସ୍ତ୍ରର ପ୍ରଶଂସନୀୟ ବ୍ୟୁତ୍ପତ୍ତି ଲକ୍ଷିତ ହେଉଅଛି । ପ୍ରବନ୍ଧ ଶେଷ ହୋଇ ନଥିବାରୁ ଆମ୍ଭେମାନେ ମନ୍ତବ୍ୟ ପ୍ରକାଶରୁ ବିରତ ହେଲୁ । ପ୍ରବନ୍ଧ ଉପରେ ବାମଣ୍ଡା ବିଜ୍ଞାପନ କାହିଁକି ଲେଖା ହୋଇଅଛି ଆମ୍ଭେମାନେ ବୁଝିପାରିଲୁନାହିଁ ।" ଏହି ସୂଚନାଟି ମୁଁ ଗ୍ରହଣ କରିଥିବା ମତକୁ ପୁଷ୍ଟ କରିଥିବାରୁ ମୋତେ ଗଭୀର ଆତ୍ମସନ୍ତୋଷ ମିଳିଥିଲା । ସିଦ୍ଧାନ୍ତଟି ସ୍ୱତଃସିଦ୍ଧ ହୋଇଥିଲା ।

ଅନ୍ୟ ଏକ ସମସ୍ୟା ଯାହାକି ସତ୍‌ସଂପାଦକକୁ ଗଭୀର ଭାବେ ବ୍ୟତିବ୍ୟସ୍ତ କରେ ତାହାହେଲା ପୁରାତନ ପତ୍ରିକା ପୃଷ୍ଠାର ଅଜସ୍ର ଲେଖା ମଧ୍ୟରୁ ଉଦ୍ଦିଷ୍ଟ ଲେଖକର ଲେଖାକୁ ଠାବ କରିବା । ସପ୍ତ ସମୁଦ୍ରତ ଲଂଘିଯିବ କିନ୍ତୁ ଅଜସ୍ର ନାରୀବେଷ୍ଟିତ କାନନ ମଧ୍ୟରେ ସୀତାଙ୍କୁ ଠାବ କରିବା ଦୁଷ୍କର । ଏଠି ମୁଦ୍ରିକାଥିବ କିନ୍ତୁ ନାମନଥିବ । କେବଳ ସଂକେତକୁ ଭିତ୍ତି କରି ପୃଷ୍ଠଭୂମିକୁ ପାଥେୟ କରି ନିର୍ଣ୍ଣୟ ନେବାକୁ ହେବ । ସେମିତି ଏକ ସମସ୍ୟା ଜଳନ୍ଧର ଦେବ ଗ୍ରନ୍ଥାବଳୀ ସଂପାଦନା (୨୦୧୨) ବେଳେ ଦେଖାଦେଇଥିଲା । ମୁଁ ସୂଚନା ପାଇଥିଲି, ସମ୍ବଲପୁର ହିତୈଷିଣୀର ୧୮୯୩-୯୪ ସଂଖ୍ୟାରେ ଜଳନ୍ଧରଙ୍କ ବାଲ୍ୟବିବାହ, ଗ୍ରହଣ ବିଚାର ଓ ଜାତିଭେଦ ସଂପର୍କରେ କିଛି ଆଲୋଚନା ପ୍ରକାଶିତ । ହିତୈଷିଣୀର ଉକ୍ତ ଦୁଇବର୍ଷ ତଥା ଅନ୍ୟାନ୍ୟ ବର୍ଷର ସଂଖ୍ୟାଗୁଡିକୁ ତନ୍ନ ତନ୍ନ କରି ଖୋଜିବା ସତ୍ତ୍ୱେ ଲେଖା ଗୁଡିକ ପାଇନଥିଲି । ପୁଣିଥରେ ଏ ସଂପର୍କିତ ବେନାମି ଲେଖାଗୁଡିକ ଅଧ୍ୟୟନ କଲି ଏବଂ ଜଳନ୍ଧରଙ୍କ ଶୈଳି, ଭାବଧାରା ଓ ଯୁକ୍ତି ଉପସ୍ଥାପନାର ବିଭାବକୁ ଅନୁଧ୍ୟାନ କରି ଲେଖାଗୁଡିକ ୧୮୯୫, ୧୮୯୬ ହିତୈଷିଣୀ ପୃଷ୍ଠାରୁ ଉଦ୍ଧାର କରିଥିଲି ।

ପତ୍ରପତ୍ରିକାରେ ପ୍ରକାଶିତ ଲେଖା ଓ ତାର ଖଣ୍ଡନମଣ୍ଡନକୁ ଦୁଇଟି ଉପଶୀର୍ଷକରେ ଆଲୋଚନା କରାଯାଇପାରେ ।

(i) ପତ୍ରପତ୍ରିକାରେ ପ୍ରକାଶିତ ଲେଖାରେ ଲେଖକଙ୍କ ଦ୍ୱାରା ଖଣ୍ଡନମଣ୍ଡନ,

(ii) ପତ୍ରପତ୍ରିକାରେ ପ୍ରକାଶିତ ଲେଖାରେ ଅନ୍ୟମାନଙ୍କ ଦ୍ୱାରା ଖଣ୍ଡନମଣ୍ଡନ

**(i) ପତ୍ରପତ୍ରିକାରେ ପ୍ରକାଶିତ ଲେଖାରେ ଲେଖକଙ୍କ ଦ୍ୱାରା ଖଣ୍ଡନମଣ୍ଡନ :** ପତ୍ରିକାରେ ପ୍ରକାଶିତ ଲେଖାକୁ ପୁସ୍ତକରେ ମୁଦ୍ରଣ କଲାବେଳେ ଅନେକତ୍ର ଲେଖକମାନେ ସଂଶୋଧନ କରିଥିବାର ଦେଖାଯାଇଥାଏ । ଦୃଷ୍ଟାନ୍ତ ରୂପେ ନନ୍ଦକିଶୋର ବଳଙ୍କ କବିତା ଗୁଡିକ ନିଆଯାଇପାରେ । ନନ୍ଦକିଶୋର ପତ୍ରପତ୍ରିକାରେ ପ୍ରକାଶିତ କବିତା ଗୁଡିକୁ ପୁସ୍ତକାକାରେ ସଂକଳିତ କଲାବେଳେ ନିବିଷ୍ଟ ଚିତ୍ତରେ ଖଣ୍ଡନ ମଣ୍ଡନ କରିଥିବାର ଦେଖାଯାଏ । ତାଙ୍କର ଗୋଟିଏବି କବିତା ନାହିଁ ଯାହା ଅଳ୍ପେ ବହୁତେ ସଂଶୋଧିତ ହୋଇନାହିଁ । ଦୃଷ୍ଟାନ୍ତରୂପେ କବିଙ୍କର ଉତ୍କଳ ସାହିତ୍ୟ(୨/୭)ରେ ପ୍ରକାଶିତ 'କାକବାରତା'କୁ ନିଆଯାଉ । କବିତାର ପ୍ରଥମ ଭାଗରେ ଉତ୍କଳ ସାହିତ୍ୟରେ ପ୍ରକାଶିତ 'ଚୋର ନେଇଗଲା କଜଳପାତି' ପରେ ରହିଛି 'ଆସ ଗୋ ସଙ୍ଗାତ ଗାଧୋଇଯିବା' କିନ୍ତୁ ନିର୍ଝରିଣୀ ପୁସ୍ତକ (୪ର୍ଥ ମୁଦ୍ରଣ-୧୯୨୦) ତଥା ନନ୍ଦକିଶୋର ଗ୍ରନ୍ଥାବଳୀ (୧୯୫୫) ରେ ଏହି ଦୁଇପାଦ ମଝିରେ ନିମ୍ନୋକ୍ତ ପଦଟି ନୂତନ ସଂଯୋଜିତ ହୋଇଛି ।

ଷାଠିଏ ଟଙ୍କାର ବଳଦ ମଲା
ଏକା କାଳୀ ଗାଈ ମଥାନ କଲା ।

ସଂଶୋଧନର ଦୃଷ୍ଟାନ୍ତ ନିମ୍ନ ଉଦ୍ଧୃତିରୁ ସ୍ପଷ୍ଟ ହେବ ।

**ପତ୍ରିକା ପାଠ :**

ପ୍ରାବୃଟେ ଧରେ ବନ ନବ ଛବି
ଯାହା ବର୍ଣ୍ଣନେ ମୂକ ହୁଏ କବି ।
ନୀଳନଭେ ଦେଖି ନବ ନୀରଦ
ଉଚ୍ଚେ ବରହୀ ଛାଡେ କେକା ଶବ୍ଦ ।
ଉତ୍ପୁଚ୍ଛ କଳାପୀ ଧୈବତ ସ୍ୱନ
ଶୁଣି ମୟୂରୀ ହୁଅଇ ଉଚ୍ଛନ୍ନ ।
X X X
ନିଘଞ୍ଚ ନିକୁଞ୍ଜ ନିର୍ଜନ ବନ
ନିରୋଳେ ଯହିଁ କ୍ରୀଡେ କବି ମନ ।
ବିଗତ ଯୁଗୁଁ ରାଜେ ପୁଷ୍କରିଣୀ
ସରାଗେ ତହିଁ ହସେ ସରୋଜିନୀ ।

ପୁସ୍ତକପାଠ : ପ୍ରାବୃଟରେ ବନ ନବୀନ ଛବି
ଧରେ ଯା, ନବର୍ଣ୍ଣି ପାରଇ କବି ।
ନୀଳନଭେ, ଦେଖି ନବ ନୀରଦ
ଉଚ୍ଚେ ବର୍ହୀ ଛାଡେ ଷଡଜ ଶବ୍ଦ ।
ଉତ୍ପୁଚ୍ଛ କଳାପି ଆନନ୍ଦ ସ୍ୱନ
ଶୁଣିଣ ମୟୁରୀ ହୁଏ ଉଚ୍ଛନ୍ନ ।

X X X

ନିଘଞ୍ଚ ନିକୁଞ୍ଜ ଗହନ ବନେ
କ୍ରୀଡେ ନିର୍ଜନତା ନିବିଷ୍ଟ ମନେ ।
ବିଗତ ଯୁଗରୁ ରାଜେ ସରସୀ
ହସେ ସରୋଜିନୀ ତା ଅଙ୍କେବସି ।

ନନ୍ଦକିଶୋର ବଳଙ୍କ ବ୍ୟତୀତ ବଳଭଦ୍ର ଦେବ, ପଦ୍ମଚରଣ ପଟ୍ଟନାୟକ, ମାୟାଧର ମାନସିଂ ପ୍ରଭୃତି ନିଜ ନିଜର ରଚନାକୁ ପରବର୍ତ୍ତୀ ପର୍ଯ୍ୟାୟରେ ସଂଶୋଧନ କରିବାର ଦୃଷ୍ଟାନ୍ତ ଓଡିଆ ସାହିତ୍ୟରେ ସହଜଲଭ୍ୟ ।

ଏହି ପ୍ରସଙ୍ଗରେ ମାନସିଂଙ୍କ ବାରୁଣୀ (୧/୩) ସଂଖ୍ୟାରେ ପ୍ରକାଶିତ କୋଣାର୍କ କବିତା ଓ ଗ୍ରନ୍ଥାବଳୀ ତଥା ପୁସ୍ତକ ପାଠ ଭିତରେ ଥିବା ବୈଷମ୍ୟକୁ ପ୍ରଣିଧାନ କରାଯାଇପାରେ ।

ପତ୍ରିକା ପାଠ : ହେ କୋଣାର୍କ ବିଗତ ଯୌବନା
ଚାହେଁ ବିଶ୍ୱ ଚକିତ ଉନ୍ମନା
ତୋର ଏହି ଜୀର୍ଣ୍ଣ ଦେହେ ଅଦ୍ୟାପି ଗୋ ବିମୁଗ୍ଧ ନୟନେ
ଶୁଣଇ ତୋ ସ୍ୱପ୍ନମୟ ଅପାର୍ଥିବ ସଂଗୀତ ଉତ୍କର୍ଣ୍ଣେ
ଆଜି ମଧ ମର୍ତ୍ତ୍ୟ କବି ଅମର୍ତ୍ତ୍ୟତ୍ୱ ଦେଖି ତୋହଠାରେ
ଚିର ଆଲିଙ୍ଗନ ଇଚ୍ଛେ ବୃଦ୍ଧ ଦେହେ ଶୋଭା ପୀପାସାରେ
ଅଙ୍ଗେ ଅଙ୍ଗେ ଚୁମ୍ବିବାକୁ ନିରବଧି ପୁଣି ତା' ଭାବନା
ତୋହରେ ଗୋ ଗତ ଯଉବନା ।

ପୁସ୍ତକ ପାଠ : ହେ କୋଣାର୍କ ବିଗତ ଯୌବନା
ମୌନ-ଦୁଃଖେ ସୈକତ-ଶୟନା !
ତୋର ଏହି ଜୀର୍ଣ୍ଣ ଦେହେ ଅଦ୍ୟାପି ଗୋ ବିମୁଗ୍ଧ ନୟନେ
ଚାହେଁ ବିଶ୍ୱ, କରୁଣାରେ ତେଜି ଅଶ୍ରୁ ତୋ ଦୁଃଖ-ଶୟନେ
ଜଗତର ଶିଳ୍ପୀ-କବି ରୂପ-ରାଗ ଦେଖି ତୋହଠାରେ

ଆଶ୍ଳେଷ ଇଚ୍ଛଇ ତୋର ବୃଦ୍ଧ ଦେହେ, ଶୋଭା ପିପାସାରେ ।
ଅଙ୍ଗେ ଅଙ୍ଗେ ଚୁମ୍ବିବାକୁ ନିରବଧି କରଇ ଭାବନା
ତୋହରେ ଗୋ ଗତ-ଯଉବନା ।

ପତ୍ରିକା ପାଠ : ପୂର୍ଣ୍ଣିମା ରଜନୀ ହାସ୍ୟତଳେ
ଧବଳିତ ସମୁଦ୍ର-ଲହରେ
ତାଳେତାଳେ ଲାସ୍ୟେ ମାତି ଜଳଦେବୀ ଗାଇଲେ ତୋ ଗୀତ
ଓଷଧୀଶ ତୋର ଶିରେ ଢାଳିଦେଲେ କୌମୁଦୀ, ଅମିତ
ତୋ ଉତ୍ତଙ୍ଗ କଟାକ୍ଷରେ ବ୍ୟୋମଚାରୀ ମାର୍ଗେ ହୋଇ ମୂଢ଼
ଅବତରି କର୍ଣ୍ଣେ କର୍ଣ୍ଣେ କହିଗଲେ ବାରତା ନିଗୂଢ଼
ଅପ୍ସରୀ ବନ୍ଦିଲେ ତୋତେ ସ୍ୱର୍ଗୁ ଆସି କୌମୁଦୀ କଲ୍ଲୋଳେ
ପାରିଜାତ ପୁଷ୍ପ ଉପହାରେ ।

ପୁସ୍ତକ ପାଠ : ପୌର୍ଣ୍ଣମାସୀ ଶୁଭ୍ର ହାସ୍ୟତଳେ
ଧବଳିତ ସମୁଦ୍ର-ଲହରେ
ତାଳେତାଳେ ଲାସ୍ୟେ ମାତି ଜଳଦେବୀ ଗାଇଲେ ତୋ କଥା
ଓଷଧୀଶ ଜ୍ୟୋତ୍ସ୍ନା ପୁରେ ସିକ୍ତ କଲେ ତୋ ତରୁଣ ମଥା
ତୋର ମୌନ କଟାକ୍ଷରେ ବ୍ୟୋମଚାରୀ ମାର୍ଗେ ହୋଇ ମୂଢ଼
ଅବତରି କର୍ଣ୍ଣେ କର୍ଣ୍ଣେ କହିଗଲେ ବାରତା ନିଗୂଢ଼
ଅପ୍ସରୀ ବନ୍ଦିଲେ ତୋତେ ସ୍ୱର୍ଗୁ ଆସି କୌମୁଦୀ କଲ୍ଲୋଳେ
ପାରିଜାତ ପୁଷ୍ପ ଉପହାରେ ।

**(ii) ପତ୍ରିକାରେ ପ୍ରକାଶିତ ଲେଖାରେ ଅନ୍ୟମାନଙ୍କ ଦ୍ୱାରା ଖଣ୍ଡନ ମଣ୍ଡନ :** ଏହି ପ୍ରସଙ୍ଗରେ ଫକୀରମୋହନଙ୍କ 'ଆତ୍ମଚରିତ' ଓ ଗଳ୍ପ ସ୍ୱଳ୍ପକୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ । ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ଫକୀର ମୋହନଙ୍କ ଗଳ୍ପ ଗୁଡିକ ତାଙ୍କ ଦ୍ୱାରା ପ୍ରକାଶିତ ଗଳ୍ପସ୍ୱଳ୍ପ(୧୯୧୭)ରେ ପ୍ରକାଶ ଲଭିଥଲା ।ଏହି ଗଳ୍ପସ୍ୱଳ୍ପକୁ ପୁନଃ ପ୍ରକାଶ କରି ମୋହିନୀ ମୋହନ ସେନାପତି ଗଳ୍ପସଞ୍ଚ(୧୯୨୪) ପ୍ରକାଶ କରନ୍ତି । ଏଥିରେ ଫକୀର ମୋହନଙ୍କ ମୌଳିକତାକୁ ଅନେକତ୍ର ଖଣ୍ଡିତ କରାଯାଇଛି । ଉତ୍କଳସାହିତ୍ୟରେ ପ୍ରକାଶିତ ଡାକମୁନ୍‌ସୀ ଗଳ୍ପର ନିମ୍ନୋକ୍ତ ଅନୁଚ୍ଛେଦଟି ଏଥିରେ ପରିତ୍ୟକ୍ତ ହୋଇଥିଲା- "ଗୋପାଳବାବୁ ବାପକୁ ନ ଶୁଣେଇ ଗୋଟାଏ କନ୍ୟା ଠିକ୍ କଲେ । ସେ କନ୍ୟାକୁ ବିଭା ହେଲେ ଜାତିରେ ଅଚଳ । ବୁଢା ଢେର କନ୍ଦାକଟା କଲେ-କିଏ ଶୁଣେ । କଣ କରିବ, ବୁଢାଟା ରାଜି ହେଲା ।"

ଫକୀରମୋହନଙ୍କ ସାହିତ୍ୟର ଏହି ଅବାଞ୍ଛିତ କାର୍ଯ୍ୟକୁ ବିଭିନ୍ନ ସ୍ତରରେ ସମାଲୋଚନା କରାଯାଇଥିଲା । ମାୟାଧର ମାନସିଂହ ସହକାର (୧୩/୫) ପୃଷ୍ଠାରେ ଏହି କାର୍ଯ୍ୟକୁ ଫକୀରମୋହନଙ୍କ ଅଙ୍ଗକର୍ତ୍ତନ ଶୀର୍ଷକ ପତ୍ରରେ ସମାଲୋଚନା କରି କ୍ଷୋଭ ପ୍ରକାଶ କରିଥିଲେ ।

## ଫକୀରମୋହନଙ୍କ ଅଙ୍ଗକର୍ତ୍ତନ :

ଶ୍ରୀଯୁକ୍ତ ସହକାର-ସମ୍ପାଦକ ମହୋଦୟ, ସମୀପେଷୁ
ମହାଶୟ,

ଆଶାକରେ, ମୋର ଏ ପ୍ରତିବାଦଟି ଆପଣ ସହକାରରେ ପ୍ରକାଶ କରିବେ । ଫକୀରମୋହନଙ୍କର ଚିରପ୍ରିୟ ଉପନ୍ୟାସଗୁଡିକର ପୁନରାଲୋଚନା କରିବାକୁ ଯାଇ ଦେଖୁଛି, ସେଗୁଡିକର ସ୍ୱତ୍ତ୍ୱାଧିକାରୀ ମୋହିନୀମୋହନ ସେନାପତି ନିର୍ଦ୍ଦୟ ଭାବରେ ଫକରୀମୋହନଙ୍କର ଅଙ୍ଗକର୍ତ୍ତନ କରିଅଛନ୍ତି । ବହୁଦିନ ତଳେ 'ପ୍ରାୟଶ୍ଚିତ୍ତ' ପଢିଥିଲି । ଏବେ ପୁଣି ପଢି ଦେଖୁଛି, ଶେଷର ୭ମ/୮ମ ପରିଚ୍ଛେଦ ଆଦୌ ନାହିଁ । ଏଥିରେ ଉପନ୍ୟାସର ଯେ କି ପ୍ରକାର ଅଙ୍ଗହାନୀ ହୋଇଛି, ତା'ଯେ କୌଣସି ପାଠକ ଅନୁଭବ କରିପାରିବେ । ଏଥିରେ ''ଇନ୍ଦୁମତୀ'ର ଆତ୍ମହତ୍ୟା ଓ ଅନ୍ୟ ପୁରୁଷ-ଚରିତ୍ରମାନଙ୍କର ସନ୍ନ୍ୟାସ-ଗ୍ରହଣ ଓ ବୃନ୍ଦାବନରେ ମିଳନ ପ୍ରଭୃତି ଗଳ୍ପର ଉଷ୍ଣୀଶରୂପୀ ଘଟଣାମାନ ସ୍ୱତ୍ତ୍ୱାଧିକାରୀ କାହିଁକି ଯେ ବାଦ୍ ଦେଇଛନ୍ତି ବୁଝିପାରିଲି ନାହିଁ । କେବଳ ଏ ପୁସ୍ତକରେ ନୁହେଁ, ମୋହିନୀ ବାବୁ ଫକୀରମୋହନଙ୍କର ଅନ୍ୟ ଗ୍ରନ୍ଥମାନଙ୍କରେ ମଧ୍ୟ ଏଇପରି ହସ୍ତକ୍ଷେପ କରିଅଛନ୍ତି । ସେନାପତିଙ୍କ ମୃତ୍ୟୁ ପରେ ତାଙ୍କ ଆତ୍ମଚରିତ 'ଉତ୍କଳ ସାହିତ୍ୟ'ରେ ପୂର୍ଣ୍ଣତଃ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ମୋହିନୀବାବୁଙ୍କର ପ୍ରକାଶିତ ଆତ୍ମଚରିତର ଆତ୍ମାରୁ ଅନେକାଂଶ ନାହିଁ । 'ମାମୁଁ'ଉପନ୍ୟାସ ସହିତ ଫକୀରମୋହନଙ୍କ ଜୀବିତ କାଳରେ ବୋଧହୁଏ, ମଉଲବି ଅଶରଫ୍ ଅଲିଙ୍କ ସୁନ୍ଦର ସମାଲୋଚନାଟି ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ପ୍ରକାଶିତ 'ମାମୁଁ'ରେ ସେ ଉପଭୋଗ୍ୟ ଜିନିଷଟି ଆଉ ନାହିଁ । ମୁଁ ଜାଣେନା ଅନ୍ୟ ପୁସ୍ତକମାନଙ୍କର କି ଦଶା ଘଟିଥିବ । କିନ୍ତୁ ପରଲୋକଗତ ଗ୍ରନ୍ଥକର୍ତ୍ତାଙ୍କ ରଚିତ ଗ୍ରନ୍ଥର ଗୋଟିଏ ପଙ୍କ୍ତି କି ମଧ୍ୟ ଅନ୍ୟଥା କରିବା ବର୍ବରତା ଛଡା ଅନ୍ୟ କିଛି ନୁହେଁ । ଅନ୍ୟାନ୍ୟ ଦେଶରେ ଲେଖକମାନଙ୍କର କାହିଁ କେଉଁଠି ଦସ୍ତଖତଟାଏ ପାଇଲେ, ଲୋକେ ଅର୍ଥବ୍ୟୟ କରି ତା'ର ରକ୍ଷଣର ବ୍ୟବସ୍ଥା କରୁଛନ୍ତି, ଆଉ ଆମ ଦେଶର ମୂର୍ଖତାର ଚିହ୍ନ ଏତେ ଯେ, ଫକୀରମୋହନଙ୍କ ପରି ଲେଖକଙ୍କର ଲେଖା ପୁଣି ଅନାବଶ୍ୟକ ବୋଲି କାଟି ଦିଆଯାଇଛି । ସ୍ୱତ୍ତ୍ୱାଧିକାରୀଙ୍କର ଏହି ନିର୍ମମ ବର୍ବରତା ଲାଗି ଦେଶର ସାହିତ୍ୟିକମାନେ

ତୀବ୍ର ପ୍ରତିବାଦ କରିବା ଉଚିତ୍ । ଆପଣ ଆପଣଙ୍କ ପତ୍ରିକା ଦେଇ ଉପଯୁକ୍ତ ଭାବରେ ପ୍ରତିବାଦ କରିପାରିବେ ଭାବି ମୁଁ ଜଣାଇଲି ଓ ମୋର ବ୍ୟକ୍ତିଗତ ଦୁର୍ବଳ ଚେଷ୍ଟାରୁ ନିବୃତ୍ତ ହେଲି ।

॥ ଇତି ॥ ଆପଣଙ୍କର

ମାୟାଧର ମାନିସଂହ

## (ଗ) ପୁସ୍ତକର ବିଭିନ୍ନ ସଂସ୍କରଣ :

ପୁସ୍ତକର ବିଭିନ୍ନ ସଂସ୍କରଣ ଭିତରେ ଅନେକ ବୈଚିତ୍ର୍ୟ ପରିଲକ୍ଷିତ ହୋଇଥାଏ । ସଂସ୍କରଣଟି ଲେଖକର ଜୀବଦ୍ଦଶାରେ ପ୍ରକାଶିତ ନା ମୃତ୍ୟୁପରେ ତାହାହିଁ ସଂପାଦକ ପାଇଁ ଗୁରୁତ୍ୱପୂର୍ଣ୍ଣ ବିଷୟ । ଅନେକ ସୃଜନଶୀଳ ଲେଖକଙ୍କ ସୃଷ୍ଟି ବାରମ୍ବାର ପରିବର୍ତ୍ତିତ ହୋଇଥିବାର ଦେଖାଯାଏ । ପତ୍ରିକାରେ ପ୍ରକାଶିତ ଲେଖାଟି ପୁସ୍ତକରୂପ ନେଲାବେଳେ ବଦଳି ଯାଇଥାଏ । ପରବର୍ତ୍ତୀ ସଂସ୍କରଣ ଗୁଡିକରେ ମଧ ଲେଖକ ଏହାକୁ ପରିବର୍ତ୍ତିତ କରିଥିବାର ଦେଖାଯାଏ । ଲେଖକଙ୍କ ଜୀବଦ୍ଦଶାରେ ଦୃଷ୍ଟିଗୋଚର ହେଉଥିବା ଏହି ପରିବର୍ତ୍ତନକୁ ତାଙ୍କର ପ୍ରତିଭାର ବିକାଶଧାରା ସହ ଯୋଡି ବିବର୍ତ୍ତିତ ସାରସ୍ୱତ ଚେତନାକୁ ପର୍ଯ୍ୟାଲୋଚନା କରାଯାଇପାରେ । ଅନ୍ୟ ପକ୍ଷରେ ଲେଖକଙ୍କ ମୃତ୍ୟୁ ପରେ ଦେଖାଯାଉଥିବା ପରିବର୍ତ୍ତନ ସ୍ପୃହଣୀୟ ନୁହେଁ ଏବଂ ସଂପାଦକର ବର୍ଜନୀୟ । ବିଭିନ୍ନ ସଂସ୍କରଣରେ ଦେଖାଯାଉଥିବା ପରିବର୍ତ୍ତନ ଭିତରେ ସଠିକ୍ ପାଠ ନିର୍ଦ୍ଧାରଣ କରିବା ଯେତିକି କଷ୍ଟକର ସେତିକି ବିପଦପୂର୍ଣ୍ଣ । ପାଠ ଠିକ୍ ଭାବରେ ନିର୍ଦ୍ଧାରଣ ନକଲେ ଲେଖକର ସୃଷ୍ଟିର ଉପଯୁକ୍ତ ମୂଲ୍ୟାୟନ ହୋଇ ପାରିବ ନାହିଁ ।

ଦୃଷ୍ଟାନ୍ତ ରୂପେ ବାମାଚରଣ ମିତ୍ରଙ୍କ ସର୍ଜନା ସଂଭାର ସଂପାଦନା କଲାବେଳେ ଏଇ ସଂପାଦକ ଯେଉଁ ଅସୁବିଧାର ସମ୍ମୁଖୀନ ହୋଇଛି ତାହା ପ୍ରସଙ୍ଗତଃ ଏଠାରେ ଉଲ୍ଲେଖ କରାଯାଇପାରେ । ବାମାଚରଣ ମିତ୍ର ସର୍ଜନା ସଂଭାର ଯଦିଓ ପ୍ରକାଶ ପାଇପାରିନି କିନ୍ତୁ ଦୃଷ୍ଟାନ୍ତ ରୂପେ କିଛିଟା ପ୍ରସଙ୍ଗ ଏଠାରେ ଉଲ୍ଲେଖ କରୁଛି । ବାମାଚରଣଙ୍କ ଅନେକ ଗଳ୍ପର ପରବର୍ତ୍ତୀ ପର୍ଯ୍ୟାୟରେ ଶୀର୍ଷକ ବଦଳିଯାଇଛି । ତାଙ୍କ ଜୀବଦ୍ଦଶାରେ ଗଳ୍ପଗୁଡିକ ମୁଖ୍ୟତଃ ସ୍ୱପସିଦ୍ଧ (୧୯୬୦) ପାଷାଣର ପ୍ରାଣ (୧୯୬୧) ଅସୀମ (୧୯୬୧) ବଟ ମହାପୁରୁଷ (୧୯୬୭) ମହାପୁରୁଷବାଗ (୧୯୬୭) ପ୍ରଭୃତି ସଂକଳନରେ ପ୍ରକାଶିତ । ବାମାଚରଣଙ୍କ ମୃତ୍ୟୁ (୧୯୭୫) ପରେ ମିତ୍ରଗଳ୍ପ(୧୯୭୯) ମିତ୍ରକଳ୍ପ(୧୯୭୯) ଓ ମିତ୍ରସ୍ୱଳ୍ପ (୧୯୮୧) ସଂକଳନ ପ୍ରକାଶିତ । ଏହି ତିନୋଟି ସଂକଳନ ବାମାଚରଣ ମିତ୍ରଙ୍କ ନିର୍ଦ୍ଦେଶକ୍ରମେ ସଂଯୋଜିତ ହୋଇଥିବାର ଘୋଷଣା କରାଯାଏ । ପରବର୍ତ୍ତୀ ପର୍ଯ୍ୟାୟରେ ଯତୀନ୍ଦ୍ରମୋହନ ମହାନ୍ତି ଓ ଜ୍ୟୋତିରିନ୍ଦ୍ର ମୋହନ ଜୋଆର୍ଦ୍ଦାରଙ୍କ ଯୁଗ୍ମ ସଂପାଦନାରେ ଗଳ୍ପ ସମଗ୍ର -୧(୨୦୦୧) ଓ ଗଳ୍ପ ସମଗ୍ର -୨ (୨୦୦୧) ପ୍ରକାଶିତ । ଲେଖକଙ୍କ

ଜୀବଦ୍ଦଶାରେ ପ୍ରକାଶିତ ୫ଟି ସଂକଳନରେ ୬୩ଟି ଗଳ୍ପ ସ୍ଥାନିତ ହେଲା ବେଳେ ମିତ୍ର ଗଳ୍ପ, ମିତ୍ରକଳ୍ପ ଓ ମିତ୍ର ସ୍ୱଳ୍ପରେ ୬୯ଟି ଗଳ୍ପ ପ୍ରକାଶିତ ଓ ସମଗ୍ର-୧ ଓ ୨ରେ ୬୭ଟି ଗଳ୍ପ ପ୍ରକାଶିତ । "ଜନସଂଖ୍ୟା"ଗଳ୍ପଟି "ପାଷାଣର ପ୍ରାଣ" ସଂକଳନରେ ପ୍ରକାଶିତ । ପରବର୍ତ୍ତୀ ସଂକଳନ ଗୁଡିକରେ (ମୃତ୍ୟୁପରେ ପ୍ରକାଶିତ) ଏହାର ଶୀର୍ଷକ ହୋଇଛି ଅମୃତସ୍ୟ ପୁତ୍ରାଃ । ସେମିତି ଝଙ୍କାର (୫/୧) ରେ ପ୍ରକାଶିତ 'ତ୍ରିନେତ୍ର' ପାଷାଣର ପ୍ରାଣ ସଂକଳନରେ ଅବିକଳ ସ୍ଥାନିତ ହେଲାବେଳେ ଲେଖକଙ୍କ ମୃତ୍ତୁ ପରେ ପ୍ରକାଶିତ ଗଳ୍ପ ସମଗ୍ର - ୨ରେ ଏହାର ଶୀର୍ଷକ ବଦଳି ହୋଇଛି 'ତ୍ରିଗୁଣ ରଜ୍ଜୁ' । ଏହା ବ୍ୟତୀତ ଏହାର ପ୍ରଥମ ଦୁଇ ପାରାକୁ ବାଦ ଦିଆଯାଇଛି । ସେମିତି ଅସୀମ (ଗଳ୍ପଟି) ଅସୀମ ସଂକଳନ ଓ ଝଙ୍କାର (୭/୧) ରେ ପ୍ରକାଶିତ କିନ୍ତୁ ମୃତ୍ୟୁପରେ ପ୍ରକାଶିତ ଗଳ୍ପ ସମଗ୍ର - ୧ରେ ଏହାର ଶୀର୍ଷକ ହୋଇଛି 'ରାଣୀ ଦୁରୁଗା', ବାମାମିତ୍ରଙ୍କ ନାରୀମହଲ ଗଳ୍ପଟି ଝଙ୍କାର (୯/୮) ରେ ପ୍ରକାଶିତ ଏବଂ ଜୀବଦ୍ଦଶାରେ ପ୍ରକାଶିତ 'ବଟ ମହାପୁରୁଷ' ସଂକଳନରେ ଏହାର ଶୀର୍ଷକ ହୋଇଛି 'ସ୍ୱର୍ଗାଦପି ଗରିୟସୀ' । କିନ୍ତୁ ଆଶ୍ଚର୍ଯ୍ୟର କଥା ଲେଖକଙ୍କ ମୃତ୍ୟୁ ପରେ ପ୍ରକାଶିତ ମିତ୍ରକଳ୍ପ ଓ ଗଳ୍ପ ସମଗ୍ର-୧ରେ ଏହାର ଶୀର୍ଷକ ରହିଛି 'ସ୍ୱର୍ଗାଦପି' ।

ଏହି ସମସ୍ତ ଖଣ୍ଡନ ମଣ୍ଡନର ଚିତ୍ରକୁ ସଂପାଦକ ଗୁରୁତ୍ୱର ସହିତ ବିଚାର କରି ସତ୍ୟନିଷ୍ଠ ଭିତ୍ତିରେ ଲେଖକଙ୍କୁ ପ୍ରତିଷ୍ଠିତ କରିବା ଉଚିତ । ନଚେତ ସାହିତ୍ୟର ମୂଲ୍ୟାୟନ, ଐତିହ୍ୟ ଓ ସମକାଳୀନ କ୍ରମାନ୍ୱୟତା ଖଣ୍ଡିତ ହେବା ସହିତ ମୌଳିକ ସ୍ରଷ୍ଟାର କୀର୍ତ୍ତିରେ କଳଙ୍କ ଲାଗିବ ।

ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଗ୍ରନ୍ଥାବଳୀ ସଂପାଦନା (୨୦୦୪) ସମୟେ ମଧ୍ୟ ଏହି ସଂପାଦକ ବିଭିନ୍ନ ସଂସ୍କରଣରେ ପାଠରେ ଅନେକ ପରିବର୍ତ୍ତନ ଦେଖିବାକୁ ପାଇଥିଲା । ଦୃଷ୍ଟାନ୍ତ ରୂପେ ସଚ୍ଚିଦାନନ୍ଦଙ୍କ ବିଜ୍ଞାନ ତତ୍ତ୍ୱ ଭିତ୍ତିକ କାବ୍ୟ 'ବୈଦିକ ପ୍ରକୃତି' କୁ ଗ୍ରହଣ କରାଯାଇପାରେ । ଏହାର ପ୍ରଥମ ସଂସ୍କରଣ ୧୯୦୯ରେ ପ୍ରକାଶିତ ଏବଂ ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ ୧ମ ସଂସ୍କରଣ ୧୯୧୧ରେ ପ୍ରକାଶିତ । ଏହି ଦୁଇଟିଯାକ ସଂସ୍କରଣ ସଚ୍ଚିଦାନନ୍ଦ ଦେବଙ୍କ ମୃତ୍ୟୁ (୧୯୧୬) ପୂର୍ବରୁ ପ୍ରକାଶିତ ଏବଂ ଉଭୟରେ ପାଠଗତ ଅସାମଞ୍ଜସ୍ୟ ବହୁତ ଦେଖାଯାଏ, ଯେମିତି -

ପୁସ୍ତକପାଠ - ବେନି ମିଶ୍ରଣରେ, ହସ୍ତ ଶାରଙ୍ଗ ପାଣିର
କବଳିତ ଯୋଗେ, ଅବା ଈଷତ ଆନତ (ପୃ-୧).

ଗ୍ରନ୍ଥାବଳୀ ପାଠ - ବେନି ମିଶ୍ରଣରେ, ମଧ୍ୟେ ଈଷତ ଆନତ
ଶାରଙ୍ଗ ପାଣିର ପାଣି କବଳ ପାଇଁକି (ପୃ-୩୯)

ପୁସ୍ତକ ପାଠ - ପୁଲକିବାଛଳେ ଦେଖ ବନେ ଛୁରିଅନା
କଣ୍ଟକିତ ହୋଇଲାଣି, ପୁଷ୍ପୋଦ୍‌ଗମ ଯୋଗୁଁ (ପୃ-୨୨)

ଗ୍ରନ୍ଥାବଳୀ ପାଠ -  ପୁଷ୍ପୋଦ୍‌ଗମ ଛଳେ ଦେଖ ବନେ ଛୁରିଅନା
କଣ୍ଟକିତ ହୋଇଲାଣି ପ୍ରଣୟ ବିକାରେ (ପୃ-୫୨)

ସଚ୍ଚିଦାନନ୍ଦ ଦେବଙ୍କ 'ଅଳଙ୍କାର ସାର' ପ୍ରଥମ ସଂସ୍କରଣ ୧୮୯୯ରେ ପ୍ରକାଶ ପାଇଥିଲା । ଏହାର ଦ୍ୱିତୀୟ ସଂସ୍କରଣ ୧୯୦୦ରେ ପ୍ରକାଶ ପାଇଥିଲା । ଏହି ଦ୍ୱିତୀୟ ସଂସ୍କରଣରେ ସଚ୍ଚିଦାନନ୍ଦ ଦେବ ଅନେକ ସଂଶୋଧନ କରିଥିବାର ଦୃଷ୍ଟିଗୋଚର ହୁଏ । ସଂଶୋଧନ ଗୁଡିକ ଏହି ସଂପାଦକ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଗ୍ରନ୍ଥାବଳୀ (୨୦୦୫) ରେ ଦର୍ଶାଇ ୨ୟ ସଂସ୍କରଣକୁ ମାନକ ରୂପେ ଗ୍ରହଣ କରିଥିଲା ।

ଅନେକ ସ୍ଥଳରେ ଏପରି ପରିବର୍ତ୍ତନ ଦୃଷ୍ଟିଗୋଚର ହୁଏ । ଏହି ପରିବର୍ତ୍ତନ ଲେଖକଙ୍କ ଜୀବଦ୍ଦଶାରେ ହୋଇଥିବାରୁ ଲେଖକଙ୍କ ଜୀବଦ୍ଦଶାରେ ପ୍ରକାଶିତ ଶେଷ ସଂସ୍କରଣକୁ ମାନକ ରୂପେ ଗ୍ରହଣ କରିବା ସଂପାଦକ ପକ୍ଷେ ଶ୍ରେୟସ୍କର । କିନ୍ତୁ ବିଭିନ୍ନ ସଂସ୍କରଣର ପାଠର ବିଭିନ୍ନତାକୁ ପାଠକ ସମ୍ମୁଖରେ ଆଣି ଲେଖକର ସର୍ବଭୌମ ସୃଷ୍ଟିଶୀଳତା ପ୍ରତିପାଦନ କରିବା ସଂପାଦକର ମୌଳିକ ଧର୍ମ ।

ନନ୍ଦକିଶୋର ବଳ, ବଳଭଦ୍ର ଦେବ ପ୍ରଭୃତି କବିଙ୍କ ରଚନାରେ ଅନେକ ପରିବର୍ତ୍ତନ ବିଭିନ୍ନ ସଂସ୍କରଣରେ ଦେଖାଯାଏ । ଦୃଷ୍ଟାନ୍ତ ରୂପେ ମାନସିଂହଙ୍କ କୋଣାର୍କ କବିତାକୁ ଗ୍ରହଣ କରାଯାଇପାରେ । ବାରୁଣୀ (୧/୭) ସଂଖ୍ୟାରେ ପ୍ରକାଶିତ କବିତାଠାରୁ ପୁସ୍ତକରେ ପ୍ରକାଶିତ କବିତା ମଧ୍ୟରେ ଆକାଶପାତାଳ ପ୍ରଭେଦ ଦୃଷ୍ଟିଗୋଚର ହୁଏ । କିନ୍ତୁ ଏହାପ୍ରତି ଅନେକ ସଂପାଦକ ଉଦାସୀନ ରହିବା ଫଳରେ କବିଙ୍କର ପ୍ରତିଭା ମୂଲ୍ୟାୟନ ଉତ୍କର୍ଷତାକୁ ସ୍ପର୍ଶ କରିପାରେନାହିଁ । ଲେଖକମାନଙ୍କର ମୂଳ ପାଣ୍ଡୁଲିପି ସଂରକ୍ଷଣ କରିବାର ପରମ୍ପରା ଓଡିଶାରେ ନାହିଁ । ବିଭିନ୍ନ ପ୍ରୁଫ, ବିଭିନ୍ନ ସଂସ୍କରଣ ମଧ୍ୟ ଦୁଷ୍ପ୍ରାପ୍ୟ । ଏପରିସ୍ଥଳେ ସଂପାଦକଟିଏ ନାଚାର । ସେ ଯା'ହେଉ ଲେଖକର ଜୀବଦ୍ଦଶାରେ ପ୍ରକାଶିତ ଶେଷ ସଂସ୍କରଣକୁ ମାନକ ରୂପେ ଗ୍ରହଣ କରିବା ଯୁକ୍ତିସିଦ୍ଧ । କିନ୍ତୁ ଲେଖକର ମୃତ୍ୟୁପରେ ପ୍ରଥମେ ପ୍ରକାଶ ପାଉଥିବା ରଚନା ଗୁଡିକର ମୌଳିକତା ନିର୍ଦ୍ଧାରଣ କରିବା ବିଶେଷ କଷ୍ଟକର । ପାଣ୍ଡୁଲିପିର ଅଭାବ ଲେଖକର ନିଜସ୍ୱ ସୂଚନାର ଅଭାବରେ ଏହି କାର୍ଯ୍ୟ ଅଧିକ ଦୁଷ୍କର ଓ ଦୋଷଦୁଷ୍ଟ । ଏଥିରେ ପ୍ରକାଶକ ବା ସଂପାଦକର ସୂଚନାକୁ ପାଥେୟ କରି ଲେଖକର ପୃଷ୍ଠଭୂମି ବା ଅନ୍ୟାନ୍ୟ ରଚନାକୁ ଆଧାର କରି ସତ୍ୟାନୁସଂଧାନର ଧାରାକୁ ପ୍ରତିଷ୍ଠା ଦିଆଯାଇପାରେ ।

**(୨) ସହଯୋଗୀ ଉପକରଣ :** ସାହିତ୍ୟ ସଂପାଦନା ସମୟରେ ସହଯୋଗୀ ଉପକରଣ ଗୁଡିକ ଉପରେ ଧାରଣା ନଥିଲେ ସଂପାଦନା କର୍ମ ଏକଦେଶଦର୍ଶୀ ହୋଇଯାଏ । ଏହି ସହଯୋଗୀ ଉପକରଣ ଗୁଡିକୁ ନିମ୍ନ ପ୍ରକାରେ ତାଲିକାଭୁକ୍ତ କରାଯାଇପାରେ ।

କ) ଲିଖନ ଉପକରଣ ଉପରେ ଧାରଣା : ସମକାଳୀନ ଲିଖନ ଉପକରଣ ସଂପର୍କରେ ଜ୍ଞାନ, କାଗଜ, କଲମ, କାଳି, ପେନସିଲ, ଛାପାସାମଗ୍ରୀ ପ୍ରଭୃତି ।

ଖ) ଛାପା ସଂପର୍କରେ ଜ୍ଞାନ ।

ଗ) ବ୍ୟାକରଣ : ବିରାମ ଚିହ୍ନ, ବାକ୍ୟ ଗଠନ, ବିଭିନ୍ନ ବର୍ଣ୍ଣ, ମାତ୍ରା, ସଂଖ୍ୟା ଉପରେ ଜ୍ଞାନ ।

ଘ) ସମକାଳୀନ ଅଭିଧାନ ଉପରେ ଜ୍ଞାନ ।

**କ) ଲିଖନ ଉପକରଣ :** ଲିଖନ ଉପକରଣର ବିବର୍ତ୍ତନ ଓ ତାର ପ୍ରୟୋଗଧାରା ସଂପର୍କରେ କୌଣସି ବିଧିବଦ୍ଧ ଅନୁଶୀଳନ ଗ୍ରନ୍ଥ ଓଡିଆରେ ନାହିଁ । ପୋଥି ରଚନା ଏବଂ କାଗଜ କାଳିରେ ରଚନା ଭିତରେ ଅନେକ ତାରତମ୍ୟ ଦେଖାଯାଏ । ଲିଖନ ଉପକରଣ ଉପରେ ଅନେକ ବର୍ଣ୍ଣର ବ୍ୟବହାର ନିର୍ଭର କରେ । ଯେମିତିକି ତାଳପତ୍ରରେ ଲେଖନୀ ଦ୍ୱାରା ଲେଖିଲା ବେଳେ ଚନ୍ଦ୍ରବିନ୍ଦୁର ବ୍ୟବହାର କାରାଯାଏ ନାହିଁ । ପରବର୍ତ୍ତୀ ପର୍ଯ୍ୟାୟରେ ଚନ୍ଦ୍ରବିନ୍ଦୁର ବହୁଳ ବ୍ୟବହାର ଦେଖାଯାଏ ।

ପ୍ରାରମ୍ଭିକ ପର୍ଯ୍ୟାୟର ପତ୍ରପତ୍ରିକା ଓ ପୁସ୍ତକ ମୁଦ୍ରଣ ସମୟରେ ଦେଖାଯାଉଥିବା ଅକ୍ଷରର ବ୍ୟବହାର ସହିତ ପରିଚୟ ନଥିଲେ ପାଠକୁ ହୃଦୟଙ୍ଗମ କରିବା ସହଜ ନୁହେଁ । ଏପରି କିଛି ଦୃଷ୍ଟାନ୍ତ ନିମ୍ନରେ ଉଦ୍ଧୃତ କରାଯାଇପାରେ ।

ପ୍ରଥମ ପର୍ଯ୍ୟାୟରେ ଅକ୍ଷରର ବ୍ଲକ ପଥର ବା କାଠରେ ତିଆରି ହୋଇ ଛାପା ହେଉଥିଲା । ଯାହାକି ଉତ୍କଳ ଦୀପିକା ପ୍ରଥମ ବର୍ଷର ସଂଖ୍ୟା ଗୁଡିକରେ ଦୃଷ୍ଟିଗୋଚର ହୁଏ । ପରବର୍ତ୍ତୀ ପର୍ଯ୍ୟାୟରେ ଶିଶାରେ ତିଆରି ଅକ୍ଷର ଛାପାଖାନା ଗୁଡିକରେ ବ୍ୟବହୃତ ହେଲା । ଧିରେ ଧିରେ ଏହି ଅକ୍ଷର ଗୁଡିକ ବ୍ୟବହାର ଅନୁସାରେ ଓ ସମୟାନୁସାରେ ବିବର୍ତ୍ତିତ ହେଲା । ଏଠାରେ କିଛି ଦୃଷ୍ଟାନ୍ତ ନିଆଯାଇପାରେ ।

| | |
|---|---|
| ଉ୍ନୁସାରେ - ଅନୁସାରେ | କନ୍ୱରଭେଟର - କଞ୍ଜରଭେଟର |
| ଉତି - ଅତି | ରପେ - ରୂପେ |
| ସଂକ୍ରାନ୍ତ - ସଂକ୍ରାନ୍ତ | କାର୍ଯ୍ୟର - କାର୍ଯ୍ୟରୁ |
| ସଦ୍ବିବେଚନା - ସଦ୍‌ବିବେଚନା | କେହି୨- କେହି କେହି |

ରୁ ସ୍ଥାନରେ ର, ର ବ୍ୟବହାର, ତ୍ର ଓ କ୍ର ସ୍ଥାନରେ ଏ ବା ଏ଼ ଅକ୍ଷର ଏବଂ ଅ ସ୍ଥାନରେ ଉ୍ ବ୍ୟବହାର ପ୍ରାରମ୍ଭିକ ପତ୍ରପତ୍ରିକା ଗୁଡିକରେ ଦେଖାଯାଏ । 'ଇ' କାର ଓ 'ଈ' କାର ବ୍ୟବହାରରେ ଅନେକତ୍ର ବ୍ୟତିକ୍ରମ ପରିଲକ୍ଷିତ ହୁଏ ।

ଲିଖନ ଉପକରଣର ସ୍ୱରୂପ, ବ୍ୟବହାର ଓ ପ୍ରକୃତିଗତ ବିଚିତ୍ରତାକୁ ନେଇ ପାଣ୍ଡୁଲିପି ପ୍ରସ୍ତୁତି ଉପରେ ପ୍ରଭାବ ପଡିଥାଏ । ପେନସିଲ, ଝରକଲମ, କାଠିକଲମ,

ଫାଉଣ୍ଟେନ ପେନ ଓ ବଲପେନ ଅନୁସାରେ ପାଣ୍ଡୁଲିପିର ପ୍ରସ୍ତୁତି ଭିନ୍ନ ଭିନ୍ନ ହୋଇଥାଏ । ଲିଖନ ଉପକରଣ ଯୁଗ ଯୁଗ ଧରି ବିବର୍ତ୍ତିତ ହୋଇ କାଗଜ ଓ କଲମ ମାଧ୍ୟମରେ ଚରମ ଅବସ୍ଥା ପ୍ରାପ୍ତ ହୋଇଛି । ପ୍ରାକ୍‌ଐତିହାସିକ ଯୁଗରେ ତୁଳାର ପଟ୍ଟ ଓ ଭୂର୍ଜପତ୍ର ଗଛର ଛାଲି ଲେଖା କାର୍ଯ୍ୟ ପାଇଁ ବ୍ୟବହୃତ ହେଉଥିଲା । ପରେ ପରେ କାଠ ଓ ଚମଡ଼ାକୁ ମଧ୍ୟ ଲିଖନ ପାଇଁ ବ୍ୟବହୃତ କରାଗଲା । ଇଜିପଟ୍‌ରେ ପାପିରସ (cyperus papyrus) ନାମକ ଏକ ଜଳଜ ଉଦ୍ଭିଦରୁ କାଗଜ ପ୍ରସ୍ତୁତ ହୋଇ ଲିଖନ ପାଇଁ ବ୍ୟବହୃତ ହେଲା । ପାପିରସର ମୂଲ୍ୟାଧିକ୍ୟ ଓ ଦୁର୍ଲଭତା ଯୋଗୁଁ ଚୀନରେ କାଠ ମଣ୍ଡରୁ କାଗଜ ପ୍ରସ୍ତୁତ ହେଲା । ଭାରତରେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ତାଳପତ୍ର ହିଁ ପ୍ରଧାନ ଲିଖନ ଉପକରଣ ରୂପେ ବ୍ୟବହାର ହୋଇ ଆସୁଥିଲା । ମୁଦ୍ରଣ ଯନ୍ତ୍ର ଓ କାଗଜର ଆର୍ବିଭାବ ପରେ ତାଳପତ୍ରର ବ୍ୟବହାର ବନ୍ଦ ହୋଇଯାଇଥିଲା । ସେହିପରି ଲେଖନୀ, ପର, ପ୍ରଭୃତିର କାର୍ଯ୍ୟକୁ ଝର କଲମ ଓ ବଲ କଲମ ସହଜ କରିଥିଲା । ଲିଖନ ଉପକରଣର ଏହି ବିବର୍ତ୍ତନ ମଧ୍ୟ ଦେଇ ସାହିତ୍ୟ ସୃଷ୍ଟିର ଶୈଳୀ, ସ୍ୱରୂପ ଓ ରୂପଚର୍ଯ୍ୟା ମଧ୍ୟ ବିବର୍ତ୍ତିତ ହୋଇଥିଲା ।

**ଖ) ଛାପା ସଂପର୍କରେ ଜ୍ଞାନ :** ୧୮୩୭ରେ ମିଶନାରୀମାନଙ୍କ ଦ୍ୱାରା ମିଶନ ପ୍ରେସ ପ୍ରତିଷ୍ଠା ପରେ ପରେ ଓଡ଼ିଶାରେ କ୍ରମାନ୍ୱୟରେ ଅନେକ ପ୍ରେସ ପ୍ରତିଷ୍ଠା ହୁଏ । କ୍ରମଶଃ ଅନେକ ପୁସ୍ତକ ପ୍ରକାଶିତ ହୋଇ ଜ୍ଞାନର ପରିସର ବୃଦ୍ଧି ପାଇଥିଲା । ପ୍ରେସରେ କଂପୋଜିଟର, ପ୍ରୁଫରିଡର,କପି ହୋଲଡର, ମୁଦ୍ରାକାର ପ୍ରଭୃତି ବିଭିନ୍ନ ପାଣ୍ଡୁଲିପିକୁ ଛାପା ଆକାର ପ୍ରଦାନ କଲେ । ପରେ ପରେ ବ୍ଲକ ତିଆରି ହୋଇ ଛବି ମଧ୍ୟ ଛାପା ହେଲା । ପ୍ରେସ ସଂପର୍କିତ ମୌଳିକ ଜ୍ଞାନ ଆହରଣ ପାଇଁ ଓଡ଼ିଆରେ କୌଣସି ଉପାଦେୟ ପୁସ୍ତକ ଉପଲବ୍ଧ ନୁହେଁ । ଛାପାଖାନାରେ ଫର୍ମା ଅନୁସାରେ ଅକ୍ଷର ସଂଯୋଜିତ ହୋଇ ଛାପା ହେଉଥିଲା । ସଂପ୍ରତି D.T.P. ଦ୍ୱାରା ଏହି କାର୍ଯ୍ୟ ଅଧିକ ସୁଗମ ଓ ସଂଶୋଧନାଦି ଅଧିକ ସରଳ ହୋଇପାରିଛି । ପ୍ରେସକୁ ଆସୁଥିବା ପାଣ୍ଡୁଲିପି ପ୍ରସ୍ତୁତ ବେଳେ କାଗଜର ଏକ ପାର୍ଶ୍ୱରେ ସୁନ୍ଦର ହସ୍ତାକ୍ଷରରେ ଲେଖାଯାଉଥିଲା । ବର୍ତ୍ତମାନ କଂପ୍ୟୁଟର ଦ୍ୱାରା ଛାପା କାର୍ଯ୍ୟ ହେଉଥିବାରୁ କାଗଜର ଉଭୟ ପାର୍ଶ୍ୱରେ ଲେଖିଲେ ମଧ୍ୟ ଚଳୁଛି । ପାଣ୍ଡୁଲିପିଟି ଛପା ହେବାର ପ୍ରାରମ୍ଭିକ ପର୍ଯ୍ୟାୟରେ ପ୍ରୁଫରିଡର ସଂଶୋଧନ କରିଥାଆନ୍ତି । ଏହି ସମୟରେ ମୂଳ ଲେଖା ସହିତ ଛାପା ଲେଖାକୁ ତୁଳନା କରିବା, ବନାନ ଶୁଦ୍ଧି ଦେଖିବା, ବିରାମ ଚିହ୍ନ ଗୁଡ଼ିକୁ ଦେଖିବା ସ୍ପେସିଙ୍ଗ ଦେଖିବା ପ୍ରୁଫରିଡରଙ୍କ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । ଅଭିଜ୍ଞ ପ୍ରୁଫରିଡରଙ୍କ ଅଭାବରେ ଛାପା ଦୋଷଦୁଷ୍ଟ ହୋଇଥାଏ । ଏହି ପ୍ରସଙ୍ଗରେ ଶବ୍ଦନିଧି ଅଭିଧାନର ପ୍ରଣେତା ଚତୁର୍ଭୁଜ ପଟ୍ଟନାୟକ ଓ ଶିବନାରାୟଣ ନାୟକଙ୍କ ସ୍ୱୀକାରୋକ୍ତି ପ୍ରଣିଧାନ ଯୋଗ୍ୟ । "ଅନାୟତ୍ତ କାରଣବଶତଃ ଶବ୍ଦନିଧି ଦୁଇଖଣ୍ଡ ହୋଇ ପ୍ରଚାରିତ ହେଲା । ପ୍ରଥମ ଖଣ୍ଡ (ଅ ଠାରୁ ନ ପର୍ଯ୍ୟନ୍ତ) କଲିକତା ବାପ୍‌ଟିଷ୍ଟ ମିସନ ଯନ୍ତ୍ରରେ ମୁଦ୍ରିତ

ଏବଂ ଦ୍ୱିତୀୟ ଖଣ୍ଡ (ପ ଠାରୁ ହ ପର୍ଯ୍ୟନ୍ତ) କଟକ ବାପ୍‌ଟିଷ୍ଟ ମିସନ ଯନ୍ତ୍ରରେ ମୁଦ୍ରିତ । ପ୍ରଥମ ଖଣ୍ଡର ପ୍ରୁଫ୍ ସ୍ୱୟଂ ନଦେଖି ଥିବାରୁ କେତେକ ଅଶୁଦ୍ଧିଦୋଷ ରହି ଯାଇଅଛି ।" (ଭୂମିକା - ଶବ୍ଦନିଧି - ୧୮୮୩)

ପୂର୍ବେ ଛାପା ସମୟରେ ଫର୍ମା ପ୍ରସ୍ତୁତ ବେଳେ ଫଣ୍ଡ (ଅକ୍ଷର) ଅଭାବରେ କଂପୋଜିଟର ମାନେ ଅନ୍ୟ ଅକ୍ଷର ବସାଇ ଦେଉଥିଲେ । ଯେପରିକି 'ସ' ଭେଦ ଓ 'ଇ' କାର 'ଈ' କାର ମଧ୍ୟରେ ପ୍ରଭେଦ ବେଳେ ବେଳେ ରଖାଯାଉନଥିଲା । ବର୍ତ୍ତମାନ କିନ୍ତୁ D.T.P. ଦ୍ୱାରା ନିର୍ଭୁଲ ଛାପାର ସଂଭାବନା ସୃଷ୍ଟି ହୋଇଛି । ସଂପ୍ରତି ଲାଙ୍ଗୁଏଜ୍ ଟେକନୋଲୋଜୀ ପ୍ରଚଳନ ଫଳରେ ସାହିତ୍ୟ ସଂପାଦନାର ସଂଜ୍ଞା ଓ ସ୍ୱରୂପ ବଦଳି ଯାଇଛି । ଆଧୁନିକ କଂପ୍ୟୁଟର ବିଜ୍ଞାନର ଅନ୍ୟତମ ଅବଦାନ ହେଉଛି ଭାଷା ଔଦ୍ୟୋଗୀକି ବିଦ୍ୟା ବା ଲାଙ୍ଗୁଏଜ୍ ଟେକନୋଲୋଜୀ । ଏହାରି ମାଧ୍ୟମରେ ଅତି କମ୍ ସମୟରେ ଭାଷା ସଂରଚନା ସମ୍ବନ୍ଧରେ ଜ୍ଞାନକୁ ଅଧ୍ୟୟନ କରାଯାଇପାରେ । ଏଥିପାଇଁ ପଦ, ପଦାର୍ଥ, ଲକ୍ଷଣାର୍ଥ, ବାକ୍ୟାର୍ଥ ଇତ୍ୟାଦି ଅଧ୍ୟୟନ କରାଯିବା ସଂଗେ ସଂଗେ ଏତତ୍ ସଂପର୍କିତ କ୍ରିୟା କାରକ ତତ୍ତ୍ୱ, ଶାବ୍ଦ ବୋଧ ତତ୍ତ୍ୱ ଓ ଭାବ ତତ୍ତ୍ୱାଦି ଅଧ୍ୟୟନ କରାଯାଇ ପାରେ । ଏ ସମସ୍ତ କାର୍ଯ୍ୟ ନିମ୍ନ ଲିଖିତ ବିବିଧ ଔଦ୍ୟୋଗୀକି ବିକାଶ ଦ୍ୱାରା ଓଡ଼ିଆ ଭାଷାରେ ସମ୍ଭବ ହୋଇପାରିଛି ।

୧. ଇ-ଶବ୍ଦକୋଷ, ୨. ଓଡ଼ିଆ-ଭାଷାକୋଷ, ୩. ଓଡ଼ିଆ-ସଂଶୋଧିକା, ୪. ତ୍ରିଭାଷିକ-ଲେଖିକା, ୫. ଓଡ଼ିଆ - ବ୍ୟାକରଣ ସଂଶୋଧିକା, ୬. ଓଡ଼ିଆ- ଶବ୍ଦରୂପ- ବିଶ୍ଳେଷିକା ଓ ୭. ଓଡ଼ିଆ ଯାନ୍ତ୍ରିକ ଅନୁବାଦିକା । (ଓଡ଼ିଆ ଭାଷାର ଔଦ୍ୟୋଗିକ ବିକାଶ - ଡଃ ସଂଘମିତ୍ରା ମହାନ୍ତି - ଏଷଣା - ୪୮ :ଜୁନ୍ ୨୦୦୪) ଏହି ସମସ୍ତ ଔଦ୍ୟୋଗୀକି ବିକାଶ ଦ୍ୱାରା କଂପ୍ୟୁଟର ମାଧ୍ୟମରେ ସାହିତ୍ୟ ସଂପାଦନାର ଧାରା ସରଳ ଓ ଦ୍ରୁତ ହୋଇଥିଲେ ମଧ୍ୟ ଶୁଦ୍ଧ ପାଠ ସଂଗ୍ରହ ଦିଗରେ କଂପ୍ୟୁଟର କୌଣସି ସାହାଯ୍ୟ କରି ପାରିବ ନାହିଁ । ସାହିତ୍ୟର ପାଠ ନିର୍ଣ୍ଣୟ ଓ ସଂଗ୍ରହ କ୍ଷେତ୍ରରେ ସଂପାଦକକୁ ନିଜସ୍ୱ ପ୍ରଚେଷ୍ଟାରେ ଆଗେଇବାକୁ ପଡ଼ିବ । ଏହା ଯେତିକି କଷ୍ଟସାଧ୍ୟ ସେତିକି ସମୟ ସାପେକ୍ଷ ।

ଛାପାଖାନା ଗୁଡ଼ିକର ନିଜସ୍ୱ ନିର୍ଦ୍ଦିଷ୍ଟ ଫଣ୍ଡ, ବ୍ଲକ, ଛାପାଶୈଳୀ ରହୁଥିଲା । କଟକ ପ୍ରିଣ୍ଟିଂ ପ୍ରେସ (୧୮୬୬), ଉତ୍କଳ ପ୍ରିଣ୍ଟିଂ କୋ (ବାଲେଶ୍ୱର-୧୮୬୮), ଦେ ପ୍ରେସ (ବାଲେଶ୍ୱର-୧୮୭୩), ସୁଡ଼ଳ ପ୍ରେସ (କଟକ-୧୮୮୬), ବା ଜଗନ୍ନାଥ ବଲ୍ଲଭ ପ୍ରେସ (ଦେବଗଡ଼-୧୮୮୬) ପ୍ରଭୃତିର ଛାପାରେ ଭିନ୍ନତା ପରିଲକ୍ଷିତ ହୁଏ । ଛାପା ସମୟରେ ଭୂମିକା / ଉପକ୍ରମ ପ୍ରଭୃତିର ପୃଷ୍ଠାଙ୍କ ଅଣାରେ ପ୍ରଦତ୍ତ ହେଉଥିଲା । ଅଣା ସଂପର୍କରେ ଜ୍ଞାନ ନଥିଲେ ପୃଷ୍ଠା ଜାଣିବା କଷ୍ଟକର । ସାଲ, ମସିହା, ଓଡ଼ିଆ ମାସ ପ୍ରଭୃତି ସଂପର୍କରେ ଜ୍ଞାନ ନଥିଲେ ପତ୍ରପତ୍ରିକାର ସଂଖ୍ୟା ଜାଣିବା ସଂଭବ ନୁହେଁ । ଏଣୁ ଛାପା ସଂପର୍କରେ ଜ୍ଞାନ ଆହରଣ କରିବା ସହିତ ଆନୁସଙ୍ଗିକ ବିଷୟରେ ସମ୍ୟକ ଜ୍ଞାନ ହିଁ ସାହିତ୍ୟ ସଂପାଦନାରେ ସହାୟକ ହୋଇଥାଏ ।

(ଗ) **ବ୍ୟାକରଣ ଜ୍ଞାନ :** କୌଣସି ଭାଷାର ପ୍ରାଣ ବ୍ୟାକରଣ । ବ୍ୟାକରଣ ଭାଷାକୁ ଶୁଦ୍ଧ ଓ ଶୃଙ୍ଖଳିତ କରିଥାଏ । ସମକାଳୀନ ସାହିତ୍ୟକୁ ଅଧ୍ୟୟନ କଲାବେଳେ ବ୍ୟାକରଣର ସୂତ୍ର ଓ ଶୈଳୀପ୍ରତି ଦୃଷ୍ଟିଦେବା ନିହାତି ଆବଶ୍ୟକ । ବିଭିନ୍ନ ବର୍ଣ୍ଣ, ଧ୍ୱନି, ବାକ୍ୟଗଠନ, ବିରାମ ଚିହ୍ନ ପ୍ରଭୃତି ଉପରେ ଜ୍ଞାନ ଆହରଣ ଦ୍ୱାରା ସାହିତ୍ୟ ଅଧ୍ୟୟନ ଓ ସଂପାଦନା ତ୍ରୁଟିଶୂନ୍ୟ ହୋଇଥାଏ ।

ପୂର୍ବେ କାବ୍ୟ ରଚନା ହେଲାବେଳେ କ୍ରମାନ୍ୱୟରେ ରଚିତ ହେଉଥିଲା । ଛାପାଖାନା ଆସିଲା ପରେ ଛନ୍ଦ ଏବଂ ଯତି ଅନୁସାରେ କାବ୍ୟ ପ୍ରକାଶ ପାଇଲା । ବହିର ସାଇଜ ଅନୁସାରେ ଛନ୍ଦ ଗୁଡ଼ିକ ସଜ୍ଜିତ ହେଲା । ପ୍ରଥମେ ସଂଗୀତ ନିର୍ଭର ଥିବା କାବ୍ୟାଦି ଛାପାଖାନା ଯୋଗୁଁ ଯତିପାତ ନିର୍ଭର ହେଲା । ପଦ୍ୟର ପ୍ରଥମ ପାଦ ଶେଷରେ ଗୋଟିଏ ଗାର ବା ଦୁଇଟି ଗାର ଓ ଶେଷ ପାଦର ଶେଷରେ ଦୁଇଟି ଗାର ବା ପଦ ସଂଖ୍ୟା ଦେବାର ପ୍ରଥା ପ୍ରଚଳିତ ଥିଲା । ଦୃଷ୍ଟାନ୍ତ ରୂପେ ସଂବଲପୁର ହିତୈଷିଣୀ ୧/୧୦, ୨୧-୮-୧୮୮୯ ରେ ପ୍ରକାଶିତ ପାଟଣାର ମର୍କରୋଗର ବର୍ଣ୍ଣନା କବିତାକୁ ଛାପା ପ୍ରକାରେ ଏଠାରେ ଉଦ୍ଧୃତ ହେଲା ।

**ରାଗ : ମଙ୍ଗଳଗୁଜ୍ଜରୀ**

ଅନନ୍ତ ଅନନ୍ତ କୀର୍ତ୍ତି ଭବେ ପ୍ରକାଶକ ।। ଅଚଳ ଅ-
ଚଳକରେ ହେଲେ ଉଦ୍ଧାରକ ।। ୧ ।। ରାମ ଅବରଜ
ରକ୍ଷ ବ୍ରଜଜନ ଚୟ ।। ବଜ୍ର ବକ୍ର କର ଘାତେ ବର୍ଷୁ
ଶିଳାଚୟ ଯେ ।। ୨ ।। ତବ ଆଜ୍ଞା ବହ ଚଣ୍ଡକର ସୁଧା-
କର ।। ଅନନ୍ତ ଅନନ୍ତେ ନିତ୍ୟେ ହୋନ୍ତି ଅବତାର-
ଯେ ।। ୩ ।।...(ପୃ-୪୭)

ସଂବଲପୁର ହିତୈଷିଣୀ ପ୍ରାରମ୍ଭିକ ସଂଖ୍ୟା ଗୁଡ଼ିକରେ ଦେଖାଯାଏ ପୂର୍ଣ୍ଣଚ୍ଛେଦର ବ୍ୟବହାର କମ୍ ବରଂ କମାର ବ୍ୟବହାର ଅଧିକ ଦେଖାଯାଏ । ଉତ୍କଳ ଦୀପିକା ପ୍ରାରମ୍ଭିକ ପର୍ଯ୍ୟାୟରେ ଦୀର୍ଘ ବାକ୍ୟ ଦେଖିବାକୁ ମିଳେ । ବିଶେଷ୍ୟ ବିଶେଷଣର ପ୍ରୟୋଗ ବାକ୍ୟ ଆରମ୍ଭରୁ , ଏବଂ ଲେଖି ବାକ୍ୟ ଆରମ୍ଭ କରିବା, ମାତ୍ର ଯେ ରୂପ, ଇତ୍ୟାଦି ବ୍ୟବହାର କରି ଯୌଗିକ ବାକ୍ୟ ଗଠନର ପରଂପରା ଦୃଷ୍ଟିଗୋଚର ହୁଏ । ଦୀପିକାର ଏହି ଭାଷା ପ୍ରୟୋଗର ଚମତ୍କାରିତା ନିମ୍ନ ଦୃଷ୍ଟାନ୍ତରୁ ସ୍ପଷ୍ଟ ହେବ ।

**ଉତ୍କଳଭାଷାର ଉନ୍ନତି ପ୍ରତି ବ୍ୟାଘାତ**

"ଆମ୍ଭେମାନେ ଗତ ସପ୍ତାହରେ ବ୍ୟକ୍ତ କରିଥିଲୁଁ ଯେ ଉତ୍କଳଭାଷାର ଉନ୍ନତିସାଧକ ତିନି ଗବର୍ଣ୍ଣମେଣ୍ଟ ହେବାର ଏ କାର୍ଯ୍ୟ ସୁଚାରୁ ରୂପେ ହେଉନାହିଁ । ଏ ରୂପ କହିବାର

ତାତ୍ପର୍ଯ୍ୟ ଏହି ଯେ ଐକ୍ୟତାଦ୍ୱାରା ଯେରପ କାର୍ଯ୍ୟ ସଫଳ ହୁଅଇ ଭିନ୍ନ ୨ ହୋଇ କାର୍ଯ୍ୟ କଲେ ସେରପ ହୁଏ ନା କେହି ଅବା ପ୍ରତିବାଦ କରିବେ ଯେ ତିନି ଗବର୍ଣ୍ଣମେଣ୍ଟ ଏକତ୍ରରେ କାର୍ଯ୍ୟ କରଥିଲେ କୌଣସି ଗୋଟିଏ ଭ୍ରମର ଫଳ ସମସ୍ତଙ୍କୁ ଭୋଗ କରିବାକୁ ହୁଅନ୍ତା ମାତ୍ର ସ୍ୱତନ୍ତରପେ କାର୍ଯ୍ୟ ହେଉଥିବାର ସେରପ ଶଙ୍କାର କାରଣ ନାହିଁ । ଏବଂ ତିନି ପ୍ରକାର ନିୟମରେ କାର୍ଯ୍ୟ ଚଳୁଥିବାର ତୁଳନା ଦ୍ୱାରା ଏକ ୨ ସମୟରେ ଏକ ୨ ସ୍ଥାନର ନିୟମ ଉତ୍କୃଷ୍ଟ ଜଣାଯିବ ଓ ଅପର ସ୍ଥାନର କର୍ମଚାରିମାନେ ସେଥିରେ ଅନୁସରଣ କଲେ କ୍ରମଶଃ ସୁପ୍ରଣାଳୀ ସ୍ଥାପନ ଓ ତାହାର ଉତ୍ତରୋତ୍ତର ବୃଦ୍ଧି ହେଉଥିବ ।"(ଉତ୍କଳ ଦୀପିକା - ୪/୧୨, ୨୦-୩-୧୮୬୯)

ବ୍ୟାକରଣ ପ୍ରଣୟନ ଅନେକ ସ୍ଥଳରେ ମୁଖ୍ୟତଃ ଉଦ୍ଦେଶ୍ୟ ପ୍ରଣୋଦିତ ଭାବରେ ହୋଇଥାଏ । କେଉଁଠି ଭାଷା ବିକାଶ ପାଇଁ ଏହାର ସୃଷ୍ଟିତ କେଉଁଠି ନିଜ ରଚନା ଶୈଳୀକୁ ପ୍ରତିଷ୍ଠା ଦେବାପାଇଁ ଏହା ଉଦ୍ଦିଷ୍ଟ । ପ୍ରସଙ୍ଗତଃ ପ୍ରଥମ ଓଡିଆ ବ୍ୟାକରଣ ରୂପେ ମାନ୍ୟତାପ୍ରାପ୍ତ ସଟନଙ୍କ ଓଡିଆ ବ୍ୟାକରଣକୁ ଅଧ୍ୟୟନ କଲେ ଦେଖାଯାଏ ଏହି ବ୍ୟାକରଣଟି ୧୮୩୧ରେ ପ୍ରକାଶିତ ହୋଇଥିଲା । ଏହା ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ହୋଇଥିଲେ ମଧ୍ୟ ଏହାର ପ୍ରଣୟନର ଉଦ୍ଦେଶ୍ୟ ହେଲା ବ୍ରିଟିଶ ପ୍ରଶାସକମାନଙ୍କୁ ଓଡିଆ ଶିକ୍ଷାଦାନ କରିବା । ସେହିପରି ରାଧାନାଥ ରାୟଙ୍କ ପ୍ରଣିତ ବ୍ୟାକରଣ ପ୍ରବେଶର ଉଦ୍ଦେଶ୍ୟ ଥିଲା ରାଧାନାଥ ସାହିତ୍ୟର ପ୍ରତିଷ୍ଠା ଏବଂ ତାଙ୍କ ଶୈଳୀକୁ ଆଦର୍ଶ ରୂପେ ପ୍ରତିପାଦିତ କରିବା । ଉନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ପ୍ରଣିତ ବ୍ୟାକରଣ ଓ ଅଳଙ୍କାର ପୁସ୍ତକ ଗୁଡିକ ଉଦ୍ଦେଶ୍ୟ ଥିଲା ଏକ ଆଦର୍ଶ ସାହିତ୍ୟଧାରାର ପ୍ରତିଷ୍ଠା । ଯେଉଁମାନେ ଲେଖକ ଏବଂ ଅନ୍ୟପକ୍ଷରେ ବ୍ୟାକରଣ ରଚକ ତାଙ୍କର ବ୍ୟାକରଣ ପରୋକ୍ଷରେ ତାଙ୍କ ଶୈଳୀକୁ ସମର୍ଥନ କରୁଥିଲା । ଏହି ପ୍ରସଙ୍ଗକୁ ରାଧାନାଥୀ କାବ୍ୟ ଶୈଳୀରେ ପ୍ରଚ୍ଛନ୍ନ ଉପଧାମିଳନ ପରଂପରା ସ୍ପଷ୍ଟ କରିଥାଏ । ଯାହାକୁ ବାସୁଦେବ ସୁଢଳଦେବଙ୍କ ଅଳଙ୍କାର ବୋଧୋଦୟ (୧୮୮୬) ଓ ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ଅଳଙ୍କାର ସାର ସମର୍ଥନ କରେ । ଅଳଙ୍କାର ସାରରେ ପ୍ରଦତ୍ତ ଛାନ୍ଦ ସଂପର୍କିତ ଉକ୍ତି ରାଧାନାଥ ଯୁଗୀୟ ଶୈଳୀକୁ ସମର୍ଥନ କରୁଥିବାର ପ୍ରମାଣ ମିଳେ ।

ଛାନ୍ଦ ସ୍ଥୁଳତଃ ଦୁଇ ପ୍ରକାର ଯଥା - "ମିତ୍ରାକ୍ଷର ଓ ଅମିତ୍ରାକ୍ଷର । ଯେଉଁ ଛନ୍ଦ ରଚ୍ନାରେ ପ୍ରତି ପଦର ଅନ୍ତ୍ୟ ଅକ୍ଷର ସହିତ ଅପର ପଦର ଅନ୍ତ୍ୟ ଅକ୍ଷରର ସାଦୃଶ୍ୟ ଦେଖାଯାଏ ସେଠାରେ ସେହି ଛନ୍ଦକୁ ମିତ୍ରାକ୍ଷର ବୋଲାଯାଏ । ସାଦୃଶ୍ୟ ନଥିଲେ ଅମିତ୍ରାକ୍ଷର କହନ୍ତି ।"

ମିତ୍ରାକ୍ଷର ଦୁଇ ପ୍ରକାର । ଯଥା - "ପୂର୍ଣ୍ଣମିତ୍ରାକ୍ଷର, ଅପୂର୍ଣ୍ଣମିତ୍ରାକ୍ଷର । ପଦ ଶେଷରେ ଉପାନ୍ତ୍ୟ ସ୍ୱର ସହିତ ମିତ୍ରାକ୍ଷରରର ମେଳହେଲେ ପୂର୍ଣ୍ଣମିତ୍ରାକ୍ଷର ହୁଏ । କେବଳ ପଦ ଶେଷସ୍ଥିତ ସ୍ୱର ସହିତ ବର୍ଣ୍ଣ ସାମ୍ୟହେଲେ ଅପୂର୍ଣ୍ଣମିତ୍ରାକ୍ଷର ହୁଏ ।" (ଅଳଙ୍କାରସାର : ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଗ୍ରନ୍ଥାବଳୀ-ପୃ ୩୮୬)

ସମକାଳୀନ ବ୍ୟାକରଣର ଜ୍ଞାନ ସାହିତ୍ୟ ସଂପାଦନା କ୍ଷେତ୍ରରେ ଏକ ଅପରିହାର୍ଯ୍ୟ ଅଙ୍ଗ । ବ୍ୟାକରଣ ଜ୍ଞାନହିଁ ଏକ ଶୁଦ୍ଧ ରୁଚିପୂର୍ଣ୍ଣ ସାହିତ୍ୟ ସଂପାଦନାର ଦିଗ୍‌ଦର୍ଶକ ହୋଇଥାଏ ।

## (ଘ) ସମକାଳୀନ ଅଭିଧାନ ଉପରେ ଜ୍ଞାନ :

ସାହିତ୍ୟ ସଂପାଦନାର ସର୍ବଶ୍ରେଷ୍ଠ ସହଯୋଗକାରୀ ଅଭିଧାନ । ଅଭିଧାନ ଉପରେ ଜ୍ଞାନ ନରହିଲେ ସମକାଳୀନ ସାରସ୍ୱତ ଧାରା, ସଂସ୍କୃତି ଏବଂ ଶବ୍ଦ ସଂଭାରକୁ ଜାଣିବା ଅତ୍ୟନ୍ତ କଷ୍ଟକର । ଯେଉଁ ସମୟର ସାହିତ୍ୟ ସଂପାଦିତ ହେବ ସେହି ସମୟର ଅଭିଧାନକୁ ଗ୍ରହଣ କରିବା ସର୍ବାଦୌ କର୍ତ୍ତବ୍ୟ । ନହେଲେ ଶବ୍ଦର ଅର୍ଥ ଗ୍ରହଣରେ ଭୁଲ ରହିଯିବାର ସଂଭାବନା । ଓଡିଆ ଅଭିଧାନ ପ୍ରକାଶନର ସଂକ୍ଷିପ୍ତ ଇତିହାସକୁ ଏହି ପ୍ରସଙ୍ଗରେ ନିରୀକ୍ଷଣ କରିବା ସଂପାଦକର ପ୍ରଧାନ ଦାୟିତ୍ୱ ।

1. 1811- Vocabulary Oriya and English - Mohun Persaud Takoor.
2. 1841- Embracing an Introductory Grammer-An English and Oriya Dictionary - Amos Sutton
3. 1843-An Oriya Dictionary with Oriya Synonyms - Vol-ii (ଉତ୍କଳ ଭାଷାର୍ଥାଭିଧାନ) - Amos Sutton and Bhobananuda Niaya Alankar
4. 1843- An Oriya Dictionary - Vol-iii - Embracing an Oriya and English Dictionary, Official terms and list of Materia Medica - Amos Sutton
5. 1844 - ସାଧୁ ଭାଷାର୍ଥାଭିଧାନ - ଅମୋଷ ସଟନ
6. 1868 - ଉତ୍କଳ ଭାଷାର୍ଥାଭିଧାନ - ରେଭ୍. ଡବ୍ଲୁ ଇଉ ମିଲର ଏବଂ ରଘୁନାଥ ମିଶ୍ର
7. 1872 - ଧାତୁ ବିବେକ - ମୂଳ ବଙ୍ଗଳା : ରାମକମଳ ବିଦ୍ୟାଳଙ୍କାର, ଅନୁବାଦ: ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ
8. 1872- English and Oriya Dictionary - Dasarathy Rout & John Samson Rout.
9. 1873- English and Oriya Dictionary - William Millar.

10. 1875- An Oriya and English Dictionary - Willium Brooks.

11. 1843 - ଶବ୍ଦନିଧି ୧ମ ଓ ୨ୟ ଭାଗ - ଚତୁର୍ଭୁଜ ପଟ୍ଟନାୟକ ଓ ଶିବନାରାୟଣ ନାୟକ

12. 1887 - ଶବ୍ଦମାଳା ଅଭିଧାନ - ଗୋବିନ୍ଦ ରଥ, ଓଡ଼ିଶା ମିଶନ ପ୍ରେସ

13. 1891 - ଉତ୍କଳ ଅଭିଧାନ - ଜଗନ୍ନାଥ ରାଓ

14. 1892 - ଅପଭ୍ରଂଶ ବୋଧିନୀ - ଆର୍ତ୍ତତ୍ରାଣ ଶତପଥୀ

15. 1895 - ସଂକ୍ଷିପ୍ତ ଉତ୍କଳ ଅଭିଧାନ - ଜଗନ୍ନାଥ ରାଓ

16. 1901- ମୂଳ ଶବ୍ଦ ବୋଧିକା - ମୃତ୍ୟୁଞ୍ଜୟ ରଥ

17. 1909 - ବୈଦ୍ୟକ ଅଭିଧାନ - ଗୋବିନ୍ଦ ରଥ

18. 1912 - କୁମାର କଣ୍ଠାଭରଣ - ହରିହର ମହାପାତ୍ର

19. 1912 - ସୁଖ-ବୋଧ ଅଭିଧାନ - ମଧୁସୂଦନ ରାଓ

20. 1914 - ଶବ୍ଦ ତତ୍ତ୍ୱବୋଧ ଅଭିଧାନ - ଗୋପିନାଥ ନନ୍ଦଶର୍ମା

21. 1930 ରୁ 1940 - ପୂର୍ଣ୍ଣଚନ୍ଦ୍ର ଭାଷାକୋଷ - ଗୋପାଳଚନ୍ଦ୍ର ପ୍ରହରାଜ

22. 1942 - ପ୍ରମୋଦ ଅଭିଧାନ - ପ୍ରମୋଦ ଚନ୍ଦ୍ର ଦେବ

ଏତଦ୍ ବ୍ୟତୀତ ଅନ୍ୟାନ୍ୟ ଅନେକ ଅଭିଧାନ ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରକାଶ ଲଭେ । କୌଣସି ସମୟର ସୃଷ୍ଟିକୁ ସଂପାଦନା କଲାବେଳେ ସେହି ସମୟର ଅଭିଧାନର ସାହାଯ୍ୟ ନେବା ସମିଚୀନ ଅଟେ । ବେଳେବେଳେ ଶବ୍ଦର ଅର୍ଥାନ୍ତର କଲାବେଳେ ସମୟାନୁସାରେ ତା'ର ପ୍ରୟୋଗ ଓ ବନାନ ଧାରା ପରିବର୍ତ୍ତିତ ହୋଇଥାଏ ।

ସାହିତ୍ୟ ସଂପାଦନାର ଉପକରଣଗୁଡ଼ିକ ଯୁଗଯୁଗ ଧରି ବିକଶିତ ହୋଇ ଆସିଛି । ସଭ୍ୟତାର ବିକାଶ ସହିତ ଏହାର ବିକାଶ ସଂଘଟିତ । ମୁଦ୍ରଣ ଶିଳ୍ପର ଉନ୍ନତି ସହିତ ସାହିତ୍ୟ ସଂପାଦନାର ଧାରା ଭିନ୍ନମୁଖୀ ହୋଇଛି । ସାହିତ୍ୟ ସଂପାଦନାର ଉପକରଣଗୁଡ଼ିକ ନିର୍ଦ୍ଦିଷ୍ଟ ସାହିତ୍ୟ କୃତିର ଆବଶ୍ୟକତାକୁ ଆଖି ଆଗରେ ରଖି ଆଲୋଚନା କରିବା ଅଧିକ ନିରାପଦ । ପ୍ରକାଶିତ ସାହିତ୍ୟର ସଂପାଦନା ବେଳେ ସଂପାଦିତ ହେଉଥିବା ରଚନାବଳୀର ବିଶେଷତ୍ୱକୁ ସଂପାଦକ ଆଖିଆଗରେ ରଖିବା ଉଚିତ୍ । ସଂପାଦିତ ଗ୍ରନ୍ଥଟି କାହାପାଇଁ ଉଦ୍ଦିଷ୍ଟ ସଂପାଦକ ସେ ସଂପର୍କରେ ବିଶେଷ ସଚେତନ ହେବା ଜରୁରୀ । ତା ନହେଲେ ଉପାଦାନ ଓ ଉପକରଣର ଗନ୍ଧମାର୍ଦ୍ଦନ ଭାରରେ ନିର୍ଦ୍ଦିଷ୍ଟ ସାହିତ୍ୟ କୃତିର ମୂଲ୍ୟାୟନ ଅସଂଭବ ହୋଇପଡ଼ିବ ।

ସଂପାଦନା କାର୍ଯ୍ୟ ଅତୀତର ସାଂସ୍କୃତିକ ସଂପଦକୁ ଆଧୁନିକ ପ୍ରେକ୍ଷାପଟରେ ପ୍ରତିଷ୍ଠିତ କରାଏ । ଆମର ସାଂସ୍କୃତିକ ଚିନ୍ତା ଓ ଚେତନାର ଯଥାର୍ଥ ଦ୍ୟୋତକ ରୂପେ ସାହିତ୍ୟ

ସଂପାଦନା ପ୍ରତିଭାତ ହୋଇଥାଏ । ପ୍ରାଗଐତିହାସିକ ଯୁଗ ଓ ତତ୍ ପୂର୍ବବର୍ତ୍ତୀ ସଭ୍ୟତାର ଉନ୍ମେଷପର୍ବ ଠାରୁ ଏ ଯାବତ୍ ମାନବୀୟ ଅନୁଭବ, ବିଚାର ବିମର୍ଷ, ସୃଷ୍ଟିଶୀଳତା, କଳ୍ପନା ଓ ଭାବପ୍ରବଣତାର ବିବର୍ତ୍ତନ ଧାରା ସହିତ ସାମାଜିକ ଓ ସାଂସ୍କୃତିକ ବିକାଶ ଧାରାକୁ ଏକୀଭୂତକରି ମହତ୍ତର ଜୀବନଯାପନର ମାର୍ଗଦର୍ଶନ କରେ । ଅତୀତର ଅନ୍ଧକାର ଗର୍ଭରୁ ଜୀବନ ବଂଚିବାର ମହନୀୟ ଦ୍ୟୋତନାକୁ ଉଦ୍ଧାରକରି ଆସନ୍ତା କାଲିର ବଂଶଧରକୁ ଜୀବନ ବଂଚିବାର ପ୍ରାଣମୟ ସୂତ୍ର ପ୍ରଦାନ କରିବା ସାହିତ୍ୟ ସଂପାଦନାର ମହତ୍ତ୍ୱପୂର୍ଣ୍ଣ ଆଭିମୁଖ୍ୟ । ସାହିତ୍ୟ ସଂପାଦନା ଏକ ଜାତୀୟ କର୍ତ୍ତବ୍ୟ । ସାହିତ୍ୟ ସଂପାଦନାର ସାମାନ୍ୟ ତ୍ରୁଟି ଜୀବନ ବଂଚିବାର ସୂତ୍ରକୁ ବିତର୍କିତ କରେ । ପରଂପରା ଓ ପୁରୋଦୃଷ୍ଟିର ମୂଲ୍ୟବୋଧକୁ ବିକଳାଙ୍ଗ କରିଦିଏ । ସତ୍ ସଂପାଦନାର ଧାରା ଗୋଟିଏ ଜାତିର ଇତିହାସ, ସଂସ୍କୃତିର ଅବବୋଧ ଓ ପୁନଃ ନିର୍ମାଣର ନିଷ୍ଠା ନେଇ ମଣିଷର ଜୀବନ ବଂଚିବାର ଶୈଳୀକୁ ଉର୍ଦ୍ଧ୍ୱଗ ଓ ଅମୃତମୟ କରିତୋଳେ ।

(ଏହି ଆଲୋଚନା ପ୍ରସ୍ତୁତିରେ ବିଶିଷ୍ଟ ଗବେଷକ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶଙ୍କ ସାହାଯ୍ୟକୁ ସ୍ମରଣ କରୁଛି ।)

# ବାମଣ୍ଡାର ଲୋକ ସାହିତ୍ୟ ପୃଷ୍ଠଭୂମିରେ ଆଞ୍ଚଳିକ ଇତିହାସ

ଲିଖିତ ସାହିତ୍ୟର ଅନ୍ତରାଳରେ ସବୁକାଳେ ଏକ ଅଲିଖିତ ସାହିତ୍ୟର ସମୃଦ୍ଧ ପରମ୍ପରା ପ୍ରଚ୍ଛନ୍ନ । ଅଲିଖିତ ସାହିତ୍ୟ ଯୁଗଯୁଗ ଧରି ଲୋକ ମୁଖରେ ପ୍ରଚଳିତ ଏବଂ ରୂପତାତ୍ତ୍ୱିକ ଐକ୍ୟ ସମ୍ପାଦନରେ ସମର୍ଥ । ଏହି ଅଲିଖିତ ସାହିତ୍ୟର ରୂପାଙ୍ଗିକ କଥିତ ଭାଷା, ଲୋକଚଳଣୀ, ଲୋକ ସଂସ୍କୃତି ତଥା ବୃହତ୍ତର ପ୍ରାକୃତିକ ପରିବେଶରୁ ଅନ୍ୱେଷଣ କରାଯାଇପାରେ । ସ୍ଥାନ-କାଳ-ପାତ୍ରର ବୈଶିଷ୍ଟ୍ୟ ଭିତରେ ଲୋକସାହିତ୍ୟ ଗତିଶୀଳ । ସାଂସ୍କୃତିକ ନିରବଚ୍ଛିନ୍ନତା ଓ ପରମ୍ପରାର ସଂରଚନାରେ ଏହି ସାହିତ୍ୟର ଭୂମିକା ଲିଖିତ ସାହିତ୍ୟଠାରୁ ଖୁବ୍ ଅଧିକ । ଲୋକ ଚେତନାକୁ ଆର୍ଦ୍ରକରି କୌଣସି ଭୂଖଣ୍ଡର ବିକାଶ ଓ ବିବର୍ତ୍ତନର ଇତିହାସକୁ ସୂକ୍ଷ୍ମ ଭାବରେ ପ୍ରତିଫଳିତ କରିବା ଏହି ସାହିତ୍ୟର ଧର୍ମ । ଏହାକୁ ଆହୁରି ନିବିଡ ଭାବେ ଅଧ୍ୟୟନ କରି ଏକ ପ୍ରାମାଣିକ ଚିତ୍ର ପ୍ରଦାନ କରିବାକୁ ହେଲେ ସେହି ଭୂଖଣ୍ଡର ଲୋକ ସଂସ୍କୃତି ସହିତ ଅତୀତର ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ପଟ୍ଟଭୂମିର ବିଶ୍ଳେଷଣ ଅପରିହାର୍ଯ୍ୟ । ଲୋକ ଇତିହାସକୁ ଅଧ୍ୟୟନ କରିବାର ମୌଳିକ ତତ୍ତ୍ୱ ଏବଂ ସୂକ୍ଷ୍ମ ନିର୍ଯ୍ୟାସ ଏହି ଅଲିଖିତ ସାହିତ୍ୟ ମଧ୍ୟରେ ବିରାଜମାନ । ପ୍ରତି ଅଞ୍ଚଳର ଇତିହାସ ଆର୍ଯ୍ୟଅନାର୍ଯ୍ୟର ସଙ୍ଗମ, ରାଜନ୍ୟବର୍ଗଙ୍କ ବିଦଗ୍ଧଦର୍ଶନ, ବ୍ରାହ୍ମଣ ପ୍ରବର୍ତ୍ତିତ ସଂସ୍କୃତାୟିତ ପରମ୍ପରା ସହିତ 'ସେଠିକାର ଆଦିବାସୀ ସଂସ୍କୃତିର ସୁବର୍ଣ୍ଣ ସଂଯୋଗ ଦ୍ୱାରା ହିଁ ପୂର୍ଣ୍ଣତା ପ୍ରାପ୍ତ । କୌଣସି ମାନବ ବିଜ୍ଞାନୀର ସାଂସ୍କୃତିକ ଅନ୍ୱେଷଣ ଏହି ଦୁଇ ଧାରାର ସାମୂହିକ ଅଧ୍ୟୟନ ବିନା ଅସମ୍ଭବ । ଏହି ପ୍ରାକ୍ ସୂଚନାକୁ ପାଥେୟ କରି ବାମଣ୍ଡା ଭୂଖଣ୍ଡର ଲୋକ ମୌଖିକ ପରମ୍ପରାରେ ପ୍ରତିପାଦିତ ଦୀର୍ଘବର୍ଷର ଲୁକ୍କାୟିତ ଇତିହାସକୁ ପୁଣିଥରେ ନବନିର୍ମାଣର ପ୍ରଚେଷ୍ଟା ହିଁ ସଂଶିତ ପ୍ରବନ୍ଧର ଲକ୍ଷ୍ୟ ।

କୌଣସି ସ୍ଥାନର ସାଂସ୍କୃତିକ ଅଧ୍ୟୟନ ପୂର୍ବରୁ ସେ ସ୍ଥାନର ଭୌଗୋଳିକ ଅବସ୍ଥିତି ଏକ ପ୍ରମୁଖ ଭୂମିକା ଗ୍ରହଣ କରେ । ବାମଣ୍ଡା ଓଡ଼ିଶାର ଏକ ସ୍ପର୍ଦ୍ଧିତ ଅଂଶ । ଏହା ଓଡ଼ିଆ ଭାଷାର 'ତୀର୍ଥସାରସ୍ୱତ' ରୂପେ ଖ୍ୟାତ । ଏହାକୁ ପୂର୍ବ ଓ ପଶ୍ଚିମ ଓଡ଼ିଶାର ସଂଗମ କ୍ଷେତ୍ର ବୋଲାଯାଇପାରେ । ବର୍ତ୍ତମାନର ଦେବଗଡ ଜିଲ୍ଲା ଓ ସମ୍ବଲପୁର ଜିଲ୍ଲାର କୁଚିଣ୍ଡା ସବ୍‌ଡିଭିଜନ ଏକଦା ବାମଣ୍ଡା ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ବାମଣ୍ଡା ରାଜ୍ୟର ପୂର୍ବଦିଗରେ

ପାଲଲହଡା ଓ ତାଳଚେର, ପଶ୍ଚିମରେ ସମ୍ବଲପୁର ଓ କୁଲାବିରା, ଉତ୍ତରଦିଗରେ ବଣେଇ ଓ ଗାଙ୍ଗପୁର ଏବଂ ଦକ୍ଷିଣରେ ରେଢ଼ାଖୋଲ ଅବସ୍ଥିତ । ଏହାର କ୍ଷେତ୍ରଫଳ ଥିଲା ୧୯୮୮ ବର୍ଗମାଇଲ । ସମଗ୍ର ବାମଣ୍ଡା ପ୍ରାକୃତିକ ସମ୍ପଦ ଓ ଦୁର୍ଗମ ଅରଣ୍ୟାନୀରେ ସମାକୀର୍ଣ୍ଣ ଥିଲା । ଏ ସାମ୍ରାଜ୍ୟ ମଧ୍ୟରେ ହନୁମାନ ସୁଦ୍ଧା ନିଜର ପାଦ (ଖୋଜ) ପକାଇବାକୁ ସାମାନ୍ୟ ସ୍ଥାନ ପାଇ ନ ଥିବାରୁ ତତ୍‌କାଳୀନ ବାମଣ୍ଡା ଲୋକମୁଖରେ 'ଅଖୋଜ ବାମଣ୍ଡା' ରୂପେ ପ୍ରସିଦ୍ଧ ଥିଲା । ଲୋକକଥାର ଭିତ୍ତି ଗବେଷଣା ସାପେକ୍ଷ କିନ୍ତୁ ବାମଣ୍ଡାର ଅରଣ୍ୟ ପୁଷ୍ପଲତା ଏହାକୁ ସତ୍ୟରୂପେ ସମୁଦ୍‌ଘୋଷିତ କରୁଥିଲା ।

ପାର୍ବତ୍ୟ ଅଞ୍ଚଳ ଅନ୍ତର୍ବର୍ତ୍ତୀ ଉପତ୍ୟକା ସମୂହ ଦ୍ୱାରା ବାମଣ୍ଡା ରାଜ୍ୟ ଗଠିତ । ପଶ୍ଚିମ ଭାଗରେ କୁଚିଣ୍ଡା ଓ ପୂର୍ବଭାଗରେ ଦେବଗଡ ଉପତ୍ୟକାର ଦୀର୍ଘ ସମତଳ ଅବସ୍ଥିତ । ଏହା ବ୍ୟତୀତ ଲଇମୁରା, ବାରକୋଟ, ତୁଷଲା ଓ ରିଆମାଳ ଉପତ୍ୟକା ହିଁ ବାମଣ୍ଡା ରାଜ୍ୟର ପ୍ରମୁଖ ସ୍ଥାନ । ଦେବଗଡ ସହର ପ୍ରଧାନପାଟ ପାର୍ବତ୍ୟ ଅଞ୍ଚଳ ଓ ରମ୍ଭାଦେବୀ ପର୍ବତଶ୍ରେଣୀଦ୍ୱାରା ସମାବୃତ । ପ୍ରଧାନପାଟର ସୁଉଚ୍ଚ ପର୍ବତ କୈଦନ୍ତାରୁ(୮୦୧ମି) ପ୍ରଧାନପାଟ ଓ କୋରଡକୋଟ ପ୍ରପାତର ସୃଷ୍ଟି । କୋରଡକୋଟ ଜଳ ବିଦ୍ୟୁତ୍ ଯୋଜନା ପାଇଁ ପ୍ରସିଦ୍ଧ । ବାମଣ୍ଡାର ଉତ୍ତରପୂର୍ବ ଅଞ୍ଚଳରେ ପାଉଡି ପର୍ବତ ଶ୍ରେଣୀ ପାଲଲହଡା, ବଣେଇ ଓ କେନ୍ଦୁଝରର ସୀମାକୁ ସ୍ପର୍ଶ କରିଛି । ଏହି ପାର୍ବତ୍ୟ ଅଞ୍ଚଳ ପାଉଡି ଭୂୟାଁମାନଙ୍କର ବାସସ୍ଥାନ । ପଡୁଚାଷ ପାଇଁ ଏହା ପ୍ରସିଦ୍ଧ । ରୋମା ପର୍ବତ(୬୫୫ ମିଟର)ସର୍ବୋଚ୍ଚ ଶୃଙ୍ଗ । ଉତ୍ତର ପଶ୍ଚିମ ପର୍ବତ ଶ୍ରେଣୀ କୁଚିଣ୍ଡାକୁ ସମାବୃତ କରି ଗଢ଼ିଉଠିଛି । ଉଚ୍ଚତମ ଗିରିଶୃଙ୍ଗ ବେତଝରଣ (୬୪୪ ମିଟର) । ଦକ୍ଷିଣ ପଶ୍ଚିମ ପାର୍ବତ୍ୟ ଶ୍ରେଣୀର ଉଚ୍ଚତମ ସ୍ଥାନ ଉଷାକୋଠୀ (୭୫୮ ମିଟର)ଏହା ରେଢ଼ାଖୋଲ ସୀମାକୁ ସ୍ପର୍ଶ କରିଛି । ଉତ୍ତରରେ ବଣେଇ ସୀମାକୁ ଲାଗି ମଣ୍ଡାଶିଳା ପର୍ବତଶ୍ରେଣୀ ଲମ୍ବିଯାଇଛି । ବଡତଇଲା ପର୍ବତ ଶ୍ରେଣୀ ବାମଣ୍ଡାର ମଧ୍ୟଭାଗରେ ଅବସ୍ଥିତ । ଏହାର ଉଚ୍ଚତମ ଶୃଙ୍ଗ ଚୂଳିଆ । ଯାହାର ବକ୍ଷରେ ପ୍ରାକୃତିକ ଗୁମ୍ଫା ସମୂହ ଏକଦା ବୌଦ୍ଧ ସନ୍ନ୍ୟାସୀମାନଙ୍କ ସାଧନାସ୍ଥଳ ଥିଲା । ଏହାର ଅଳ୍ପ ଦୂରରେ ପ୍ରବାହିତ ବ୍ରାହ୍ମଣୀ ନଦୀ କୂଳରେ ବୌଦ୍ଧ ସନ୍ନ୍ୟାସୀମାନଙ୍କର ଦୁଇଟି ଶିଳାଲିପି 'ଶ୍ରୀବିଚିତ୍ର ଭୂଷଣସ୍ୟ' ଓ 'ବିଚିତ୍ରଶ୍ରୟଣ' ଦୃଷ୍ଟିଗୋଚର ହୁଏ । ଶ୍ରମଣମାନଙ୍କ ପଥନିର୍ଦ୍ଦେଶ ପାଇଁ ପଥରରେ ଏକ ତୀର ଚିହ୍ନ ଖୋଦିତ । ଏହା ଭୀମକାଣ୍ଡ ରୂପେ ଲୋକମୁଖରେ ପ୍ରଚଳିତ । ଯଦିଓ ଏହା ଶ୍ରମଣମାନଙ୍କର କୃତି କିନ୍ତୁ ଲୋକ ବିଶ୍ୱାସ ଏହା ବନବାସ ସମୟରେ ଭୀମଙ୍କ ଦ୍ୱାରା ଅଙ୍କିତ । ଏହି ବିଶ୍ୱାସକୁ ବାରକୋଟ ନିକଟସ୍ଥ ବ୍ରାହ୍ମଣୀ ଗର୍ଭର ଏକ ବିରାଟ ପଥରରେ ଖୋଦିତ ମଣିଷ ମୂର୍ତ୍ତି ସମର୍ଥନ କରେ ।

ବାମଣ୍ଡାର ପ୍ରଧାନ ନଦୀ ବ୍ରାହ୍ମଣୀ, ଏହା ରାଜ୍ୟର ଅଠଚାଳିଶ ମାଇଲି ପଥ ଅତିକ୍ରମ କରିଛି । ବ୍ରାହ୍ମଣୀ ସ୍ରୋତରେ କାଠ ଓ ବାଉଁଶ ଭେଳା ଜେନାପୁର ପର୍ଯ୍ୟନ୍ତ ପରିବହନ

କରାଯାଉଥିଲା । କୁଚିଣ୍ଡା ଅଞ୍ଚଳରେ ପ୍ରବାହିତ ଖର୍ଲା ଓ ଭେଡେନ ନଦୀ, ବୁଢ଼ାପାଳର ଟିକିରାନଦୀ, ବାରକୋଟ ଅଞ୍ଚଳର ମତୁଆଳି, କଳାଜିରା, ମାଙ୍କଡା ପ୍ରଭୃତି ନାଳର ଅବବାହିକା କୃଷି ସଭ୍ୟତା ଗଠନରେ ସହାୟକ ହୋଇଛି ।

ବାମଣ୍ଡାର ଜଙ୍ଗଲ ମୁଖ୍ୟତଃ ଶାଳ ଜଙ୍ଗଲ । ପାର୍ବତ୍ୟ ଜଙ୍ଗଲ ଅଞ୍ଚଳ ସମୂହ ଖାଡିଆ, ଭୂୟାଁ, କିଶାନ, ଗଣ୍ଡ, ଓରାମମାନଙ୍କ ବାସସ୍ଥାନ ରୂପେ ଆର୍ଯ୍ୟ ଆଗମନ ପୂର୍ବରୁ ରହିଆସିଛି । ଏହି ଅଞ୍ଚଳଗୁଡିକ ଆଦିବାସୀଙ୍କ ପଡୁଚାଷ ପାଇଁ ଉପଯୋଗୀ ତଥା ପ୍ରାକୃତିକ ଜଳସ୍ରୋତ ହିଁ ସେମାନଙ୍କୁ ଆକୃଷ୍ଟ କରିଛି । ଏହି ଜଙ୍ଗଲରୁ ୧୮୯୦ରୁ ୧୯୨୪ ପର୍ଯ୍ୟନ୍ତ ବେଙ୍ଗଲ ନାଗପୁର ରେଳପଥକୁ ସ୍ଲିପର ଯୋଗାଇ ବାମଣ୍ଡା ରାଜ୍ୟ ଆର୍ଥିକ ସ୍ୱଚ୍ଛଳତା ହାସଲ କରିଥିଲା । ନିଘଞ୍ଚ ଜଙ୍ଗଲରୁ ହାତୀ ଧରି ବିଭିନ୍ନ କାର୍ଯ୍ୟରେ ଲଗାଯାଉଥିଲା ଏବଂ ହାତୀ ବିକ୍ରୟରୁ ମଧ୍ୟ ପ୍ରଚୁର ଅର୍ଥାଗମ ହେଉଥିଲା ।

ବାମଣ୍ଡା ରାଜ୍ୟରେ ଆଦିମ ଅଧିବାସୀଙ୍କ ସଂଖ୍ୟା ଅଧିକ । ଉଚ୍ଚବର୍ଣ୍ଣ ମଧ୍ୟରେ ବ୍ରାହ୍ମଣ, କ୍ଷତ୍ରୀୟ ଓ କରଣ ପ୍ରଧାନ । ଚାଷ ନିର୍ଭରଶୀଳ ଜାତି ଭିତରେ ଚଷା, ଗଣ୍ଡ, କନ୍ଧ, ଅଗ୍ରିଯା, କୁଲତା, ସୁଦ ଏବଂ ଡୁମାଳ ପ୍ରଧାନ । ପଶୁଚାରଣ ଗଉଡ ଏବଂ ଭୂୟାଁମାନଙ୍କ ମୁଖ୍ୟ ଜୀବିକା । ୭୭ ଭାଗ ଲୋକଙ୍କ ମାତୃଭାଷା ଓଡ଼ିଆ ଥିଲାବେଳେ ୧୮ ଶତକଡା ଲୋକ ଓରାଓଁ ଓ ମୁଣ୍ଡା ଭାଷା କହନ୍ତି । ୫ ଶତକଡା ଅନ୍ୟାନ୍ୟ ଭାଷା ଭାଷୀ ଅବସ୍ଥାନ କରନ୍ତି । ଚଷା, କିସାନ, ଗଉଡ, ଗଣ୍ଡ ଭୂୟାଁମାନେ ହିଁ ରାଜ୍ୟର ପ୍ରଧାନ ଅଧିବାସୀ । କୃଷି ଏମାନଙ୍କର ମୁଖ୍ୟ ଜୀବିକା । ରାଜ୍ୟରେ କୁଚିଣ୍ଡା ଓ ଦେବଗଡ ଦୁଇଟି ମୁଖ୍ୟ ସହର ଥିଲାବେଳେ ବାକି ସମସ୍ତ ଗାଁ । ଗୋଗୁଆ, କଲା, ଟିଙ୍କବିର, ଗୋବିନ୍ଦପୁର ପ୍ରଭୃତି ବଡ ବଡ ଗ୍ରାମ ରହିଥିଲା । ସେ ଯାହା ହେଉ ବାମଣ୍ଡାର ସଂସ୍କୃତି ଗ୍ରାମ୍ୟ ଓ କୃଷିଭିତ୍ତିକ ।

କିମ୍ବଦନ୍ତୀ ଓ ଲୋକକଥା ଅନ୍ତରାଳରେ ବାମଣ୍ଡ ଗଡଜାତର ଇତିହାସ ତମସାଚ୍ଛନ୍ନ । ଆବଶ୍ୟକୀୟ ତଥ୍ୟର ଅଭାବ ଯୋଗୁ ବାମଣ୍ଡାର ପୂର୍ଣ୍ଣାଙ୍ଗ ଇତିହାସ ରଚନା ସମ୍ଭବ ହୋଇନାହିଁ । ଇଂରେଜ ଶାସନ ପରବର୍ତ୍ତୀ ପ୍ରାୟ ଦୁଇଶତ ବର୍ଷର ଇତିହାସର କ୍ଷୀଣ ଝଲକ ଲୋକଲୋଚନକୁ ଆସିଛି । ତତ୍‌ପୂର୍ବବର୍ତ୍ତୀ ବାମଣ୍ଡା ଇତିହାସର ବିଧିବଦ୍ଧ ଆଲୋଚନା ଏଯାବତ୍ ହୋଇନାହିଁ । ଖ୍ରୀଷ୍ଟିୟ ପଞ୍ଚମ ଶତକ ବେଳକୁ ମାଠର ବଂଶୀୟମାନେ ବାମଣ୍ଡାର ଶାସନ କରୁଥିବାର ଜଣାପଡେ । କୁଦୋପାଲି ତାମ୍ରଶାସନରୁ ଜଣାଯାଏ ସୋମବଂଶୀ ରାଜା ଭୀମରଥଙ୍କ ସାମନ୍ତ ରାଣକ ଶ୍ରୀପୁଞ୍ଜ ବାମଣ୍ଡା ମଣ୍ଡଳର ପଞ୍ଚଦଶ ମଲ୍ଲିକ ବା ବିଷୟର ଅର୍ଥାତ୍ ସମଗ୍ର ବାମଣ୍ଡାର ମଣ୍ଡଳେଶ୍ୱର ବା ଶାସନକର୍ତ୍ତା ଥିଲେ । ଭୀମରଥଙ୍କ ରାଜତ୍ୱର ତ୍ରୟୋଦଶ ବର୍ଷରେ ସେ ଏହି ଶାସନ ଘୋଷଣା କରିଥିଲେ । ସୋମବଂଶୀ ରାଜାଙ୍କ ପତନ ପରେ ମାଠରମାନେ ମଧ୍ୟ ବିତାଡିତ ହୋଇଥିଲେ । ଏକାଦଶ ଶତାବ୍ଦୀ ବେଳକୁ ବାମଣ୍ଡା ସମେତ ପଶ୍ଚିମ ଓଡ଼ିଶା ରତ୍ନପୁରର କାଳଚୁରୀଙ୍କ ଅଧୀନସ୍ଥ ହୋଇଥିଲା । ଦ୍ୱାଦଶ

ଶତକର ପ୍ରାରମ୍ଭରେ ଦକ୍ଷିଣକୋଶଳ ବା ଓଡ଼ିଶାର ପଶ୍ଚିମାଞ୍ଚଳ ଗଙ୍ଗବଂଶୀଙ୍କ ଅଧିକାରଭୁକ୍ତ ହେଲା । ଏହାପରେ ରାଜବଂଶୀଙ୍କ ଇତିହାସ ପ୍ରାୟତଃ ଚର୍ଚ୍ଚିତ । ଶିଳାଲିପି, ତାମ୍ରଶାସନ, କାବ୍ୟ, ପୁରାଣର ତଥ୍ୟକୁ ଆଧାର କରି ରାଜବଂଶୀୟଙ୍କ ଏକ ମୋଟାମୋଟି ବିବରଣୀ ପ୍ରାୟତଃ ପ୍ରଚଳିତ । ଏହା ଅନେକତ୍ର ପ୍ରକ୍ଷିପ୍ତ ଏବଂ ଅତିରଞ୍ଜିତ । କାରଣ ପ୍ରୋକ୍ତ ଉପାଦାନ ସମୂହ ରାଜା ବା ସାମନ୍ତବର୍ଗଙ୍କ ଦ୍ୱାରା ହିଁ ନିର୍ମିତ । ଏଣୁ ବାମଣ୍ଡାର ଏକ ତଥ୍ୟମୂଳକ ବାସ୍ତବବାଦୀ ଇତିହାସକୁ ଲୋକସାହିତ୍ୟ ଅନ୍ତରାଳରୁ ଠାବ କରାଯାଇପାରେ ।

ଲୋକସଂସ୍କୃତି ଗତିଶୀଳ ଓ ଜୀବନ୍ତ । ଏହି ଜୀବନ୍ତ ଆଲେଖ୍ୟକୁ ଲୋକକଥା, ଢ଼ଗଢ଼ମାଳୀ, କିମ୍ବଦନ୍ତୀ ମଧ୍ୟରୁ ଆବିଷ୍କାର କରାଯାଇପାରେ । ଅତୀତର ନିର୍ଜୀବ ବସ୍ତୁ ଅଧ୍ୟୟନରେ ପ୍ରଦର୍ଶିତ ଇତିହାସ ଅପୂର୍ଣ୍ଣାଙ୍ଗ । ଲୋକ ସଂସ୍କୃତିବିତ୍‌ମାନଙ୍କ ମତରେ ଜୀବନ୍ତ ମଣିଷ ସମାଜକୁ ଛାଡି ଇତିହାସକୁ ସଂପୂର୍ଣ୍ଣ କରାଯାଇନପାରେ । ସମାଜ ଜୀବନ ଏକ କ୍ରମବିବର୍ତ୍ତିତ ପରିବର୍ତ୍ତନ ଦେଇ ଗତିଶୀଳ । ଏହି ପ୍ରକ୍ରିୟାର ଏକ ସମୃଦ୍ଧ ଶୃଙ୍ଖଳ ଲୋକସାହିତ୍ୟ । ଲୋକସାହିତ୍ୟ ସାମାଜିକ ପ୍ରତିବଦ୍ଧତାର କୁକ୍ଷୀରେ ଲାଳିତପାଳିତ ଓ ପରିବର୍ଦ୍ଧିତ । ମାନବ ସମାଜର ସଫଳତା ଓ ବିଫଳତାର କାହାଣୀ ନେଇ ଲୋକସାହିତ୍ୟ ପ୍ରସ୍ଫୁଟିତ । ଲୋକ ସାହିତ୍ୟର ଜ୍ଞାନ ଜଣକର ନୁହେଁ ସମାଜର ସମଷ୍ଟିର ଜୀବନ ବଞ୍ଚିବାର କଳାର ଅପୂର୍ବ ପ୍ରତିଫଳନ । ଇତିହାସ ପ୍ରଣୟନ ଦିଗରେ ଲୋକସଂସ୍କୃତି ଓ ପରମ୍ପରା ତଥା ଲୋକସାହିତ୍ୟର ଅବଦାନ ଅନସ୍ୱୀକାର୍ଯ୍ୟ । କାରଣ ଏହା ଅତୀତଠାରୁ ବର୍ତ୍ତମାନ ଯାଏ ପ୍ରଲମ୍ବିତ ଲୋକ ମନସ୍ତତ୍ୱର ପରିଚାୟକ ।

ବାମଣ୍ଡାର ଐତିହ୍ୟ ଏବଂ ପରମ୍ପରା ଲୋକ ମୌଖିକ ସାହିତ୍ୟରେ କେତଦୂର ଜୀବନ୍ତ ତାହାହିଁ ଏହି ନିବନ୍ଧର ବିଚାର୍ଯ୍ୟ ବସ୍ତୁ । ଏହି ଲେଖକର ଅଭିଜ୍ଞତା, ଲୋକସମ୍ପର୍କ ଏବଂ ସଂଗୃହୀତ ଲୋକଗୀତ, କିମ୍ବଦନ୍ତୀ, ପ୍ରବାଦ ବଚନରୁ ହିଁ ବାମଣ୍ଡା ଇତିହାସର କ୍ଷୀଣ ଝଲକ ପ୍ରଦାନ କରାଯାଉଛି ।

## ଲୋକସାହିତ୍ୟରେ ବାମଣ୍ଡାର ପ୍ରଶାସନିକ ଚିତ୍ର :

ବାମଣ୍ଡା ଗଙ୍ଗବଂଶର ଆଦିପୁରୁଷ ସରଯୁଦେବ । ଲୋକକଥାରୁ ପ୍ରତିପନ୍ନ ହୁଏ କଟଙ୍ଗପାଣି ଗ୍ରାମର 'ସୁନା' କନ୍ଧ ଓ କେଳିପଦର ଗାଁର 'କଣ୍ଠୁର' ଭୂୟାଁ ପାଟଣାଯାଇ ହଟ୍ଟହମିର ଦେବଙ୍କ ପୁତ୍ରକୁ ଆଣି ବାମଣ୍ଡାଗଡ଼ଠାରେ ରାଜାରୂପେ ଅଭିଷିକ୍ତ କରିଥିଲେ । ତାଙ୍କର ରାଜଧାନୀ ପ୍ରଥମେ ବାମଣ୍ଡା ଗ୍ରାମରେ ଥିବାରୁ ଗ୍ରାମକୁ ବାମଣ୍ଡାଗଡ ଓ ତାଙ୍କ ଦ୍ୱାରା ଶାସିତ ଭୂଖଣ୍ଡକୁ ବାମଣ୍ଡା ରାଜ୍ୟ ନାମରେ ଅଭିହିତ କରାଗଲା । ବାମଣ୍ଡା ଗଙ୍ଗବଂଶାନୁଚରିତ ଚଂପୂ, ବାମଣ୍ଡା ମାଦଳା ପ୍ରଭୃତିରୁ ମିଳୁଥିବା ଏହି ତଥ୍ୟକୁ ଲୋକଗୀତ ମଧ୍ୟ ସମର୍ଥନ କରେ ।

ରଙ୍ଗରଙ୍ଗିଆ ପକ୍ଷୀ
କନ୍ଧଭୂୟାଁ ରାଜା ଆଣିଲେ ସଖୀ
ବାମଡାଗଡକୁ ଯୋଖି, ସଜନୀରେ ।

ଇତିହାସର 'ବାଘର କୋଟ'କୁ କିଛି ଐତିହାସିକ ବ୍ରାହ୍ମଣୀ କୂଳସ୍ଥ 'ବାରକୋଟ' ସହିତ ଚିହ୍ନିତ କରନ୍ତି । ଏହା ଜିତ୍ ରାଜବଂଶର ରାଜଧାନୀ ଓ ରମ୍ଭାଦେବୀ ଏହାଙ୍କ ଇଷ୍ଟଦେବୀ ଥିବାର ଜଣାପଡେ । ରମ୍ଭାଦେବୀ ଭୂୟାଁମାନଙ୍କ ଦେବୀ ଓ ଆଦିବାସୀ ନୀତିରେ ପୂଜା ପାଆନ୍ତି । ପରେ ରଜାତନ୍ତ୍ରର ପ୍ରଭାବ ଯୋଗୁଁ ଆର୍ଯ୍ୟ ଦେବୀରେ ପରିଣତ ହୋଇଛନ୍ତି । କିନ୍ତୁ ବର୍ତ୍ତମାନ ସୁଦ୍ଧା ଦଶହରାର 'ଅଷ୍ଟମୀ ପୂଜା ପୂର୍ବରୁ ଭୂୟାଁମାନଙ୍କର 'ଭେଟ' ସଂଘଟିତ ହେଲା ପରେ ଦେବୀଙ୍କ ପୂଜା ଆରମ୍ଭ ହୁଏ । ଭୂୟାଁମାନେ ନିଜର କୃଷିଜାତ ଦ୍ରବ୍ୟକୁ ଦେବୀଙ୍କୁ ଆଣି ଅର୍ପଣ କରନ୍ତି । ଏହି ଉପାଖ୍ୟାନ ଲୋକମୁଖରେ ଏବେବି ସଂଜୀବିତ । ସଜନୀ ସଜନୀକୁ କହୁଛି -

ଜିତ ରାଜବଂଶ ଗଲା
ରମ୍ଭାଦେବୀ ଜିତି ରାଇଜ କଲା
କଳା କାଇଞ୍ଚ, ଦେଶରେ ପୁନା ସଞ୍ଚିଲା ।
ପାଙ୍ଗୁଲି ପାହାଡ ହାତୀ
ଭୂୟାଁ ଦରବାରେ ରାତି ପୁହାନ୍ତି
କଳାକାଇଞ୍ଚ, ଅଷ୍ଟମୀ ପୂଜା ଦିଅନ୍ତି ।

କିମ୍ବଦନ୍ତୀ ଅଛି କେଉଁଝରର ରାଜା ବାମଣ୍ଡା ଆକ୍ରମଣ କରିଥିଲେ । ବାରକୋଟଠାରେ ଭୀଷଣ ଯୁଦ୍ଧ ହୋଇଥିଲା । ବାମଣ୍ଡାର ଭାଟସିଂହ ଉପାଧିଧାରୀ ଏକ ଯୋଦ୍ଧା ସେମାନଙ୍କୁ ବ୍ରାହ୍ମଣୀ ନଦୀ ପାରି ହେବାକୁ ଦେଇ ନ ଥିଲା । କେଉଁଝରର ସୈନ୍ୟ ବାରକୋଟଠାରୁ ଫେରିଗଲା ବେଳେ ରମ୍ଭାଦେବୀଙ୍କୁ ନେଇଯିବାକୁ ମନସ୍ଥ କଲେ କିନ୍ତୁ ଦେବୀଙ୍କୁ ଖୋଳି ପାରିଲେ ନାହିଁ । ଦେବୀ ପାତାଳୀ ହୋଇଗଲେ ଏବଂ ସୈନ୍ୟଙ୍କ ଶାବଳ, ପ୍ରଭୃତି ଖୋଳିବା ଯନ୍ତ୍ର ଓ ବାଦ୍ୟସମୂହ ଦେବୀ ପ୍ରକୋପରୁ ପଥର ପାଲଟିଗଲା । ଏହି ପଥର ରୂପଲେଖକର ମଧ୍ୟ ପ୍ରତ୍ୟକ୍ଷ ହୋଇଛି । କିନ୍ତୁ ଲେଖକ ଏହାକୁ କଳାପାହାଡୀ ଆକ୍ରମଣ ବା ତା'ର ଏକ ସମାନ୍ତରାଳ ଉପକଥା ରୂପେ ଗ୍ରହଣ କରେ । ଏହି ପ୍ରସଙ୍ଗ ଲୋକଗୀତରେ ବେଶ୍ ପ୍ରାଞ୍ଜଳ ।

ବିଦେଶୀ ଆସିଲେ ମାଡି
ଭାଟସିଂହ ମଙ୍ଗ ଧଇଲା ଭିଡି
କେଝିରିଏ ଗଲେ ଛାଡି ।

ଦାଣ୍ଡି ରାମାୟଣର ବର୍ଣ୍ଣନା ଅନୁସାରେ ରାମ ପ୍ରଥମେ ନିଜର ବାମପାଦ(ମଡା) ଏହି ଅଞ୍ଚଳରେ ପକାଇଥିବାରୁ ଏହା ବାମ-ମଡା ବା ବାମଣ୍ଡା ରୂପେ ପ୍ରସିଦ୍ଧ । ୧୯୨୦

ବେଳକୁ ବାମଣ୍ଡା ରାଜା ଦିବ୍ୟଶଙ୍କରଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ନାବାଳକ ଥିବାରୁ ପଲିଟିକାଲ ଏଜେଣ୍ଟ ମେକଫରସେନ ଓ କବଡନ ରାମସେ ଶାସନଭାର ଗ୍ରହଣ କରନ୍ତି । ସଚ୍ଚିଦାନନ୍ଦ ଦେବଙ୍କ ଆଦେଶରେ କୁଚିଣ୍ଡା ଖର୍ଲା ନଦୀରେ ୧୯୧୩ରେ ଝୁଲେନ ପୋଲ ତିଆରି ହୋଇଥିଲା । ଏହି ରାସ୍ତାରେ ଦେବଗଡରୁ ବାମରା ପର୍ଯ୍ୟନ୍ତ ବାମଣ୍ଡାମୋଟର ସର୍ଭିସ୍‌ର ଦୁଇଟି ବସ୍ ଯାତାୟାତ କରୁଥିଲା । ପୁରାଣ ଓ ଇତିହାସର ଏହି ବିଭିନ୍ନତାକୁ ଲୋକକବିର ଗୋଟିଏ ପଦ ହିଁ ପ୍ରତିବିମ୍ବିତ କରେ -

ରାମ ଆସିଥିଲେ ବାମଣ୍ଡା ଗଡ଼
ରାମସେ  ସାହେବ ଗଡାଏ ମୁଣ୍ଡ
ରାଜାର ପୁଅ ନିଉନ
ତିଆରିଲା ପୋଲ ଖୁମ୍ବ ବିହୀନ
ଗାଡି ଚାଲେ ରାତିଦିନ । ସଜନୀଲୋ ।

ଦିବ୍ୟଶଙ୍କରଙ୍କ ପରି ଲୋକପ୍ରିୟ ଶାସକ ହରାଇ ବାମଣ୍ଡା ପ୍ରଜା ଝୁରି ହେବାର ଚିତ୍ର ବେଶ୍ ହୃଦୟ ବିଦାରକ

ତୀର୍ଥରେ ମରିଲା ରଜା
ବାଲୁତ ପୁଅକୁ ଦୁଃଖୀ ପରଜା
ଫିରିଙ୍ଗୀ ମାରୁଛି ମଜା ।

ଏହି ଲୋକଗୀତଟି କୁଚିଣ୍ଡା ଅଞ୍ଚଳରେ ସାମାନ୍ୟ ଭିନ୍ନ ପ୍ରକାରେ ପ୍ରଚଳିତ ।

ହଲଦି ଦି'ଖଣ୍ଡ ଗଜା
ବାମଣ୍ଡାଗଡରେ ନାଇଁ ନ ରଜା ହୋ
ସତେ ଫିରିଙ୍ଗୀ ମାରୁଛେ ମଜା ନାଗର ହୋ ।

କାଞ୍ଚି ଅଭିଯାନର ଅନୁରୂପ ବାମଣ୍ଡା ରାଜା ବଣେଇ ରଜାଙ୍କୁ ପରାସ୍ତ କରି କାଦମ୍ବ ରାଜକନ୍ୟାଙ୍କ ପାଣିଗ୍ରହଣ କରିଥିଲେ । ବଣେଇ କାଦମ୍ବ ବଂଶ ନରପତିଙ୍କ ଦ୍ୱାରା ଶାସିତ । ବଣେଇ ଯୁଦ୍ଧକୁ ଲୋକ ସାହିତ୍ୟ ସ୍ମୃତି ଗନ୍ତାଘରେ ସାଇତି ରଖିଛି ।

ରଥଚାଲେ ଘିଡିଘିଡି
ବଣେଇ ଜେମାକୁ ଆଣିଲା ଭିଡି
ଧନ, କଦମ୍ବ ବଣ ଉଜାଡ଼ି । ସଜନୀରେ ।

ଗାଙ୍ଗପୁର ରଜାଙ୍କ ସହିତ ଯୁଦ୍ଧ ଓ ପରେ ସନ୍ଧି ବନ୍ଧବାର ପ୍ରଗଣାକୁ ଗାଙ୍ଗପୁର ରାଜାଙ୍କ ଠାରୁ ବାମଣ୍ଡା ରାଜାଙ୍କ ଦଖଲ ଯୋଗୁ ରାଣୀଙ୍କ ଦୁଃଖ ତଥା କୁଲାବିରା ଜମିଦାରୀ ଦଖଲ ପ୍ରସଙ୍ଗକୁ ସୁନ୍ଦର ଭାବେ ଚିତ୍ରଣ କରେ ସଜନୀ ଗୀତ ।

କାଳିଆ ଘୋଡାର ଟାପୁ
ରାଜା ବିଜେକଲେ ଗାଙ୍ଗପୁରକୁ
ଧନ, ରାଣୀ ଖାଇଦେଲେ ଆପୁ ସଜନୀରେ ।

ସ୍ୱାଧୀନତା ସଂଗ୍ରାମର ରକ୍ତାକ୍ତ ଇତିହାସ ସହିତ ବାମଣ୍ଡା ଜଡିତ । ବାମଣ୍ଡା ରାଜା ବ୍ରଜସୁନ୍ଦର ଦେବ ବୀର ସୁରେନ୍ଦ୍ର ସାଏଙ୍କୁ ପରୋକ୍ଷରେ ସାହାଯ୍ୟ କରିଥିଲେ ଏବଂ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନିଜ ରାଜ୍ୟରେ ଲୁଚି ରହିବାର ସୁଯୋଗ ଦେଇଥିଲେ । ପରେ ବ୍ରିଟିଶ ସରକାର ବ୍ରଜସୁନ୍ଦର ଦେବଙ୍କୁ ଧମକ ଦେବାରୁ ସେ ସରକାରଙ୍କୁ ନିଜର ସଂପୃକ୍ତି ନାହିଁ ବୋଲି ଜଣାଇଥିଲେ । ଏହି ଜାତୀୟ ବିଦ୍ରୋହର ଇତିହାସ ପଢ଼ି ନୀରବ ରହିନି ଲୋକ ମାନସ ବରଂ ଉଦାତ୍ତ କଣ୍ଠରେ  ଘୋଷଣା କରିଛି -

ଅରୁଆ ଚାଉଳର ଗଜା
ସୁର ଗଙ୍ଗାଧର ଗଲେ ବାମଣ୍ଡାରେ
ଧନ, ରକତେ ମାତିଲା ଖଣ୍ଡା, ସଜନୀରେ ।

## ଲୋକ ସାହିତ୍ୟରେ ବାମଣ୍ଡାର ସାରସ୍ୱତ ଚିତ୍ର :

ଲୋକସାହିତ୍ୟ ଏକ ଜୀବନ୍ତ ଐତିହାସିକ ଦଲିଲ । ଅତୀତର ନିରନ୍ଧ୍ର ଅନ୍ଧକାର ଭିତରୁ ସତ୍ୟ ସନ୍ଧାନ କରିବାରେ ଲୋକମାନସ ସତତ ସଚେତନ । ଏହି ସତ୍ୟସନ୍ଧାନର ମୂର୍ତ୍ତ ରୂପ ଲୋକ ସାହିତ୍ୟ । ଭୌଗୋଳିକ ଦୃଷ୍ଟିକୋଣରୁ ବାମଣ୍ଡା ଯେପରି ପଶ୍ଚିମ ଓ ପୂର୍ବ ଓଡ଼ିଶାର ସଂଯୋଗ ସେତୁ, ଭାଷାସାହିତ୍ୟରେ ମଧ୍ୟ ତାର ଭୂମିକା ଗୌରବମଣ୍ଡିତ । ସମ୍ବଲପୁର ଅଞ୍ଚଳରେ ପ୍ରଚଳିତ 'ହୁମୋ ବଉଲୀ' ଗୀତରେ ନିଜ ବଉଳକୁ ଏହି ଭୂଖଣ୍ଡର ମର୍ଯ୍ୟାଦା ପ୍ରତି ସଚେତନ କରାଏ ନାରୀଟିଏ ।

ବିଲେଇ ମୁଣ୍ଡରେ  ଜଟ ବଉଲୀରେ
ବିଲେଇ ମୁଣ୍ଡରେ ଜଟ
କାହିଁ ବାଲେଶ୍ୱର କାହିଁ କଟକ
ଦେବଗଡେ ହେମା ଭେଟ ବଉଲୀରେ
ଦେବଗଡେ ହେମା ଭେଟ ।

ଓଡ଼ିଆ ଭାଷା ସାହିତ୍ୟର ଅନ୍ୟତମ ଏକ୍ତୁଡିଶାଳ ବାମଣ୍ଡା । ବାମଣ୍ଡାର ସାରସ୍ୱତ ପରିଚର୍ଯ୍ୟା ପ୍ରାଚୀନ ଓ ଆଧୁନିକ ସାହିତ୍ୟରଥିଙ୍କୁ ଆକୃଷ୍ଟ କରିଥିଲା । ବିଶିଷ୍ଟ କବି ରାଧାନାଥ ବାମଣ୍ଡାର ପ୍ରୋତ୍ସାହନକୁ ତାଙ୍କର ପ୍ରତିଟି କାବ୍ୟ କବିତାରେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ୧୮୮୬ରେ ବାମଣ୍ଡା ତରଫରୁ ତାଙ୍କୁ ଏଗାର ଥର ତୋପସଲାମୀ ସହିତ ସ୍ୱାଗତ କରି 'କବିବର' ଉପାଧି ପ୍ରଦାନ କରାଯାଇଥିଲା । ଏହି ମୁହୂର୍ତ୍ତକୁ ତାଙ୍କ ଜୀବନର ସର୍ବଶ୍ରେଷ୍ଠ

ମୁହୂର୍ତ୍ତ ରୂପେ ରାଧାନାଥ ଘୋଷଣା କରନ୍ତି । ଦୋଳିଗୀତରେ ସୁଲଳିତ ଝଙ୍କାର ଏହି ସାରସ୍ୱତ ସମ୍ମାନକୁ ସ୍ମରଣ କରାଏ ।

ଦୋଳି ତଳେ ଉଙ୍ଗେ ସାପ
କବିପାଇଁ ଏଠି ଫୁଟିଲା ତୋପ
ଫୁଟିଲା ତୋପ କି ରଜାର ବଡ ବହପ ।

୧୮୯୫ରେ ପ୍ରଶାସନିକ ଅସୁବିଧା ଦର୍ଶାଇ ସମ୍ବଲପୁର ଅଞ୍ଚଳର ଅଦାଲତ ସମୂହରୁ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନର ଆଦେଶ କରାଯାଇଥିଲା । ଭାଷା ଉଚ୍ଛେଦର ଏହି ଘଡିସନ୍ଧି ମୁହୂର୍ତ୍ତରେ ବାମଣ୍ଡାର ମୁଖପତ୍ର 'ସମ୍ବଲପୁର ହିତୈଷିଣୀ' ସଂଗ୍ରାମ ଜାରି ରଖିଥିଲା । ସମ୍ବଲପୁର ତଥା ବାମଣ୍ଡାର ବୁଦ୍ଧିଜୀବୀ ଏହା ବିରୁଦ୍ଧରେ ମନ୍ତବ୍ୟ ପ୍ରଦାନ କଲେ । ଏହି ପର୍ଯ୍ୟାୟରେ ଲୋକଗୀତ ମୁଖର ହୋଇଉଠିଛି –

ଜଙ୍ଗଲରେ ନାହିଁ ସାଥୀ ବଉଲରେ
ଜଙ୍ଗଲରେ ନାହିଁ ସାଥୀ
ଓଡ଼ିଆରେ ନାହିଁ ଭାବ ପିରତି
ହିନ୍ଦୀରେ ବଲାଏ ମତି ବଉଲରେ
ହିନ୍ଦୀରେ ବଲାଏ ମତି ।

ଓଡ଼ିଆ ଭାଷାର ସହାୟକ ରୂପେ ମଧ୍ୟପ୍ରଦେଶର ତତ୍କାଳୀନ କମିଶନର ଜନ ଉଡ୍‌ବର୍ଣ୍ଣଙ୍କୁ ସ୍ମରଣ କରାଯାଇଛି ।

ସାହେବ ଉଡ୍‌ବରନ
ସାହେବ ଉଡ୍‌ବରନ
ଓଡ଼ିଆ ଥାପିବ କରିଛି ମନ
ଉଣା କର ନାହିଁ ମନ, ସଜନୀରେ ।

ବାମଣ୍ଡା ରାଜ୍ୟସ୍ଥ ଆଉଁଳି ପ୍ରଗଣା (ବର୍ତ୍ତମାନ ବୁଢ଼ାପାଳ ଅଞ୍ଚଳ)ର ଚାରିଜଣ ବୁଦ୍ଧିଜୀବୀ ବାମଣ୍ଡା ପ୍ରଶାସନରେ ବେଶ୍ ସମ୍ମାନିତ ଥିଲେ । ସେମାନେ ହେଲେ ସତ୍ୟବାଦୀ ପ୍ରଧାନ ଶିକ୍ଷା ନିରୀକ୍ଷକ, ରସାନନ୍ଦ ସାହୁ ସ୍ଲିପର ସୁପରିଟେଣ୍ଡେଣ୍ଟ, ଦୀନବନ୍ଧୁ ପ୍ରଧାନ କେନାଲ ସୁପରିଟେଣ୍ଡେଣ୍ଟ ଓ କରୁଣାକର ସାହୁ ଭଣ୍ଡାର ରକ୍ଷକ । ଏମାନଙ୍କ ବୃତ୍ତି ପ୍ରତି ସମ୍ମାନ ଜଣାଇ ଏକ ଲୋକୋକ୍ତି ପ୍ରଚଳିତ –

ସତ୍ୟବାଦୀ ପାଠୁଆ
ରସାନନ୍ଦ କାଠୁଆ
ଦୀନବନ୍ଧୁ ମାଟିଆ
କରୁଣାକର ଚାଉଳିଆ
ଏଇ ଚାରିଭାଇ ଆଉଁଳିଆ ।

ସମସ୍ୟା ଓ ପାଦପୂରଣର ଏକ ବୌଦ୍ଧିକ କସରତ ବାମଣ୍ଡା ଆଲୋଚନାସଭାରେ ଚାଲିଥିଲା । କବି ବଳଭଦ୍ର ଦେବ 'ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ' ଶୀର୍ଷକରେ ସମସ୍ୟା ପ୍ରଦାନ କରିଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳର କବି ପାଦପୂରଣ କରି ପଠାଇଥିଲେ । ଏହି ପାଦପୂରଣଗୁଡିକ ୧୮୯୮ର ଏକ ଆଲୋଚନା ସଭାରେ ଆବୃତ୍ତି କରାଯାଇଥିଲା । ବାମଣ୍ଡାର କବି ବନମାଳୀ ଗୁରୁ ନିମ୍ନ ପଦଟି ଲେଖିଥିଲେ ।

ଶୁଣହେ କୋବିଦ ଜନ ଚାନ୍ଦ ପିଷ୍ଟକ ଅଭିନ୍ନ
ଶିବାର୍ଚ୍ଚନା ପାଇଁ ତାହା ହେଲା ଗଠିତ
ଅର୍ଚ୍ଚନା କରିବା ପାଇଁ ତୁଳସୀ ଦଳ ପକାଇ
ରଖିଛି  ମହୀ ମହିଳା କରି ସଜ୍ଜିତ
ପଡ଼ିଅଛି ତୁଳସୀ ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।

ଏ ପଂକ୍ତିଟିକୁ ବିଶ୍ଲେଷିତ କରିବାକୁ ଯାଇ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ପଣ୍ଡିତମାନଙ୍କର ଚନ୍ଦ୍ରକୁ ଦେଖି ପିଠା ଖାଇବାକୁ ମନ ହେଲାଣି ବୋଲି ରହସ୍ୟ କରିଥିଲେ । ସଭାରେ ସଭାପତିତ୍ୱ କରୁଥିବା ରାଜା ସୁଢ଼ଳଦେବ ସଙ୍ଗେ ସଙ୍ଗେ ଛେନା ପିଠା କରି କବି ଓ ପଣ୍ଡିତମାନଙ୍କୁ ଆପ୍ୟାୟିତ କରିଥିଲେ । ଏହି ପ୍ରସଙ୍ଗକୁ ଲୋକଗୀତ ସରସ ସୁନ୍ଦର ଭଙ୍ଗୀରେ ପ୍ରକାଶ କରେ -

ବିରି ଚାଉଳ ବଟା
ମାଉଁସ ତୁଣକୁ ଚକୁଳି ପିଠା
ଧନ, ଜହ୍ନରେ ଲାଗିଛି ଛିଟା ।

## ଲୋକ ସାହିତ୍ୟରେ ବାମଣ୍ଡାର ସମାଜ ଚିତ୍ର :

ଲୋକସାହିତ୍ୟ ଯୁଗଯୁଗ ଧରି ଲୋକସମାଜର ବ୍ୟଥା - ବେଦନା, ହସ-କାନ୍ଦର ଅନ୍ତରଙ୍ଗ କଥା କହିଆସିଛି । ଲୋକଗୀତଗୁଡିକ ଦାୟିତ୍ୱହୀନ ଅସଙ୍ଗତ ପ୍ରଳାପ ନୁହେଁ ବରଂ ସମାଜ ଜୀବନର ଦୈନନ୍ଦିନ ଆବଶ୍ୟକତା ଓ ଅଭିପ୍ରାୟର ସଫଳ ପ୍ରକାଶ । ଜଣକର ବିଚାରକୁ ସାର୍ବଜନୀନ ସଂପ୍ରେସରଣକ୍ଷମ କରିବା ଏବଂ ଜନଚେତନାରେ ବିସରିତ ହେବା ଲୋକ ସାହିତ୍ୟର ମୂଳ ଲକ୍ଷ୍ୟ । ଏଥିରେ ମାନବ ସଭ୍ୟତାର ସଂଘର୍ଷ ଯେତିକି ପ୍ରତିଫଳିତ ଉଦ୍ଦାମ ଯୌନତା ସେତିକି ଚିତ୍ତ ଆକର୍ଷକ । ସଙ୍ଗୀତର ମଧୁର ମୂର୍ଚ୍ଛନା, ଜୀବନପ୍ରତି ବାସ୍ତବବାଦୀ ଦୃଷ୍ଟିକୋଣ, ଲୋକଗୀତ, ପଲ୍ଲୀପ୍ରାଣତା, ଲୋକଜୀବନର ପ୍ରାଣପୂର୍ଣ୍ଣ ନିର୍ଭେଜାଲ ପରିପ୍ରକାଶ ଲୋକ ସାହିତ୍ୟର ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଅତୀତର ବ୍ୟାମୋହ

ଆକର୍ଷଣ ସହିତ ସାଂପ୍ରତିକତାର ମଧୁଶଯ୍ୟା ହିଁ ଲୋକସାହିତ୍ୟର ଭିତ୍ତି । ଲୋକସାହିତ୍ୟରେ ଏକ ଅପୂର୍ବ ସମାଜ ଜୀବନର ଚିତ୍ର ପ୍ରତିଫଳିତ ।

ଦାରିଦ୍ର୍ୟର ଚିତ୍ର ଓ ଗରିବ ଝିଅର ହସକାନ୍ଦର ଫେଣ୍ଟାଫେଣ୍ଟି ଦୃଶ୍ୟ ଲୋକଗୀତରେ ସହଜ ଲଭ୍ୟ ।

ଗରିବ ଘରର ଝିଅ
ଫାଳେ ଓଠେ ହସ ଆଖିରେ ଲୁହରେ
ଧନ, ପଥର ପଡିଲେ ସହ ।

ଝିଅ ଜନମ ପରଘରକୁ । ଝିଅ ଜନ୍ମର ଦୁଃଖ, ପ୍ରେମ ଓ ବିରହର ସରଳ ଚିତ୍ର ନିମ୍ନୋକ୍ତ ଲୋକଗୀତରେ ଝଙ୍କୃତ ।

ଧାନ ଦାଇଗଲି ହିଡେରେ ବଉଳ
ଧାନ ଦାଇଗଲି ହିଡେ
ଛୁଆଥିଲି ବଲି ଘର ଭିତରେ
ଦେଲ ମତେ ବଡାଦୂରେରେ ବଉଳ
ଦେଲ ମତେ ବଡାଦୂରେ ।

ବାଲ୍ୟ ବିବାହକୁ ଲୋକଗୀତରେ ସମାଲୋଚନା କରାଯାଇଛି -

ବା ଜନକୁ ମହାମଣ୍ଡଳ
ଖେଳିଖିଆ ଝିଅ ଘରୁ ବାହାରରେ
ଧନ, ଘୁଟିଛି ମେଘ ବାଦଲରେ ।

ଗ୍ରାମ୍ୟ ଉଲଙ୍ଗ ଯୌନତା ପ୍ରକାଶରେ ଲୋକଗୀତଗୁଡିକ ମୁଖର । ଏହାର ଉଦାହରଣ ପ୍ରଚୁର । ଏଠାରେ କେବଳ ଗୋଟିଏ ଉଦ୍ଧୃତି ପ୍ରଦାନ କରାଗଲା ।

ଗାଈଗୁହାଳରେ ଯେ ଦିଅର, ଦିଅର ମାଗେ ରତି
ନମାଗ ନମାଗ ଦିଅର ହୋଇଛି ରଜବତୀ ହୋ
ଆଜି ରଜବତୀ ଯେ କାଲିରେ ପୁଷ୍ପବତୀ
ପରଦିନ ଧୋବ ଦେଖ ଶୁକଲ
ଶୁକଲ ପୁହାଇ ଦେବି ରାତି ହେ ।

ରେଙ୍ଗାଲୀ ବହୁମୁଖୀ ବନ୍ଧଯୋଜନା ଦ୍ୱାରା ଦେବଗଡ଼ର ଅନେକ ଗ୍ରାମ, ଜନପଦ ଜଳମଗ୍ନ ହେଲା । ବୁଡି ଅଞ୍ଚଳର ପ୍ରତି ପରିବାର କ୍ଷତିପୂରଣ ପାଇଲେ । ଏହି ଯୋଜନାକୁ ବିରୋଧକରି ବଳରାମ ସାହୁଙ୍କ ନେତୃତ୍ୱରେ ପ୍ରଜାମାନେ ବିଦ୍ରୋହ କରିଥିଲେ । ଶେଷରେ

ବଳରାମ ସାହୁଙ୍କ ଗୋଗୁଆ ଗ୍ରାମର ଲୋକେ ରେଢ଼ାଖୋଲର ଡଇଁଚା ଅଞ୍ଚଳର ଭୀଷଣ ଜଙ୍ଗଲ ଭିତରେ ବସତି ସ୍ଥାପନ କଲେ । ଏହି ପ୍ରସଙ୍ଗ ଲୋକଗୀତ ରୂପେ ବେଶ୍ ପ୍ରଚାରିତ ।

ଇନ୍ଦିରା ନାନୀ ବାନ୍ଧିଲା ବନ୍ଧ
ଜମିଦାର ହେଲେ ଯେତକ କନ୍ଧ
ବଳିଆ ନନାର ନିଶ
ଡଇଁଚା ଜଙ୍ଗଲ ଚାଷ ।

ବାମଣ୍ଡାର ଆଦିବାସୀ ସଂପ୍ରଦାୟର ଲୋକଗୀତରେ ତାଙ୍କର ମୌଳିକ ମାନସିକତା ପ୍ରତିଫଳିତ । ବାମଣ୍ଡାର ଗଣ୍ଡ, କନ୍ଧମାନଙ୍କର ସହରୀ ସଭ୍ୟତା ସହିତ ସଂସର୍ଗ ଘଟି ସେମାନଙ୍କ ଚାଲିଚଳନରେ କୃତ୍ରିମତା ପ୍ରବେଶ କରିଛି । କିନ୍ତୁ ଭୂୟାଁମାନଙ୍କ ରୀତିନୀତି ତୁଳନାତ୍ମକ ଭାବେ ଅପ୍ରଭାବିତ ରହିଛି । ଏହି ସମସ୍ତ ଆଦିବାସୀ ସଂପ୍ରଦାୟରେ ପ୍ରଚଳିତ ଢ଼ଗଢ଼ମାଳି, ପ୍ରବାଦ ପ୍ରବଚନ ଓ କିମ୍ବଦନ୍ତୀରେ ଇତିହାସର ନିର୍ମଳ ଆଖ୍ୟାନ ଅସ୍ପଷ୍ଟ ନୁହେଁ ।

ଭୂୟାଁମାନଙ୍କର ଧାରଣା ସେମାନେ ଭୂମିପୁତ୍ର ଏଣୁ ସେମାନେ ସହରୀ ସଭ୍ୟତାର ଅଗ୍ରଜ । ବାମଣ୍ଡାରେ ଦୃଷ୍ଟିଗୋଚର ଭୂୟାଁମାନଙ୍କୁ 'ପାଉଡିଭୂୟାଁ' କୁହାଯାଇଥାଏ ଏବଂ ଏମାନେ କେଉଁଝରର ଗନ୍ଧମାର୍ଦ୍ଦନ ଗିରିରୁ ଏ ଅଞ୍ଚଳକୁ ଆସିଥିବାର ଘୋଷଣା କରନ୍ତି ।

ଆଠଶ ପୀଢ଼ରେ ଗନ୍ଧମାର୍ଦ୍ଦନ ଗିରି
ଭୂୟାଁମାନେ ନମାନନ୍ତି ଗାଡ ଫଷ୍ଟର ଜାରି
କାଟି ତଇଲା ବୁଣିଲେ ବିରି ସୁତୁରୀ
ଆଠଶ ପୀଢ଼ରେ ଗନ୍ଧମାର୍ଦ୍ଦନ ଗିରି ।

ଭୂୟାଁମାନଙ୍କର ପ୍ରଧାନ ଆରାଧ୍ୟ ଦେବତା 'ବଢ଼ାମ' । ତାଙ୍କୁ ପ୍ରତିଟି ପୂଜାରେ ପ୍ରଥମେ ଆରାଧନା କରାଯାଏ ।

ନଙ୍ଗଳ ମୁଣ୍ଡାକୁ ବୋଲିବ ନଙ୍ଗଳ ମୁଣ୍ଡାକୁ
ପ୍ରଥମେ ବନ୍ଦିବା ଆମେ ବଢ଼ାମ ବୁଢ଼ାକୁ
କୁଢ଼ାଇଲେ ଗୁଡି ବୋଇଲା କୁଢ଼ାଇଲେ ଗୁଡି
ତାଙ୍କୁ ସଙ୍ଗେ ବନ୍ଦିନେବା ବଢ଼ାମଣି ବୁଢ଼ି ।

ପୁନଶ୍ଚ ସେମାନେ ବିଶ୍ୱାସ କରନ୍ତି ଜଣେ ସର୍ବମୟକର୍ତ୍ତ୍ରୀ ରାଣୀଙ୍କ ସୁଶାସନରେ ସେମାନେ କାଳାତିପାତ କରୁଛନ୍ତି ।

ଦଉଳା କୁନ୍ଦୁରୀ ବେଲେ ଦଉଳା କୁନ୍ଦୁରୀ
ତାଙ୍କୁସଙ୍ଗେ ବିନ୍ଦିନେବା ମଣିମା ସୁନ୍ଦରୀ ।

ଭୂୟାଁମାନଙ୍କର ବଦ୍ଧମୂଳ ଧାରଣା ରାଇଜ ରାଜାର କିନ୍ତୁ ମାଟି ତାଙ୍କ ନିଜର । ପ୍ରକୃତିର ଦୟାରୁ ସେମାନେ ମାଟିର ଅଧିକାରୀ । ଅନ୍ୟ ଅନେକ ଆଦିବାସୀ ସଂପ୍ରଦାୟ ପରି ଏହି ଜାତିଶ୍ରେଷ୍ଠତ୍ୱ ଭାବନା ଭୂୟାଁ ମାନସିକତାରେ ଚିର ବିଦ୍ୟମାନ । ବାମଣ୍ଡାର କୁଚିଣ୍ଡା ଅଞ୍ଚଳର ଅନେକ ଗ୍ରାମ ଗଣ୍ଡ ସଂପ୍ରଦାୟଦ୍ୱାରା ଅଳଙ୍କୃତ । ବାମଣ୍ଡାର ବିଂଶତମ ରାଜା ଚନ୍ଦ୍ରଶେଖର ଦେବ ବଲଣ୍ଡାରେ ଏକ ନୂଆ ଜମିଦାରୀ ସୃଷ୍ଟି କରି ଝାଣ୍ଟୁମାଝୀ ନାମକ ଜଣେ ଗଣ୍ଡକୁ 'ମହାପାତ୍ର' ଉପାଧି ଦେଇ ବଲଣ୍ଡାର ଜମିଦାର କଲେ । ଏବେବି ସେହି ଜମିଦାରୀ ସ୍ଥାନକୁ 'ମହାପାତ୍ର ବଲଣ୍ଡା' କୁହାଯାଏ । 'ଚଡ଼କମରା' 'କତରକେଲା' 'ଠାକୁର ନିକ୍ତିମାଳ' ପ୍ରଭୃତି ଗ୍ରାମ ଗଣ୍ଡମାନଙ୍କ ଦ୍ୱାରା ଅଧ୍ୟୁଷିତ । ଗଣ୍ଡମାନେ ନିଜକୁ ସର୍ବଶ୍ରେଷ୍ଠ ମନେ କରନ୍ତି ଏବଂ  ନିଜ ସଂସ୍କୃତିକୁ କଡାକଡି ପାଳନ କରନ୍ତି । ଗଣ୍ଡମାନେ ଏକଦା ମଧ୍ୟ ଭାରତରେ ଶାସନ କ୍ଷେତ୍ରରେ ସର୍ବୋଚ୍ଚ ଆଧିପତ୍ୟ ବିସ୍ତାର କରିଥିଲେ । ଛତିଶଗଡର ଅନେକ ସାମନ୍ତ ରାଜାଙ୍କଠାରୁ ସମ୍ବଲପୁର ଗଡଜାତ ମଧ୍ୟରୁ ଦଶଜଣ ରାଜା ଗଣ୍ଡଥିବାର ଐତିହାସିକମାନେ ସ୍ୱୀକାର କରନ୍ତି । ଦ୍ୱାଦଶରୁ ଚତୁର୍ଦ୍ଦଶ ଶତାବ୍ଦୀରେ ଉତ୍ତର ଭାରତର ଚୌହାନ ଓ ଦକ୍ଷିଣ ଭାରତର  ଗଙ୍ଗମାନେ ସ୍ଥାନୀୟ ଗଣ୍ଡ ଓ କନ୍ଧ ସଂପ୍ରଦାୟର  ଶାସକମାନଙ୍କୁ ପରାସ୍ତ କରିଥିବାର ଜଣାଯାଏ । ଗ୍ରାମ ସଂଗଠନ କ୍ଷେତ୍ରରେ ଗଣ୍ଡମାନେ ସୁଦୃଢ଼ ଥିଲେ । ଏଣୁ ଅଯଥା ସଂଘର୍ଷକୁ ଏଡାଇବା ପାଇଁ କୌଶଳ କ୍ରମେ ରାଜାମାନେ ଏମାନଙ୍କୁ ଗ୍ରାମମୁଖ୍ୟ ରୂପେ ମହାପାତ୍ର ଦେହୁରୀ, ଠାକୁର, ଗଉନ୍ତିଆ, ମକଦ୍ଦମ, ରୂପେ ସ୍ୱୀକୃତି ଦେଇଥିଲେ । କ୍ଷମତାର ଏହି ବିକେନ୍ଦ୍ରୀକରଣ ଗଣ ସମ୍ପ୍ରଦାୟକୁ ସାମାନ୍ୟ ମାନସିକ ପ୍ରଶାନ୍ତି ଆଣିଦେଇଥିଲା ଗଣ୍ଡମାନଙ୍କ ଏକଜିଦିଆ ପ୍ରକୃତିକୁ ତାସଲ୍ୟ କରି 'ଗଣ୍ଡମୂର୍ଖ' ପ୍ରବାଦ ପ୍ରଚଳିତ । ରାଜ୍ୟସିନା ରାଜାର କିନ୍ତୁ ଭୂମି ତ ଗଣ୍ଡର ଏହି ପ୍ରତ୍ୟୟକୁ ସମର୍ଥନ କରି ଗଢ଼ି ଉଠିଲା ଏକ ପ୍ରଜାତିର ପ୍ରବଚନ - 'ଗଣ୍ଡର ଯେ ଭୂଇଁ । ରାଜାର ଯେ ରାଏଜ୍' ।

ବିଭିନ୍ନ ପ୍ରଜାତିଙ୍କୁ ନେଇ ଅନେକ ପ୍ରବଚନ ଲୋକମୁଖରେ ପ୍ରଚଳିତ । ଏଗୁଡିକରୁ ଜାତିର ଚାରିତ୍ରିକ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଥାଏ । ଏମିତି କିଛି ପ୍ରବଚନକୁ ଏଠି ଉଦ୍ଧାର  କରାଯାଇପାରେ

୧) ବଷା ଲକ୍ଷେ ପ୍ରଜା ପୋଷା, ମେଳିଆ ଚଷା

୨) ଝରାମାରେ ମାଛ ଖାଏ କଙ୍କଡା

୩) ପାଣସଙ୍ଗୀତ କମାରମିତ, ଧୁବୁଣୀ ମାଇଁ, ଏତିନିଙ୍କୁ ପରତେ ନାଇଁ

୪) ଚଷା ଅହଙ୍କାରୀ, ବ୍ରାହ୍ମଣ ଭିକାରୀ ।

୫) ତେଲି ମହାପ୍ରସାଦ, ଅଗ୍ରିଆ ଚିହ୍ନାର

୬) ଭୁଲିଆ ବୁଣେ ଧୁତି, ପିନ୍ଧେ ଲେଙ୍ଗରା

୭) ଅଗ୍ରିଆ ଘର କମ କେଭେ ନାଇଁ ହୁଏ ଶମ
ଯେବେ ନେବା ଯମ ସେବେ ହେବା ଶମ

୮) ଅଗ୍ରି ଘର ଢ଼ୁବାଘର
ପୁଷେ ଉଷୁମ ଜେଠେ ଥର

୯) ଅଗ୍ରିଆ ଚଷାର ଉଡ଼୍‌ସି ବାନା
ବୁନ୍‌ସି ଚନା ଘିଚ୍‌ସି ସୁନା
ବା ଏକା ଅଗ୍ରିଆର ଚାଷକରା
ବୁନସି ଜିରା ଦାଏସି ହୀରା

୧୦) ଗଉଡ ଦେଖା ମାଛ
କେଉଟ ଦେଖା ଘାସ

## ସ୍ଥାନ ନାମର ଲୌକିକତା :

ବାମଣ୍ଡାର ବିଭିନ୍ନ ସ୍ଥାନନାମ ମଧ୍ୟରେ ଇତିହାସ ପୁରାଣର ନିବିଡ଼ ସମ୍ପର୍କ ଅନୁଭୂତ ହୁଏ । ସ୍ଥାନନାମ ମଧ୍ୟରେ ଲୁକ୍କାୟିତ ଥାଏ ଅନେକ ଐତିହାସିକ, ଭୌଗୋଳିକ, ଭାଷାତାତ୍ତ୍ୱିକ ଓ ମାନବିକ ରହସ୍ୟ । ଏହି ନାମରୁ ଗୋଟିଏ ଭୂଖଣ୍ଡର ସାଂସ୍କୃତିକ ଐତିହ୍ୟ ସ୍ପଷ୍ଟ ହୋଇଥାଏ । ଏମିତି କିଛି କିମ୍ବଦନ୍ତୀ ଲୋକକଥା ଓ ଇତିହାସ ସଂଯୁକ୍ତ ସ୍ଥାନ ନାମକୁ ଆଲୋଚନା କରାଯାଇପାରେ ।

**୧) ଅକ୍ଷର ଶିଳା :** ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ଏହି ପଲ୍ଲୀରେ ବୌଦ୍ଧଯୁଗୀୟ ଏକ ଶିଳାଲିପି ରହିଛି । ଶିଳାଲିପିଟିରେ ନବମ ଦଶମ ଶତାବ୍ଦୀର ବୌଦ୍ଧ ଭିକ୍ଷୁ ବିଚିତ୍ର ଭୂଷଣଙ୍କ ନାମ ଖୋଦିତ । ବ୍ରାହ୍ମଣୀ କୂଳେ କୂଳେ ମଗଧରୁ ରତ୍ନଗିରି ଯିବାକୁ ଏହି ରାସ୍ତା ସୁବିଧା ଓ ସଳଖ ଥିବାରୁ ଶ୍ରମଣମାନେ ଏହି ପଥକୁ ଗ୍ରହଣ କରିଥିଲେ । 'ବିଚିତ୍ର ଭୂଷଣ' ପୀତଯୋଗୀଙ୍କର ଜଣେ ସର୍ବଶ୍ରେଷ୍ଠ ଶିଷ୍ୟ । ସେ 'କ୍ଷର ପାଟକ' ଅଞ୍ଚଳରେ ଯୋଗ ସାଧନ କରୁଥିବାର ଜଣାପଡେ । ଏହି କ୍ଷରପାଟକ ପରେ ଅକ୍ଷରପାଟ ବା ଅକ୍ଷରଶିଳାରେ ରୂପାନ୍ତରିତ ହୋଇଛି । ଅକ୍ଷରଶିଳା ନିକଟରେ ଥିବା ଏହି ଶିଳାକୁ ଅକ୍ଷର ପାଟ ରୂପେ ଲୋକେ ଏବେବି ପୂଜା କରୁଛନ୍ତି । ନେପାଳ ଦରବାରରେ ସଂଗୃହୀତ କାଳଚକ୍ର ଗୁହ୍ୟ ତନ୍ତ୍ରୋପଦେଶରୁ ଜଣାଯାଏ

ଶ୍ରୀ ପୀତଯୋଗୀ ଚରଣାମ୍ବୁଜଂନ୍ନୁସ୍ତୁତୋପି
ବିଚିତ୍ର ବର୍ଣ୍ଣ ଭୂଷଣୋ କ୍ଷରପାଟକେଽସ୍ମିନ୍
ପ୍ରାଗାଂଗସଙ୍ଗ କରୁଣା ଯୋଗ ମୁତ୍ତମଂଚ
ମୁଦଂ କୁରୁତେ ସୁଗତାଶ୍ରୟ ଶ୍ରେୟ ହେତୋଃ ।

୨) ତୁଷୁଲା : ପାର୍ବତ୍ୟ ଉପତ୍ୟକା 'ତଇଳା'ରୁ ଏହି ନାମ ଉଦ୍ଭବ ହୋଇଥିବାର ସମ୍ଭବ । କିନ୍ତୁ ତୁଷୁଲା ଅଞ୍ଚଳରେ ଏକ କିମ୍ବଦନ୍ତୀ ପ୍ରଚଳିତ ଅଛି । ପଞ୍ଚପାଣ୍ଡବ ବନବାସରେ ଥିଲାବେଳେ କୈଦନ୍ତା ପର୍ବତ ଶିଖରରେ ବାସ କରିଥିଲେ । କୁନ୍ତୀଙ୍କର ଏ ସ୍ଥାନ ମନୋରମା ବୋଧ ହେବାରୁ ପର୍ବତ ଶୃଙ୍ଗକୁ କୋଇନ୍ତା ବା କୈଦନ୍ତା କୁହାଗଲା । ପୁନଶ୍ଚ କୁନ୍ତୀଙ୍କୁ ପଥଶ୍ରମ ଯୋଗୁ ଶୋଷ ହୋଇଥିଲା । ସେ ପାଣି ପିଇବାକୁ ମାଗିଲେ । ଭୀମ ପର୍ବତ ଶୃଙ୍ଗକୁ ଏକ ମୁଥମାରିବାରୁ ଦୁଇଧାର ଜଳ ନିର୍ଗତ ହେଲା । ଏକ ଧାର ପ୍ରଧାନପାଟ ଓ ଅନ୍ୟଧାର କୋରଡକୋଟ ପ୍ରପାତ ସୃଷ୍ଟିକଲା । ଜଳପାନ କରି ତୋଷ ହୋଇଥିବାରୁ ସ୍ଥାନ ନାମ ତୋଷଳ ବା ତୁଷୁଲା ହୋଇଥିବାର ଲୋକବିଶ୍ୱାସ ଅଛି ।

୩) ବକସୁଆଁ ବା ବକ୍‌ସମା : କୁଚିଣ୍ଡା ଅଞ୍ଚଳର ଏହା ଏକ ବଡଗ୍ରାମ । ଲୋକବିଶ୍ୱାସ କରନ୍ତି ଶ୍ରୀକୃଷ୍ଣ ବକାସୁରକୁ ମାରି ଫୋପାଡ଼ି ଦେବାରୁ ତାର ଶବ ଏଠାରେ ପଡିଥିଲା । ଏଣୁ ବକସୁଆଁ ବା କାଳକ୍ରମେ ଗ୍ରାମର ନାମ ବକ୍‌ସମା ହୋଇଛି ।

୪) ଶରଣକୋଟ : ଏହି ଜାଙ୍ଗଲିକ ଗ୍ରାମରେ ଶ୍ରମଣମାନେ ଅତୀତରେ ବିଶ୍ରାମ କରୁଥିବା ଯୋଗୁଁ ଗ୍ରାମର ନାମ ଶ୍ରମଣକୋଟ ବା ଶରଣକୋଟ ହୋଇଛି ।

ସୀମିତ ସୁଯୋଗ ଭିତରେ ବାମଣ୍ଡାର ସମସ୍ତ ସ୍ଥାନ ନାମକୁ ବିଶ୍ଳେଷଣ କରିବାର ସୁଯୋଗ ନାହିଁ । ଏହି ସ୍ଥାନନାମ ଅନ୍ତରାଳରେ ଲୁକ୍କାୟିତ ଇତିହାସର ସତ୍ୟ ଉନ୍ମୋଚନ ଦ୍ୱାରା ହିଁ ମାନବ ସଭ୍ୟତାର ପ୍ରଗତିର ପରମ୍ପରା ଲୋକଲୋଚନକୁ ଆସିବ । ତଥାପି ମଧ୍ୟ କେତେକ ଗ୍ରାମନାମକୁ ସଂକ୍ଷେପରେ ସ୍ମରଣ କରାଯାଇପାରେ । ଭାବା ଜ୍ୟୋତି ବା ସୂର୍ଯ୍ୟ ପୂଜା ଅନୁସାରେ 'ଭୋଜପୁର' ଶିବ ପୂଜା ଅନୁସାରେ ଝାଡେଶ୍ୱର, ମୁକ୍ତେଶ୍ୱର ଏବଂ ବିଶିଷ୍ଟ ରାଜପୁରୁଷଙ୍କ ନାମାନୁସାରେ ଗୋବିନ୍ଦପୁର, ମୋହିନୀପୁର, ବାସୁଦେବପୁର 'ଜନାର୍ଦ୍ଦନପୁର' ମେକଫାରସନପୁର ପ୍ରଭୃତି ଗ୍ରାମ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

## ଉପସଂହାର :

ବାମଣ୍ଡା ଓଡ଼ିଶାର ସାରସ୍ୱତ ଆକାଶର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ କବିବର ରାଧାନାଥଙ୍କ ଦ୍ୱାରା 'ବୁଧ - ହଂସ କେଳିସର' ରୂପେ ମାନ୍ୟତା ପ୍ରାପ୍ତ । ଏହି ଭୂମି ପ୍ରାଚୀନ ଓ ଆଧୁନିକପନ୍ଥୀ କବି ସାହିତ୍ୟିକଙ୍କୁ ସମ୍ମାନ ଦେବାରେ କାର୍ପଣ୍ୟ କରିନାହିଁ । ସାହିତ୍ୟର ଏକ ଅନାଲୋକିତ ଅଧ୍ୟାୟକୁ ଆଲୋକିତ କରି ବାମଣ୍ଡା ଓଡ଼ିଆ ଭାଷା - ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ବାମଣ୍ଡା ବାଣୀଙ୍କ ଉପାସନା ସ୍ଥଳ ରୂପେ ସ୍ୱୀକୃତ । ବାମଣ୍ଡାରେ ଶିଷ୍ଟ ସାହିତ୍ୟ ସହିତ ଲୋକସାହିତ୍ୟର ଏକ ସମୃଦ୍ଧ ପରମ୍ପରା ଚିର ବିଦ୍ୟମାନ । ଆଲୋଚକ ଓ ଗବେଷକଗଣ ଶିଷ୍ଟ ସାହିତ୍ୟର ଲିଖିତ ରୂପ ଭିତରେ ବାଟବଣା । ବାମଣ୍ଡାର ବଣ୍ୟକାନ୍ତାର ଗ୍ରାମ ପଲ୍ଲୀ ଭିତରେ ଲୁକ୍କାୟିତ ଜନଜାତିର ମୌଖିକ ସାହିତ୍ୟ ଏଯାବତ୍ ଅନାବିଷ୍କୃତ ।

ଅଙ୍ଗୁଳିମେୟ ପ୍ରଚେଷ୍ଟା ମଧ୍ୟରେ ସେହି ମହାନ୍ ଭୂଖଣ୍ଡର ଇତିହାସକୁ ବିଜ୍ଞାପିତ କରିବା ବିନ୍ଦୁରେ ସିନ୍ଧୁ ଦର୍ଶନ ପରି ଉଦ୍ଭଟ । ମୌଖିକ ପରମ୍ପରାର ଅଶୋକ ବନରୁ ଇତିହାସ ଜାନକୀଙ୍କୁ ଉଦ୍ଧାର କରିବା ଅତୁଳନୀୟ ପ୍ରୟାସର ଅପେକ୍ଷା ରଖେ । ସଂଶିତ ପ୍ରୟାସ ସେ ଦୃଷ୍ଟିରୁ କିଞ୍ଚିତ ମାତ୍ର । ଉପାଦାନ ସଂଗ୍ରହ ଓ ତାର ପରୀକ୍ଷଣ ଅଯଥା ବାକ୍ ପଲ୍ଲବନ ଓ ପ୍ରକ୍ଷିପ୍ତାଂଶକୁ ବାଦ୍ ଦେଇ ସତ୍ୟ ସଂଧାନ ଯେଉଁ ନିଷ୍ଠା ଓ ନିରବଚ୍ଛିନ୍ନ ସାଧନାର ଆବଶ୍ୟକତାରଖେ ତାହା ସୁଲ୍‌ଭ ନୁହେଁ । ସାମଗ୍ରିକ ଭାବେ ଲୋକ ସାହିତ୍ୟର ଅଧ୍ୟୟନ ଦ୍ୱାରା ଆମର ସାଂସ୍କୃତିକ ଇତିହାସକୁ ପୂର୍ଣ୍ଣାଙ୍ଗ ରୂପ ଦିଆଯାଇପାରେ ।

ବାମଣ୍ଡା ଅଞ୍ଚଳର ମାନବସଭ୍ୟତାର ବିବର୍ତ୍ତନର ଇତିହାସ ଲୋକସାହିତ୍ୟ ମଧ୍ୟରେ ନିହିତ । ଲୋକସାହିତ୍ୟ ମାନବ ଧର୍ମର ପ୍ରଚାରକ, ପ୍ରକୃତିର ପୂଜକ । ଆନ୍ତର୍ଜାତୀୟ ଶାନ୍ତି ମୈତ୍ରୀ ଓ ପ୍ରଗତିର ନିୟାମକ । ସାର୍ବଜନୀନ ଜୀବନ ଜୀଇଁବାର ସୂକ୍ଷ୍ମମନ୍ତ୍ର ଲୋକ ସାହିତ୍ୟରେ ଅନୁରଣିତ । ସେହି ସୂକ୍ଷ୍ମ ବୀଜ ମନ୍ତ୍ରର ଆବିଷ୍କାର ଜୀବନକୁ ଓ ଜଗତକୁ ନିରନ୍ତର ଉର୍ଦ୍ଧ୍ୱାୟମାନ କରିବ ଏବଂ ସ୍ୱାର୍ଥସର୍ବସ୍ୱ, ପ୍ରଶଂସା ପୀଡିତ ସାହିତ୍ୟ ଓ ଇତିହାସକୁ ନିର୍ମଳ ଓ କଳଙ୍କମୁକ୍ତ ଭାବରେ ପ୍ରତିଭାତ କରିବ ।

# ଓଡ଼ିଆ ସାହିତ୍ୟରେ ବାହ୍ୟ ପ୍ରଭାବ

ସାହିତ୍ୟ ଏକ ନିଷ୍ଠାପର ଉଦ୍ୟମର ଫଳ । ଶତାବ୍ଦୀ ଶତାବ୍ଦୀ ଧରି ଏହା ପରିବ୍ୟାପ୍ତ, ଗତିଶୀଳ ଓ ଜୀବନ୍ମୟ । ସାହିତ୍ୟର ଧାରାରେ ପ୍ରତିବିମ୍ବିତ ଜୀବ ଓ ଜଗତ । ଇତିହାସଠାରୁ ସଂସ୍କୃତିଯାଏ ସାହିତ୍ୟ ବିମ୍ବରେ ବିମ୍ବିତ । ଜୀବନର ଯେତେ ନିଚ୍ଛକ ପ୍ରତିଫଳନ କରେ ସେତିକି ସଫଳ ହୁଏ ସାହିତ୍ୟ । ଏଣୁ ଗୋଟିଏ ଭାଷାର, ଗୋଟିଏ ଅଞ୍ଚଳର ସାହିତ୍ୟ ସେହି ଅଞ୍ଚଳର ସାମଗ୍ରିକ ରାଜନୀତି, ଚାଲିଚଳନ ସଂସ୍କୃତି ଓ ଐତିହ୍ୟର ପ୍ରାଣବନ୍ତ ଧାରା । ଓଡ଼ିଆ ସାହିତ୍ୟ ସେମିତି ମୌଳିକ ଅମନ୍ଦ ମନ୍ଦାକିନୀ ପରି କେଉଁ ପୁରାଣ ଯୁଗରୁ ପ୍ରବାହିତ । ଏହାର ଧାରା ବିଭିନ୍ନ ପ୍ରେକ୍ଷାଦେଇ ବିଭିନ୍ନ ପ୍ରଭାବ ଦେଇ ପୁଷ୍କଳ ଓ ପ୍ରାଣବନ୍ତ । ବାହ୍ୟ ପ୍ରଭାବ ଏହାର ଧାରାକୁ କଳୁଷିତ କରିନାହିଁ ବରଂ ପରିପୁଷ୍ଟ କରିଛି । ଯେଉଁଠି ବାହ୍ୟ ପ୍ରଭାବ ମାତ୍ରାତିରିକ୍ତ ହୋଇଛି ସେଇଠି ପଥହରା ହୋଇଛି ସାହିତ୍ୟ, ଲକ୍ଷ୍ୟ ହୋଇଛି ବିଚ୍ୟୁତ । ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ନିଜସ୍ୱ ବର୍ଣ୍ଣବିଭାରେ ଥିଲା ସମୁଜ୍ଜ୍ୱଳ । ପ୍ରାକୃତ ଭାଷାର ଅନୁବର୍ତ୍ତୀ ଲୋକ ଭାଷାର ସାମର୍ଥ୍ୟରେ ଥିଲା ଗରିମାମୟ । ସାରଳା ମହାଭାରତଠାରୁ ନରସିଂହ ସେଣଙ୍କ କୃତି ପର୍ଯ୍ୟନ୍ତ ସଂସ୍କୃତଠାରୁ ନିରାପଦ ଦୂରତା ରକ୍ଷା କରି ଲୋକମୁଖର ଭାଷାରେ ମୁଖର ଥିଲା ସାହିତ୍ୟ । ଭଞ୍ଜ ଯୁଗରେ ସଂସ୍କୃତ ସାହିତ୍ୟ ସହିତ ଛଦ୍ମ ପ୍ରତିଯୋଗିତାରେ ଅବତୀର୍ଣ୍ଣ ସାହିତ୍ୟିକ କୃତି ହେଲା ସଂସ୍କୃତାୟିତ । ଲୋକଭାଷାରୁ ଓହରିଯାଇ ଜଗନ୍ନାଥ ଦାସଙ୍କ ଭାଗବତ ମଧ୍ୟ ପରିଚ୍ଛନ୍ନ ସଂସ୍କୃତର ନିର୍ମୋକ ପରିଧାନ କଲା । ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ଓ ସାରଳା ଦାସଙ୍କ ମହାଭାରତରେ ଯେଉଁ ଓଡ଼ିଆତ୍ୱର ସ୍ୱତଃସ୍ଫୂର୍ତ୍ତତା ପ୍ରତିଫଳିତ, ଭାଗବତରେ ତାହା ହେଲା ଖଣ୍ଡିତ ଓ ସଂସ୍କୃତାୟିତ । ଆରମ୍ଭ ହେଲା ପରମୁଖୀ । ପେକ୍ଷୀ ସାରସ୍ୱତ ପ୍ରୟାସ । ଚୈତନ୍ୟଙ୍କ ଆଗମନ ପରେ ବଙ୍ଗଳା ପ୍ରଭାବ ଆସ୍ଥାନ ମାଡିଲା । ସାହିତ୍ୟ ଏକ ପ୍ରକାର ସଂସ୍କୃତ ଓ ବଙ୍ଗଳାର ଅନୁସରଣକୁ ଜୀବନର ବ୍ରତ କଲା । ଏପରିକି ଚୈତନ୍ୟ ଚିରତାମୃତ ବଙ୍ଗଭାଷାରେ ଓଡ଼ିଆ ଲିପିରେ ତାଳପତ୍ରମାନଙ୍କରେ ଲେଖାଗଲା । ରାଧାନାଥ ଯୁଗୀୟ ସାହିତ୍ୟର ଅବସ୍ଥା ଅତି ଭୟଙ୍କର । ଶିକ୍ଷାର ଅଗ୍ରଗତି ସହିତ ସାରସ୍ୱତ ସାଧକଗଣ ବଙ୍ଗଳା ଓ ଇଂରାଜୀର ପ୍ରଭାବରେ

ଆଚ୍ଛନ୍ନ ହେଲେ । ଯେଉଁ କତିପୟ ସାଧକ ମୌଳିକ ଭାଷା ଆରାଧନାର ଡିଣ୍ଡିମ ପିଟିଲେ ସେମାନେ ପ୍ରକାରାନ୍ତରେ ସଂସ୍କୃତର ନାଗଫାଶରେ ବନ୍ଦୀ ଥିଲେ । ବେଳେ ବେଳେ ବାହ୍ୟ ପ୍ରଭାବ ଏତେ ଆଚ୍ଛନ୍ନ କଲା ଯେ ଅନେକ ସ୍ରଷ୍ଟା ଭିନ୍ନ ଭାଷାର ସୃଷ୍ଟିର ବିକଳ ଅନୁସରଣରେ ଓଡ଼ିଆ ବାଣୀଙ୍କୁ ମଣ୍ଡିତ କଲେ । ବଙ୍ଗ ଓ ଇଂରାଜୀ ଭାଷାର ପ୍ରଭାବ ରାଧାନାଥ ଯୁଗଠାରୁ ସବୁଜ ଯୁଗ ପର୍ଯ୍ୟନ୍ତ ବଳବତ୍ତର ରହିଲା । ସାମାନ୍ୟ ବିରତି ଭାବେ ଠିଆ ହେଲେ ନୀଳକଣ୍ଠ, ଗୋପବନ୍ଧୁ, ମାନସିଂହ ପ୍ରମୁଖ ସାରସ୍ୱତ ଶିଳ୍ପୀ । କିନ୍ତୁ ପ୍ରଥମ ଦୁଇଜଣ ସଂସ୍କୃତ ପ୍ରଭାବରୁ ମୁକୁଳି ପାରି ନ ଥିବା ବେଳେ ମାନସିଂହ କ'ଣ ବଙ୍ଗ ବା ରବୀନ୍ଦ୍ର ପ୍ରଭାବରୁ ମୁକ୍ତ ଥିଲେ ?

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସଂସ୍କୃତରେ ଧୂରୀଣ ଥିଲେ ମଧ୍ୟ ବଙ୍ଗଳା ଦେଇ ସଂସ୍କୃତକୁ ଦେଖୁଥିଲେ । ରାଧାନାଥ ଓଡ଼ିଆର ଶୂନ୍ୟତାକୁ ବଙ୍ଗଳାରୁ ପୂର୍ଣ୍ଣ କଲେ । କିନ୍ତୁ ପୃଷ୍ଠଭୂମିରେ ରଖିଲେ ଓଡ଼ିଶାର କିମ୍ବଦନ୍ତୀ, ଚାଲିଚଳନ, ରୀତିନୀତି, ପାହାଡ- ପର୍ବତ, ପ୍ରକୃତି । ଏଣୁ ସେ ଛନ୍ଦ କାବ୍ୟ ପ୍ରୟାଣ ଭିତରେ ମଧ୍ୟ ମୌଳିକତାର ଆଭା ପ୍ରଦର୍ଶନ କଲେ । ସବୁଜ ଯୁଗ ପରବର୍ତ୍ତୀ ସାହିତ୍ୟ କିନ୍ତୁ ବଙ୍ଗଳାର ବିକଳ ଅନୁକରଣର ଦ୍ୟୋତନାରେ ପୀଡିତ ହେଲା । ପରବର୍ତ୍ତୀ ପର୍ଯ୍ୟାୟରେ ସଚ୍ଚିଦାନନ୍ଦ ରାଉତରାୟ, ବିନୋଦ ନାୟକ, ଲକ୍ଷ୍ମୀଧର ନାୟକ, ଚିନ୍ତାମଣି ବେହେରା ପ୍ରମୁଖ ସିଧାସଳଖ ବଙ୍ଗଳାକୁ କପି କରି ମୌଳିକ ଓଡ଼ିଆ ରୂପେ ଠିଆ କଲେ । ସଚ୍ଚି ରାଉତରାୟଙ୍କ 'ସୃଷ୍ଟି ଛନ୍ଦେ' ରବୀନ୍ଦ୍ରଙ୍କ 'ନମସ୍କାର' କବିତାର ନକଲ । ଅନ୍ୟପକ୍ଷରେ ଲକ୍ଷ୍ମୀଧର ନାୟକଙ୍କ 'ନବବର୍ଷାପଦ୍ୟ' (ସହକାର-୧୭/୩) ରବୀନ୍ଦ୍ରଙ୍କ 'ବର୍ଷା ମଙ୍ଗଳ' କବିତାର ବିକଳ ଅନୁକରଣ । ଏହାକୁ ସମାଲୋଚନା କରି କୈଳାସ ମହାନ୍ତି ଓ ଗୋପୀନାଥ ମହାନ୍ତି 'ନବଭାରତ'(୪/୨) ସଂଖ୍ୟାରେ 'ଦିନ ଦିପହରେ ନୂଆନାଟ' ଲେଖନ୍ତି । ଏଥିରେ ରବୀନ୍ଦ୍ର ଅନୁକରଣକୁ କଡା ସମାଲୋଚନା କରାଯାଇଛି ।

ଅନେକ ସମାଲୋଚନା - ପ୍ରତିସମାଲୋଚନା ନିନ୍ଦା ପ୍ରସ୍ତାବ ପରେ ମଧ୍ୟ ଏହି ବଙ୍ଗ ପ୍ରଭାବ ଓଡ଼ିଆ ସାହିତ୍ୟରେ ଏଯାବତ୍ ଆସ୍ଥାନ ମାଡ଼ି ବସିଛି । ଅନେକ କବି, ଗାଳ୍ପିକ, ପ୍ରାବନ୍ଧିକ ବଙ୍ଗଳା ରଚନା (ବର୍ତ୍ତମାନ କିଛି ହିନ୍ଦୀ ରଚନା)କୁ ଅବିକଳ ନକଲ କରି ବା ସାମାନ୍ୟ ସ୍ଥାନ-କାଳ- ପାତ୍ରରେ ପରିବର୍ତ୍ତନ କରି ମୂଳଲେଖା ଭାବରେ ଚଳାଇ ନେଉଛନ୍ତି । ଏ ପ୍ରସଙ୍ଗରେ ପ୍ରଖ୍ୟାତ ସାହିତ୍ୟିକ ଚିନ୍ତାମଣି ବେହେରାଙ୍କ 'କ୍ଲାସିକ୍ ଓ ରୋମାଣ୍ଟିକ୍' ଚର୍ଚ୍ଚିତ ଆଲୋଚନାକୁ ଅନୁଧ୍ୟାନ କରାଯାଇପାରେ । ଶଂସିତ ଆଲୋଚନାଟି ବଙ୍ଗଳାର ଶିବନାରାୟଣ ରାୟଙ୍କ 'କ୍ଲାସିକ୍ ଓ ରୋମାଣ୍ଟିକ୍' ଆଲୋଚନାର ସିଧାସଳଖ କପି । ସାଂପ୍ରତିକ କାଳର ଅନେକ ନାମୀଦାମୀ କବି ଓ ଗାଳ୍ପିକଙ୍କ ଏହି କାରନାମା ରହିଛି । ହିନ୍ଦୀ

ଓ ବଙ୍ଗଳା କୃତିକୁ ନକଲ କରି ସେମାନେ ନିଜସ୍ୱ କୃତି ରୂପେ ଚଳାଇ ନେଉଛନ୍ତି । ପାଠକେ ଚାହିଁଲେ ସେ ତାଲିକା ମଧ୍ୟ ଦିଆଯାଇପାରେ ।

ଶଂସିତ ପ୍ରବନ୍ଧର ସୀମିତତା ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ବଙ୍ଗ ପ୍ରଭାବ ଶୀର୍ଷକ ଉପରେ ସାମାନ୍ୟ ଆଲୋକପାତ କରାଯାଉଛି । ଓଡ଼ିଆ ସାହିତ୍ୟ ପ୍ରକାଶନର ସୁଯୋଗ ଲଭିବାର ଉନ୍ମେଷ କାଳରେ ଶ୍ରୀ ରାମପୁର ପ୍ରେସ୍ ଉପରେ ହିଁ ଏ ଭାଷା ନିର୍ଭରଶୀଳ ଥିଲା । ପାଠ୍ୟପୁସ୍ତକ ସମୂହ ପ୍ରାୟତଃ ବଙ୍ଗଳାରୁ ଅନୁବାଦ ହେଉଥିଲା । ଲେଖକମାନେ ବଙ୍ଗ ପ୍ରଭାବରେ ଆକ୍ରାନ୍ତ ଥିଲେ । ଏହି ସମୟରେ କଟକ ଡିବେଟିଂ କ୍ଲବରେ ୧୮୬୮ ଡିସେମ୍ବର ମାସରେ ପ୍ରତ୍ନତାତ୍ତ୍ୱିକ ରାଜେନ୍ଦ୍ରଲାଲ୍ ମିତ୍ର ଓଡ଼ିଶାରେ ବଙ୍ଗଭାଷା ପ୍ରଚଳନ ଉପରେ ଗୁରୁତ୍ୱ ଦେଇ ବକ୍ତୃତା ପ୍ରଦାନ କରିଥିଲେ । ରାଜେନ୍ଦ୍ରବାବୁଙ୍କ ପ୍ରେରଣା ଓ ପ୍ରୋତ୍ସାହନରେ ଓଡ଼ିଆ ଭାଷାକୁ ପ୍ରକାଶ୍ୟ ବିରୋଧ କରି ଓଡ଼ିଶାର ବିଦ୍ୟାଳୟରେ ବଙ୍ଗଳା ଭାଷା ପ୍ରଚଳନ ସମର୍ଥନ ପାଇଁ କଟକର କାଳୀପଦ ବନ୍ଦୋପାଧ୍ୟାୟଙ୍କ ସମ୍ପାଦନାରେ ୧୮୬୯ ଫେବୃୟାରୀ ୧୬ରେ ଓଡ଼ିଆ ଭାଷାରେ 'ଉତ୍କଳ ହିତୈଷିଣୀ' ଏବଂ ଫେବୃୟାରୀ ୨୨ ତାରିଖରେ ଇଂରାଜୀ ଭାଷାରେ 'କଟକ ଷ୍ଟାର୍' ପତ୍ରିକାଦ୍ୱୟ କଟକ ସୋସାଇଟି ପକ୍ଷରୁ ଆତ୍ମପ୍ରକାଶ କରିଥିଲା । ୧୮୭୦ ଜାନୁୟାରୀ ମାସରେ ବାଲେଶ୍ୱର ସରକାରୀ ସ୍କୁଲର ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟେ' ପୁସ୍ତକ ଓଡ଼ିଆ ଭାଷା ବିରୁଦ୍ଧରେ ପ୍ରଚଣ୍ଡ ଆକ୍ରମଣ କରିଥିଲା । ଏହି ସମସ୍ତ ମିଳିତ ଚକ୍ରାନ୍ତ ବିରୁଦ୍ଧରେ 'ଉତ୍କଳ ଦୀପିକା' ଭୀଷଣ ସଂଗ୍ରାମ କରିଥିଲା, ଜୟଯୁକ୍ତ ମଧ୍ୟ ହୋଇଥିଲା । ଦୀପିକା ୧୩.୩.୧୮୬୯ରେ 'ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ' ଶୀର୍ଷକ ସମ୍ବାଦରେ ରାଜେନ୍ଦ୍ର ବାବୁଙ୍କ ବକ୍ତୃତା ତଥା ତାଙ୍କ ଅନୁଗାମୀଙ୍କୁ ସମାଲୋଚନା କରାଯାଇଛି ଏବଂ ଓଡ଼ିଶା ତିନୋଟି ସରକାର ଅଧୀନରେ ରହିଥିବାରୁ 'ଓଡ଼ିଆ ଭାଷା ତିନିଥେଣ୍ଟିୟା କାକୁଡି ବାଡ଼ି ପ୍ରାୟ ତୁଚ୍ଛାକୁ କ୍ଷତିଗ୍ରସ୍ତ' ହେଉଥିବାର ଦର୍ଶାଯାଇଛି । ଏହି ସମୟରେ ଅନେକ ବୁଦ୍ଧିଜୀବୀଙ୍କ ପ୍ରେରିତପତ୍ର ଦୀପିକାରେ ପ୍ରକାଶ ପାଇ ଆନ୍ଦୋଳନକୁ ସରଗରମ କରିଥିଲା ।

ଉତ୍କଳ ଦୀପିକା ପୃଷ୍ଠାରେ ଯେଉଁ ଆଶଙ୍କା ପ୍ରକାଶ ପାଇଥିଲା ଯେ, ଅତ୍ୟଧିକ ବଙ୍ଗ ଭାଷାର ପ୍ରଭାବ ଓଡ଼ିଆ ଭାଷାର ମୌଳିକତାକୁ ଖଣ୍ଡିତ କରିବ ସେହି ଆଶଙ୍କା ରବୀନ୍ଦ୍ର ଯୁଗରେ ସତ୍ୟ ପ୍ରମାଣିତ ହୋଇଛି । ଉଲ୍ଲିଖିତ ଆନ୍ଦୋଳନର ଷାଠିଏ ବର୍ଷ ପରେ ମୁଖ୍ୟତଃ ସବୁଜ ଯୁଗର ସାରସ୍ୱତ ସାଧକଗଣ ସଜ୍ଞାନ ଓ ଅଜ୍ଞାନ ଭାବରେ ବଙ୍ଗ ପ୍ରଭାବକୁ ସ୍ୱାଗତ କରିଥିଲେ । ଫଳରେ ବଙ୍ଗୀୟ ଛାଞ୍ଚରେ ଗଢ଼ିଉଠିଲା ନୂତନ କାବ୍ୟ-କବିତା । ଏହି ବିଦେଶୀୟ ସାରସ୍ୱତ ସୃଷ୍ଟିକୁ ବିଭିନ୍ନ ପତ୍ରପତ୍ରିକା ମାଧ୍ୟମରେ ସାମୟିକ ବିରୋଧ ମଧ୍ୟ କରାଗଲା । ସହକାର (୧୩/୧୧) କବି ସମ୍ମିଳନୀ ସଂଖ୍ୟାରେ ପ୍ରକାଶିତ କୁନ୍ତଳା କୁମାରୀ

ସାବତଙ୍କ ଅଭିଭାଷଣ, ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ 'ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟ' ପ୍ରବନ୍ଧ ଏବଂ ମାୟାଧର ମାନସିଂହଙ୍କ 'ପରଧର୍ମ' ପ୍ରବନ୍ଧରେ ବଙ୍ଗ ପ୍ରଭାବକୁ କଟୁ କଟାକ୍ଷ କରାଗଲା । ଲକ୍ଷ୍ମୀକାନ୍ତଙ୍କ ଭାଷାରେ " ଆଧୁନିକ ଓଡ଼ିଆ ସାହିତ୍ୟ ଅବାଟରେ ଅଗ୍ରସର ହେବାକୁ ଉନ୍ମୁଖ । ଅନେକ ତରୁଣ ସାହିତ୍ୟିକ ନୂତନତ୍ୱର ମୋହରେ ପଡି କରିବସୁଛନ୍ତି । ବଙ୍ଗଳାର ମର୍କଟ ଅନୁକରଣ - ଭାଷାରେ, ଭାବରେ, ରୀତିରେ, ଗତିରେ । ଏହି ଅନୁକରଣପ୍ରିୟତା କେବଳ ଜାତୀୟ ଅଧୋଗତିର, ଜାତୀୟ ବିକଳତାର ଲକ୍ଷଣ । ଏହି ନକଲ- ନବିସ କେବଳ ଆମର ଦାସମନୋବୃତ୍ତି(ସ୍ଲେଭ୍ ମେଣ୍ଟାଲିଟି)ର, ହୀନତାବ୍ୟାଧି (ଇନ୍‌ଫେରିଅରିଟି କମ୍ପ୍ଲେକ୍ସ)ର ପରିଚାୟକ । ଅନେକ ସ୍ଥଳରେ ଦେଖାଯାଉଛି, ଯେପରି ଓଡ଼ିଆ ଭାଷାର ମା'- ବାପ ନାହିଁ - ସେ ଛତର - ବାଉଳୀ ହୋଇ ଦ୍ୱାର ଦ୍ୱାର ହୋଇ ବୁଲୁଛି ।" (ସହକାର ପୃଷ୍ଠା-୯୬୭)

ଲକ୍ଷ୍ମୀକାନ୍ତଙ୍କ ଏହି ଇଙ୍ଗିତ ଆହୁରି ତୀବ୍ର ଭାବରେ ମାନସିଂହଙ୍କ 'ପରଧର୍ମ'ରେ ପ୍ରକାଶ ପାଇଛି । ଏହି ଚର୍ଚ୍ଚିତ ପ୍ରବନ୍ଧରେ ଓଡ଼ିଆ ଭାଷାକୁ ସ୍ୱଧର୍ମ ଓ ବଙ୍ଗଭାଷା ପରଧର୍ମ ରୂପେ ଚିତ୍ରିତ କରାଯାଇଛି । ଏଠାରେ ବଙ୍ଗଭାଷା ଓ ରବୀନ୍ଦ୍ର ପ୍ରଭାବକୁ ମାନସିଂହ ନିଷ୍ଠୁର ଭାବେ ସମାଲୋଚନା କରିଛନ୍ତି । 'ପରଧର୍ମୋ ଭୟାବହଃ' ବୋଲି ସେ ଅବହିତ କରିଛନ୍ତି । ସବୁଜ ସାହିତ୍ୟ ସମିତିକୁ ସେ ଏହି ବଙ୍ଗ ପ୍ରଭାବ ପାଇଁ ବିଶେଷ ଦାୟୀ କରିଛନ୍ତି । ବୈକୁଣ୍ଠନାଥ, କାଳିନ୍ଦୀ ପାଣିଗ୍ରାହୀ, ସଚ୍ଚି ରାଉତରାୟ, ହରିଶ୍ଚନ୍ଦ୍ର ବଡ଼ାଲଙ୍କ କବିତାଂଶ ଉଦ୍ଧୃତ କରି ସେଗୁଡିକ କିପରି ରବୀନ୍ଦ୍ରଙ୍କ ଅନ୍ଧାନୁକରଣ, ତାହା 'ପରଧର୍ମ' ପ୍ରବନ୍ଧରେ ସାବ୍ୟସ୍ତ କରିଛନ୍ତି ।

ମାନସିଂହଙ୍କ ବହୁ ପୂର୍ବରୁ 'ସମ୍ବଲପୁର ହିତୈଷିଣୀ', 'ବାରୁଣୀ' ପ୍ରଭୃତି ପତ୍ରିକାରେ ବଙ୍ଗ ପ୍ରଭାବକୁ ସମାଲୋଚନା କରି ସତର୍କ କରାଯାଇଥିଲା । ସହକାର (୧୩/୭)ର ସମ୍ପାଦକ ମଧ 'ଓଡ଼ିଆ ସାହିତ୍ୟରେ ସଂକଟ' ଶୀର୍ଷକରେ କୁହନ୍ତି - "ବଙ୍ଗ ସାହିତ୍ୟରେ ଅନୁପ୍ରାଣିତ ଓଡ଼ିଆ ଲେଖକମାନେ ନିଜ ଲେଖାରେ ଅଜ୍ଞାନରେ ଓ ସଜ୍ଞାନରେ ଅନେକ କଥା ପୂରାଇ ଓଡ଼ିଆ ଭାଷାର ମୌଳିକତ୍ୱ ନଷ୍ଟ କରିବାକୁ ବସିଛନ୍ତି । କ୍ରମେ ବଙ୍ଗଳା ଶବ୍ଦ ଏତେ ପରିମାଣରେ ଓଡ଼ିଆ ଭାଷାରେ ମିଶିଯାଉଛି ଯେ, ତାହାର ଗତିରୋଧ ନ କଲେ ଓଡ଼ିଆ ଭାଷାର ମୌଳିକତ୍ୱ ଅଚିରେ ଖର୍ବ ହୋଇଯିବ ।" (ପୃ-୬୭୨)

ସେ ଯାହା ହେଉ ମାନସିଂହଙ୍କ 'ପରଧର୍ମ' ପ୍ରବନ୍ଧ ପ୍ରକାଶ ପରେ ଓଡ଼ିଆ ସାହିତ୍ୟରେ ବେଶ୍ ଉଷ୍ଣତା ଦେଖାଯାଇଥିଲା । 'ସହକାର'ର ପରବର୍ତ୍ତୀ ସଂଖ୍ୟା(୧୩/୧୨)ରେ ସଚ୍ଚିଦାନନ୍ଦ ରାଉତରାୟ ଓ ଦିଗମ୍ବର ଭୂୟାଁଙ୍କ 'ସ୍ୱଧର୍ମ ଓ ପରଧର୍ମ' ଶୀର୍ଷକରେ ଦୁଇଟି ପତ୍ର ପ୍ରକାଶ ପାଇଥିଲା । ସଚ୍ଚି ରାଉତରାୟ ମୁକ୍ତ କଣ୍ଠରେ ବଙ୍ଗ ପ୍ରଭାବକୁ ସ୍ୱାଗତ କରିଥିଲେ

ଏବଂ ଏହାର ପ୍ରଧାନ କାରଣ ଉଭୟ ଭାଷାନ୍ତରାଳରେ ଲୁକ୍କାୟିତ ଥିବା ଦୁଇଟି ଏକ ଦିଗୋନ୍ମୁଖୀ ଜାତୀୟ ମନ ଭିତରେ ଅବସ୍ଥିତ ଆଦର୍ଶର ସାମଞ୍ଜସ୍ୟ । ଏହି ଆଦର୍ଶର ଐକ୍ୟ ହିଁ ଉତ୍କଳର ନବୀନ ଲେଖକମାନଙ୍କୁ ପ୍ରଚୋଦିତ, ଅନୁପ୍ରାଣିତ ଏବଂ ପରିଶେଷରେ ପ୍ରଭାବାନ୍ୱିତ କରେ । ସଚ୍ଚି ରାଉତରାୟ ବଙ୍ଗ ଅନୁକରଣକୁ ସମ୍ମାନନୀୟ ସୋପାନରେ ଥୋଇଥିଲା ବେଳେ ଦିଗମ୍ବର ଭୂୟାଁ ନିଜ ପତ୍ରରେ ବଙ୍ଗ ପ୍ରଭାବ ପ୍ରତି ଜାତୀୟ ଘୃଣା ପ୍ରକାଶ କରିଛନ୍ତି ।

'ପରଧର୍ମ' ତଥା 'ସହକାର'ରେ ପ୍ରକାଶିତ ବଙ୍ଗ ପ୍ରଭାବ ସମ୍ପର୍କିତ ଅନ୍ୟାନ୍ୟ ରଚନା ଉପରେ ଏକ ସୁନ୍ଦର ଏବଂ ତର୍କସିଦ୍ଧ ଆଲୋଚନା 'ସମାଲୋଚନାର ସୁଆଙ୍ଗ' କରିଛନ୍ତି ହରିଶ୍ଚନ୍ଦ୍ର ବଡ଼ାଲ । ଶ୍ରୀଯୁକ୍ତ ବଡ଼ାଲ ସମୟ ସହିତ ତାଳ ଦେଇ ଭାଷା ସ୍ୱତଃସ୍ଫୂର୍ତ୍ତ ଭାବେ ସମୃଦ୍ଧ ହେବା କଥା କୁହନ୍ତି । ବିଭିନ୍ନ ଭାଷାଭାଷୀଙ୍କ ସମ୍ମିଳନ ଫଳରେ ଭାଷାର ଧୀର ପରିବର୍ତ୍ତନ ଓ ପ୍ରସାର ସ୍ୱାଭାବିକ କ୍ରିୟା ପ୍ରତିକ୍ରିୟା ଫଳରେ ଘଟିଥାଏ । ସମାଲୋଚନାର ସୁଆଙ୍ଗ ଆଲୋଚନାରେ ବଡ଼ାଲ ଓଡ଼ିଆ ସାହିତ୍ୟରେ ଏକଛତ୍ର ଚକ୍ରବର୍ତ୍ତୀ ନ ଥିବାରୁ ଟିମା, ନିମା, ଭୀମା ଯାହାର କଲମ ଉଠାଇବାର ଶକ୍ତି ଅଛି ସେ ନିଜକୁ ଜଣେ ସମଝ୍‌ଦାର ସମାଲୋଚକ ରୂପେ ଜାହିର କରିବାକୁ ଅଣ୍ଟା ଭିଡ଼ି ବାହାରୁଛି ବୋଲି ଦର୍ଶାଇଛନ୍ତି ।

ବଡ଼ାଲଙ୍କ 'ସମାଲୋଚନାର ସୁଆଙ୍ଗ' ଆଲୋଚନାକୁ ସହକାର(୧୪/୭)ପୃଷ୍ଠାରେ 'ସୁଆଙ୍ଗର ଟିପ୍ପଣୀ' ଶୀର୍ଷକ ପ୍ରତିବାଦରେ କାଳିଚରଣ ପଟ୍ଟନାୟକ ନିଷ୍ଠୁର ଭାବେ ଖଣ୍ଡନ କରିଛନ୍ତି । ବଡ଼ାଲଙ୍କ ରଚନାକୁ ଅବାନ୍ତର ବୋଲି ସେ ଟିପ୍ପଣୀ ବାଢ଼ିଛନ୍ତି । ବଙ୍ଗ ପ୍ରଭାବିତ ଓଡ଼ିଆ ଭାଷାକୁ ସେ 'ବଙ୍ଗୋଡ଼' ଭାଷା ରୂପେ ଘୋଷଣା କରିଛନ୍ତି । ବଡ଼ାଲ୍ ଯେ କାହିଁକି ବିଶୁଦ୍ଧ ସାହିତ୍ୟ ଚର୍ଚ୍ଚା ଭିତରେ ସାଂପ୍ରଦାୟିକ ସଂକୀର୍ଣ୍ଣତା ପୂରାଇଛନ୍ତି ଏବଂ ତାଙ୍କର କି ଅଭିସନ୍ଧି ଅଛି ତାହା କାଳିଚରଣ ପ୍ରଶ୍ନ କରିଛନ୍ତି । କାଳିଚରଣଙ୍କ ଏହି ଲେଖାର ପ୍ରତିବାଦ ଚିଠିପତ୍ର ଶୀର୍ଷକରେ ସହକାର (୧୪/୫)ରେ ହରିଶ୍ଚନ୍ଦ୍ର ବଡ଼ାଲ ପ୍ରଦାନ କରନ୍ତି । ଏହି ପତ୍ରଟିର ଉପାଦେୟତାକୁ ସ୍ୱୀକାର କରି ଏବଂ ସମକାଳୀନ ଯୁଗରୁଚିକୁ ସମ୍ମାନ ଜଣାଇ ସେହି ପତ୍ରଟିକୁ ଏଠାରେ ଉଦ୍ଧୃତ କରାଗଲା ।

ହରିଶ୍ଚନ୍ଦ୍ର ବଡାଲ ସବୁଜ ଯୁଗର ଜଣେ ବହୁପ୍ରସୂ ସାହିତ୍ୟିକ । ତାଙ୍କର ଗଳ୍ପ, କବିତା, ଉପନ୍ୟାସ, ପ୍ରବନ୍ଧ ଓ ନାଟକ ରଚନାରେ ସିଦ୍ଧି ସ୍ୱୀକୃତ । ବଡଲାଙ୍କ ପତ୍ର ପ୍ରକାଶ ପୂର୍ବରୁ 'ପରଧର୍ମ' ପ୍ରବନ୍ଧର ପ୍ରତିବାଦ ସ୍ୱରୂପ ଅନନ୍ତ ପ୍ରସାଦ ପଣ୍ଡାଙ୍କ 'ଖୋଲାଚିଠି' ସହକାର (୧୪/୨)ରେ ପ୍ରକାଶ ପାଏ । ମାନସିଂହଙ୍କ ଅଯଥା ଦୋଷାରୋପକୁ ଖଣ୍ଡନ କରିଛନ୍ତି ଅନନ୍ତ ପ୍ରସାଦ ଏବଂ ଅନ୍ୟପକ୍ଷରେ ଆଧୁନିକ ଯୁଗରୁଚିକୁ ସ୍ୱାଗତ କରିଛନ୍ତି । ସେ ଅଯଥା ବଙ୍ଗ ପ୍ରଭାବକୁ ମଧ୍ୟ ସମାଲୋଚନା କରିଛନ୍ତି । ଅନନ୍ତ ପ୍ରସାଦ ପଣ୍ଡାଙ୍କ ସ୍ୱାଧୀନ ମତ

ସମ୍ବଳିତ ସେହି 'ଖୋଲା ଚିଠି'ଟି ଉଲ୍ଲିଖିତ ବିତର୍କର ସଂପୂର୍ଣ୍ଣ ଚିତ୍ର ପ୍ରଦାନ ପାଇଁ ଏଠାରେ ଉଦ୍ଧୃତ କରାଗଲା ।

ସମ୍ପାଦକ ମହାଶୟ,

'ସହକାର'ର 'କବି ସମ୍ମିଳନୀ' ସଂଖ୍ୟାରେ ଶ୍ରୀଯୁକ୍ତ ମାୟାଧର ମାନସିଂହଙ୍କ 'ପରଧର୍ମ' ଶୀର୍ଷକ ପ୍ରବନ୍ଧଟି ପାଠ କରି ମୋର ମନରେ କେତେକ ଭାବର ଉଦୟ ହେବାରୁ ଆଜି ଆପଣଙ୍କ ନିକଟକୁ ଲେଖୁଛି । ଆଶା କରେ, ଅନୁଗ୍ରହ କରି ପତ୍ରଟି ଆପଣଙ୍କ ସ୍ୱନାମଧନ୍ୟ ମାସିକ ପତ୍ରିକାରେ ପ୍ରକାଶ କରିବେ ।

ପ୍ରଥମେ କହି ରଖିବା ଦରକାର ଯେ, କୌଣସି ବିଶିଷ୍ଟ ଦଳ ବା ସମ୍ପ୍ରଦାୟ ସହିତ ମୋର କୌଣସି ସମ୍ପର୍କ ନାହିଁ କିମ୍ବା ମୁଁ କାହାରି ମତର ପ୍ରତିବାଦ କରିବାକୁ ଯାଉନାହିଁ । ମୁଁ କେବଳ ମୋର ସ୍ୱାଧୀନ ମତଟି ବ୍ୟକ୍ତ କରୁଛି ମାତ୍ର ।

ବଙ୍ଗଳା ଭାଷାର ନଗ୍ନ ଅନୁକରଣ କରି, କେବଳ କ୍ରିୟା, କର୍ତ୍ତାର ସାମାନ୍ୟ ପରିବର୍ତ୍ତନ ଦ୍ୱାରା 'ଲ' ସ୍ଥାନରେ 'ଳ' ଓ 'ନ' ସ୍ଥାନରେ 'ଣ' ବ୍ୟବହାର କରି ବଙ୍ଗଳା ଇଡିୟମ୍ ବା ବାକ୍ୟାଂଶକୁ ଓଡ଼ିଆ ଭାଷାରେ ପୂରାଇ ନୂତନ ଭାଷା ସୃଷ୍ଟି କରିବାର ପକ୍ଷପାତୀ ମୁଁ ନୁହେଁ କିମ୍ବା ଏପରି ଲେଖାକୁ ମୁଁ ପସନ୍ଦ କରେ ନାହିଁ । କିନ୍ତୁ ଶ୍ରୀଯୁକ୍ତ ମାନସିଂହ ମହାଶୟ ଯେପରି ଭାଷାକୁ ସମାଲୋଚନା କରିଛନ୍ତି, ସେଥିରେ ମୁଁ ତାଙ୍କ ସହିତ ଏକମତ ହୋଇପାରୁନାହିଁ ।

ଦେଶ, କାଳ ଓ ପାତ୍ର ଭେଦରେ ଭାଷା ଯେ ଭିନ୍ନ ଭିନ୍ନ ଆକାର ଧାରଣ କରେ, ଏହା ସ୍ୱତଃସିଦ୍ଧ କଥା । ପ୍ରାଚ୍ୟ, ପାଶ୍ଚାତ୍ୟ ସମସ୍ତ ଭାଷାକୁ ଅନୁଶୀଳନ କଲେ ଦେଖାଯାଏ ଯେ, କୌଣସି ଦେଶର ଭାଷା ଚିରକାଳ ସମାନ ଭାବରେ ରହି ନ ପାରେ । ଉଦାହରଣ ସ୍ୱରୂପ ଇଂରାଜୀ ଭାଷା ଧରାଯାଉ । ଇଂରାଜୀ ଭାଷା ଯେ ପୃଥିବୀ ମଧ୍ୟରେ ସବୁଠାରୁ ଉନ୍ନତିଶୀଳ ଭାଷା ବା ଫ୍ଲୋରିସିଂ ଲାଙ୍ଗୁଏଜ୍ - ଏକଥା ବୋଧହୁଏ କେହି ଅସ୍ୱୀକାର କରିପାରିବେ ନାହିଁ । ସେହି ଇଂରାଜୀ ଭାଷାର ଗତି ସମୟର ଗତି ଅନୁସାରେ କିପରି ପରିବର୍ତ୍ତିତ ହୋଇଛି, ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ଆଧୁନିକ ଇଂରେଜୀ ଭାଷା ସହିତ 'ଚସର'ଙ୍କ ଲେଖାର ତୁଳନା କଲେ ସହଜରେ କହିହେବ ନାହିଁ, ତାହା ଏକ ଭାଷା ବୋଲି । ସେହିପରି ବଙ୍ଗଭାଷାରେ ଦେଖିବାକୁ ଗଲେ, ଆଧୁନିକ ବଙ୍ଗଳା ଭାଷା ଓ ଚଣ୍ଡୀଦାସ, ଭାରତଚନ୍ଦ୍ରଙ୍କ ଭାଷା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଲକ୍ଷିତ ହୁଏ । ସୁତରାଂ ଆଧୁନିକ ଓଡ଼ିଆ ଭାଷା ଉପେନ୍ଦ୍ର ଭଞ୍ଜ ବା କବିସୂର୍ଯ୍ୟଙ୍କ ଭାଷାଠାରୁ ପୃଥକ୍ ହେଲା ବୋଲି କ୍ଷୋଭ କରିବାର କାରଣ କଣ ଅଛି ?

ଶ୍ରୀଯୁକ୍ତ ମାନସିଂହ ମହାଶୟ କ୍ଷୋଭ କରି କହୁଛନ୍ତି, "ଅଧୁନା ଲିଖିତ ଗଳ୍ପ କବିତାମାନଙ୍କ ନାମ ହେଲା 'ସବୁଜ କବିତା', 'ଦେଶର -ଡାକ', 'ପାଷାଣୀର ପ୍ରତୀକ୍ଷା', 'ମୁକ୍ତାଗଡର କ୍ଷୁଧା' ଓ ନାୟକ ନାୟିକାମାନଙ୍କର ନାମ ହେଲା 'ବାସନ୍ତୀ', 'ନିରୂପମ', 'ଚାମେଲୀ' ଓ 'ରମେଶ' ଇତ୍ୟାଦି। ସାଧୁଭାବରେ ବିଚାର କରି ଦେଖନ୍ତୁ ଏଗୁଡିକ ଓଡ଼ିଆ ନା ବଙ୍ଗଳା ? ଓଡ଼ିଶାର ଶତ ଶତ ପଲ୍ଲୀରେ ଯାଇ ପଚାରନ୍ତୁ, ସବୁଜ ଶବ୍ଦର ଅର୍ଥ କ'ଣ ଏବଂ ଦେଖନ୍ତୁ ଏହାର କି ଉତ୍ତର ଆପଣ ପାଉଛନ୍ତି। ଦେଶର ଯେଉଁ କିଶୋରଗଣ ଆଜି ଓଡ଼ିଶାର ସ୍କୁଲମାନଙ୍କରେ ଏଇ ଆଧୁନିକ ସାହିତ୍ୟ ଆଗ୍ରହ ସହକାରେ ପାଠ କରୁଥିବେ, ସେମାନଙ୍କୁ ପଚରାଯାଉ, ସବୁଜ କବିତାର ଅର୍ଥ କ'ଣ ? ମୋର ଖୁବ୍ ବିଶ୍ୱାସ, ସେମାନେ ମୁଖକୁ ଅର୍ଦ୍ଧବ୍ୟାଦାନ କରି କେବଳ ପରସ୍ପରକୁ ଚାହିଁବେ। ଏପରି ସ୍ଥଳେ ଭାଷାକୁ ଏ ନୂଆ ଆମଦାନିର କି ଆବଶ୍ୟକ ଅଛି ?''

ଶ୍ରୀଯୁକ୍ତ ମାନସିଂହଙ୍କର ଉକ୍ତ ମତକୁ ମୁଁ କୌଣସି ଭାବରେ ସମର୍ଥନ କରିପାରୁନାହିଁ। ଆଚ୍ଛା କହନ୍ତୁ ଭଲା, ଉଲ୍ଲିଖିତ ଶବ୍ଦଗୁଡିକରେ କେଉଁଟି ବଙ୍ଗଳା ? 'ଦେଶ' ଶବ୍ଦଟି ଓଡ଼ିଆ, 'ଡାକ' ଶବ୍ଦ ବି ଓଡ଼ିଆ। ବଙ୍ଗଳାରେ 'ଦେଶେର ଡାକ' ବୋଲି ଖଣ୍ଡିଏ ନାଟକ ଅଛି ବୋଲି ଲେଖକ ମହାଶୟ କହୁଛନ୍ତି କି 'ଦେଶର ଡାକ' ଶବ୍ଦଟି ବଙ୍ଗଳାର ଅନୁକରଣ ? ଏହା ଯଦି ସତ୍ୟ ହୋଇଥାଏ, ତେବେ ଲେଖକଙ୍କର ଧାରଣା ଯେ ସଂପୂର୍ଣ୍ଣ ଭ୍ରମାତ୍ମକ, ଏକଥା କହିବା ନିଷ୍ପ୍ରୟୋଜନ। ସେହିପରି 'ମୁକ୍ତାଗଡର କ୍ଷୁଧା' ଏଥିରେ ବଙ୍ଗଳା କେଉଁଟି ? 'ମୁକ୍ତାଗଡ' ଗୋଟିଏ ସ୍ଥାନର ନାମ। ଏହିପରି ନାମ ଓଡ଼ିଶାରେ ବହୁତ ଅଛି, ଯଥା - 'ହାତୀଗଡ଼', 'ନାରାୟଣ ଗଡ଼' ଇତ୍ୟାଦି, 'କ୍ଷୁଧା' ଶବ୍ଦଟି ବି ପୂରା ଓଡ଼ିଆ; ସୁତରାଂ 'ମୁକ୍ତାଗଡର କ୍ଷୁଧା' ବୋଲି ଉପନ୍ୟାସର ନାମ ଦେଲେ ମହାଭାରତ ଯେ କେଉଁଠି ଅଶୁଦ୍ଧ ହୋଇଗଲା, ମୁଁ ବୁଝିପାରୁନାହିଁ।

ତା'ପରେ ନାୟକ ନାୟିକାମାନଙ୍କର ନାମ ଯେ 'ବାସନ୍ତୀ', 'ନିରୂପମ', 'ଚାମେଲୀ' ବା 'ରମେଶ' ଦିଆଯାଉଛି, ସେଥିପାଇଁ କେବଳ ଲେଖକ - ଲେଖିକାମାନେ ଦାୟୀ ନା ବର୍ତ୍ତମାନ ଶିକ୍ଷିତ ଜନସାଧାରଣ ଦାୟୀ - ଏକଥା ଭାବିବା ଦରକାର। ଆଚ୍ଛା କହନ୍ତୁ ଦେଖି, ଆଜିକାଲି ଶିକ୍ଷିତ ଓଡ଼ିଆମାନେ କଣ 'ରମେଶ' ବା 'ବାସନ୍ତୀ' ବୋଲି ପୁଅ ଝିଅଙ୍କର ନାଁ ଦେଉନାହାନ୍ତି ? ମୁଁ କହେ, ବୋଧହୁଏ ଆଜିକାଲିର ଅଶୀ ନବେ ନାମ ଏହି ପ୍ରକାରର। ମୋ କଥା ଯଦି କେହି ଅବିଶ୍ୱାସ କରନ୍ତି, ତେବେ ମୋର ଅନୁରୋଧ, ସେମାନେ ଅନୁଗ୍ରହ କରି ରେଭେନ୍ସା କଲେଜ ବା କଲେଜିଏଟ୍ ସ୍କୁଲର ଛାତ୍ରମାନଙ୍କର ଓ ରେଭେନ୍ସା ଗାର୍ଲସ ସ୍କୁଲର ଛାତ୍ରୀମାନଙ୍କ ନାମଯୁକ୍ତ ରେଜିଷ୍ଟର ବହିରେ ଅନୁସନ୍ଧାନ କରିପାରନ୍ତି।

ଏପରି ଅବସ୍ଥାରେ ଉପନ୍ୟାସ ଓ ଗଳ୍ପକୁ ଯାହା ସମାଜର ପ୍ରକୃତ ଚିତ୍ରଣ ବୋଲି ଧରାଯାଏ, ତେବେ ଆଧୁନିକ ଓଡ଼ିଆ ଶିକ୍ଷିତ ସମାଜର ବିଷୟ ଲେଖିଲା ବେଳେ 'ରମେଶ' ବା 'ବାସନ୍ତୀ' ବୋଲି ନାମ ଦେଇ ନାୟକ ନାୟିକା ସୃଷ୍ଟି ନ କଲେ ତାହା ପ୍ରକୃତ ସମାଜଚିତ୍ର ବୋଲି କହିବୁ କିପରି ?

ହଁ, ଲେଖକ ମହାଶୟ କହୁଛନ୍ତି 'ସବୁଜ' ଶବ୍ଦର ଅର୍ଥ ଓଡ଼ିଶାର ପଲ୍ଲୀବାସୀମାନେ ବା ସ୍କୁଲ ଛାତ୍ରମାନେ କହିପାରିବେ ନାହିଁ । ଆଚ୍ଛା ମୁଁ ପଚାରେ, ଲେଖକଙ୍କର ଉଦ୍ଧୃତ କବିସୂର୍ଯ୍ୟଙ୍କର ଲେଖା "ଫତୁରି ଖୋର ଆଖରକୁ ହେବାର ଏହି ଏକା ଏଥୁଁ ଫଳ"- ବାକ୍ୟଟିର ଅର୍ଥ ପଲ୍ଲୀବାସୀ ବା ସ୍କୁଲ ଛାତ୍ରଙ୍କ କଥା ଛାଡିଦିଅନ୍ତୁ, କେତେ ଜଣ ଗ୍ରାଜୁଏଟ୍ ବା ଏମ୍ଏ ଉପାଧିଧାରୀ ଉଚ୍ଚଶିକ୍ଷିତ ଓଡ଼ିଆ ବୁଝିପାରିବେ ?

ରବୀନ୍ଦ୍ରନାଥ ଓ ପ୍ରମଥ ଚୌଧୁରୀ ବଙ୍ଗଳାରେ 'ସବୁଜ ପତ୍ରିକା' ବୋଲି ଖଣ୍ଡିଏ ପତ୍ରିକା ପ୍ରକାଶ କରିଥିଲେ ବୋଲି କ'ଣ 'ସବୁଜ' ଶବ୍ଦଟା ଯେଉଁଥିରେ ଲାଗିଯିବ, ସେଟା ବଙ୍ଗଳା ହୋଇଯିବ ?

ହଁ, ଲେଖକ ମହାଶୟ ଗୋପବନ୍ଧୁ ଓ କାଳିନ୍ଦୀଚରଣଙ୍କର 'ପଲ୍ଲୀର ଜଳହୀନ କରୁଣ ଦୃଶ୍ୟ ବର୍ଣ୍ଣିତ ହୋଇଥିବା ଦୁଇଟି ଗଦ୍ୟାଂଶ' ଉଦ୍ଧୃତ କରି ଶେଷୋକ୍ତ ଲେଖକଙ୍କର ଲେଖାକୁ ବଙ୍ଗଭାବାପନ୍ନ ବୋଲି କହୁଛନ୍ତି; କିନ୍ତୁ ମୁଁ ଏ ବିଷୟରେ ମଧ ଲେଖକଙ୍କ ସହିତ ଏକମତ ହୋଇପାରୁନାହିଁ ।

ମୁଁ କହେଁ, ଗୋପବନ୍ଧୁଙ୍କ ଲେଖା ଓ କାଳିନ୍ଦୀଚରଣଙ୍କର ଲେଖା ଭିନ୍ନ ଭିନ୍ନ ଉଦ୍ଦେଶ୍ୟ ନେଇ ଲିଖିତ - ପ୍ରଥମଟି ପ୍ରତ୍ୟକ୍ଷ ଦୃଷ୍ଟ ଘଟଣାର ନିରାଭରଣ ପ୍ରକାଶ, ଅନ୍ୟଟି କଳ୍ପନା ପ୍ରସୂତ ଅଳଙ୍କାରଯୁକ୍ତ ଗୋଟିଏ ସୋସିଆଲିଷ୍ଟ୍‌ର ଲେଖା, ଅନ୍ୟଟି ନୋଭେଲିଷ୍ଟର ଲେଖା । ଗୋଟିଏ ପ୍ରୋଜାଇକ୍, ଅନ୍ୟଟି ପୋଏଟିକ୍; ସୁତରାଂ ଏ ଦୁଇଟି ଲେଖାକୁ ଏକ ପାସଙ୍ଗରେ ପକାଇ ଓଜନ କରିବା ଠିକ୍ ହୋଇଛି କି ?

"କିଏ ଯେପରି ସକଳ ମୁଖରେ ଗୋଟାଏ ମର୍ମନ୍ତୁଦ ବିଷାଦ କାଳିମା ଲେଖି ଦେଇଛି, ଗୋଟାଏ ଅଶ୍ରୁହୀନ ମରଣର ବିଭୀଷିକାରେ ସକଳ ପ୍ରାଣ ଆତଙ୍କିତ" - ଏ ବାକ୍ୟଟିରେ ଓଡ଼ିଆ ଧର୍ମ କେଉଁଠି କିପରି ନଷ୍ଟ ହୋଇଗଲା, ମୁଁ ବୁଝିପାରୁନାହିଁ ।

ଲେଖକ ଫକୀରମୋହନଙ୍କ ଭାଷା ଓ କାଳିନ୍ଦୀଚରଣଙ୍କ ଭାଷାର ତୁଳନା କରିଛନ୍ତି । ଫକୀରମୋହନ ଜଣେ ପ୍ରବୀଣ ଲେଖକ; ସୁତରାଂ ସେ ତାଙ୍କର ଲେଖାରେ ସମୟୋଚିତ ଭାଷା ପ୍ରୟୋଗ କରି ପାରିବାଟା ସ୍ୱାଭାବିକ, ଅବଶ୍ୟ ତାଙ୍କ ଲେଖା ସହିତ କାଳିନ୍ଦୀ ଚରଣଙ୍କର ଲେଖାର ତୁଳନା ହୋଇନପାରେ । ତା ବୋଲି, ଲେଖକ 'ମୁକ୍ତାଗଡ଼ର କ୍ଷୁଧା'ରୁ ଯେଉଁ ଅଂଶ ଉଦ୍ଧୃତ କରି କହିଅଛନ୍ତି ଯେ, ସେ ଭାଷା ବଙ୍ଗଳା ଗଦ୍ୟର ସମର୍ଥନ

ଓ ବଙ୍ଗ ପ୍ରଭାବିତ ଓ ୮୦ ବର୍ଷ ତଳର ଓଡ଼ିଆ ମୁହଁରେ ଯେ 'ରବୀନ୍ଦ୍ରନାଥୀ ଭାଷା ସମ୍ଭବେ ନାହିଁ'- ଏକଥା କଦାପି ସ୍ୱୀକାର କରାଯାଇ ନ ପାରେ । ଲେଖକ କହୁଛନ୍ତି ୮୦ ବର୍ଷ ତଳର ଓଡ଼ିଆ ମୁହଁରେ ଏ 'ରବୀନ୍ଦ୍ରନାଥୀ ଭାଷା କବି ଦେଇ ଭାଷା ପକ୍ଷରେ ଅପମାନ କରିଛନ୍ତି । କିନ୍ତୁ ମୁଁ ଭାବେ, ଠିକ୍ ବିପରୀତ ଭାବରେ । ମୋର ମତରେ ୮୦ ବର୍ଷ ତଳର ଓଡ଼ିଆ ମୁହଁରେ- 'ରବୀନ୍ଦ୍ରନାଥୀ' ଭାବ ଓ ଭାଷା ସମ୍ଭବେ ନାହିଁ ବୋଲି କହିବା ଦ୍ୱାରା ଲେଖକ ବରଂ ଓଡ଼ିଆ ଭାଷା ତଥା ଜାତିକୁ ଅପମାନ କରୁଛନ୍ତି । ଶତ ଶତ ବର୍ଷ ପୂର୍ବରେ ଯେଉଁ ଓଡ଼ିଆ ମୁହଁରୁ 'ନିର୍ଗୁଣ ସଂହିତା', 'ଶୂନ୍ୟ ସଂହିତା' ପ୍ରଭୃତି ଦାର୍ଶନିକ ଭାବପୂର୍ଣ୍ଣ ତଥ୍ୟ ବାହାରିଥିଲା, ୮୦ ବର୍ଷ ତଳର ସେଇ ଓଡ଼ିଆ ମୁହଁରେ ଯେ ଦାର୍ଶନିକ ଭାବପୂର୍ଣ୍ଣ ଭାଷାଟିଏ ବାହାରିଲା ବୋଲି ତାହା 'ରବୀନ୍ଦ୍ରନାଥୀ' ହୋଇଗଲା - ଏହା କହିବା ଧୃଷ୍ଟତା ମାତ୍ର ।

ତେବେ ଯଦି କେହି ଲେଖେ 'ଫୁପିଁ ଫୁପିଁ କାନ୍ଦୁଛି' ତେବେ ତାହା ନିଶ୍ଚୟ ଦୂଷଣୀୟ ବୋଲି କହିବାକୁ ହେବ ଏବଂ ଭାଷାକୁ ଏପରି ଦୋଷରୁ ମୁକ୍ତ କରିବାକୁ ଚେଷ୍ଟା କରିବା ସର୍ବଥା ପ୍ରଶଂସନୀୟ ।

କାବ୍ୟ କବିତା ସମ୍ବନ୍ଧରେ ଲେଖକ ଯାହା ଲେଖିଛନ୍ତି, ସେ ବିଷୟରେ ମୁଁ ବିଶେଷ କିଛି କହି ପାରୁନାହିଁ; କାରଣ ମୁଁ କବି ନୁହେଁ କିମ୍ବା ସେ ଦିଗରେ ମୋର ସେତେ ଦଖଲ ନାହିଁ । ଲେଖକ ନିଜେ ଜଣେ ଉଦୀୟମାନ କବି: ସୁତରାଂ ସେ ବିଷୟରେ ସେ ଖୁବ୍ ବେଶୀ ଜାଣିପାରିଥାନ୍ତି । ତେବେ ମୋର ଅ-କବି ମତରେ ମୁଁ ଏତିକି କହିପାରେଁ ଯେ, ଆଜିକାଲିର କବିମାନେ ଯେ କାବ୍ୟ କବିତାକୁ ଯୁଗୋଚିତ ରୁଚି ଅନୁଯାୟୀ ନ ଲେଖି ସେଇ ମାନ୍ଧାତା ଅମଳର 'ବଢ଼ାଇଦେଲେ ପୟର' ବା 'ଫାଟି ପଡିବାର ନିକୁଞ୍ଜ ସଂଚାର ଶ୍ରମୁଁ ମୋ ଚରଣ ତଳ' ଭାଷା ଓ ଛାନ୍ଦରେ ଲେଖିବେ - ଏକଥା କଦାପି କୁହାଯାଇ ନ ପାରେ । କାରଣ 'ଦେଶ -କାଳ- ପାତ୍ର'ର ପରିବର୍ତ୍ତନ ଅନୁସାରେ ରୁଚିର ମଧ୍ୟ ପରିବର୍ତ୍ତନ ହୁଏ । ସୁତରାଂ ଯେତେ କହିଲେ ମଧ୍ୟ ଓଡ଼ିଆ ଯୁବକ ଯୁବତୀ ଆଉ ସେ ପୁରୁଣାକାଳିଆ ମାଣିଆବନ୍ଧି ଯୋଡ ବା କୁମ୍ଭକର୍ଣ୍ଣୀ ଦକ୍ଷିଣୀ ଶାଢ଼ି ପିନ୍ଧିବାକୁ ମନ ବଳାଇବେ ନାହିଁ । ଲେଖକଙ୍କର ସମସ୍ତ ଆୟାସ ଆସ୍ଫାଳନ କେବଳ ଅରଣ୍ୟରୋଦନରେ ପର୍ଯ୍ୟବେସିତ ହେବ ସିନା !

ତେବେ ମୁଁ ଏତିକି କହିପାରେ ଯେ, 'ଆସ ପରଶି ମୃଦୁଳ ବାୟେ, ଆସ ବିଳସି ଚପଳ ଛାୟେ ବା ଆସ ଗୋପନ ଚରଣ ପାତେ' ପ୍ରଭୃତି ଲେଖାର ପକ୍ଷପାତୀ ମୁଁ ନୁହେଁ ।

ମୋ ମତରେ ଭାଷାକୁ କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ଗଣ୍ଡି ମଧ୍ୟରେ ବାନ୍ଧି ରଖିବା ଉଚିତ ନୁହେଁ କିମ୍ବା ଅନ୍ୟ ଜାତିର ଭାଷା ଓ ଭାବକୁ ନଗ୍ନ ଭାବରେ ଅନୁକରଣ କରି ନିଜ ଭାଷାର

ସ୍ୱାତନ୍ତ୍ୟ ନଷ୍ଟ କରିବା ଉଚିତ ନୁହେଁ । ତତ୍‌ପରିବର୍ତ୍ତେ ଭାଷା ଓ ଭାବର ସ୍ୱାଭାବିକ ସଂପ୍ରସାରଣ ସର୍ବଥା ବାଞ୍ଛନୀୟ ! ଆଜି ଏତିକି ।

ଏହି ବିତର୍କର ପକ୍ଷ ଓ ବିପକ୍ଷରେ ଏଠାରେ ଛଅଟି ପତ୍ର ଉଦ୍ଧୃତ କରାଯାଇଚି । ଏହି ସମସ୍ତ ପତ୍ରରେ ଅତ୍ୟଧିକ ବଙ୍ଗ ଶବ୍ଦର ଅନୁପ୍ରବେଶ ଓଡ଼ିଆ ଭାଷାକୁ କ୍ଷୁର୍ଣ୍ଣ କରିବାର ସମ୍ଭାବନା ପ୍ରକାଶ ପାଇଛି । ଏତଦ୍‌ବ୍ୟତୀତ ଏକ ଗତିଶୀଳ ଭାଷାର ବିପର୍ଯ୍ୟୟ ଓ ଉଦ୍ଧାରର ଅନେକ ବିକଳ୍ପ ଦେଖାଯାଇଛି । ଉଦ୍ଧୃତ ପତ୍ ସମୂହ ମଧ୍ୟରୁ 'ଉତ୍କଳ ଦୀପିକା'ର ପତ୍ର ଦୁଇଟି 'କଣ୍ଟିଦେଶ ଭାଷାନୁରାଗୀ' ଓ 'କସ୍ୟଚିଦ୍ ଯଥାର୍ଥ ବିଚାରଶୀଳ ପ୍ରବନ୍ଧ ରଚକସ୍ୟ' ଛଦ୍ମ ନାମରେ ପ୍ରକାଶିତ ! କିନ୍ତୁ ପତ୍ର ଦୁଇଟିରେ ପ୍ରକାଶିତ ଆଶଙ୍କା ଅନେକତ୍ର ଆଧୁନିକ ପତ୍ରଗୁଡିକରେ ମଧ୍ୟ ଗୁଞ୍ଜରିତ । ଦୀପିକାରେ ଗଢ଼ି ଉଠିଥିବା ଆନ୍ଦୋଳନର ଷାଠିଏ ବର୍ଷ ପରେ ସଚ୍ଚିଦାନନ୍ଦ ରାଉତରାୟ, ଦିଗମ୍ବର ଭୂୟାଁ, ଅନନ୍ତ ପ୍ରସାଦ ପଣ୍ଡା ଓ ହରିଶ୍ଚନ୍ଦ୍ର ବଡାଲଙ୍କ ପତ୍ରରେ ସେହି ଆନ୍ଦୋଳନର ପ୍ରତିଧ୍ୱନି ସ୍ପଷ୍ଟ । ଏହି ସମସ୍ତ ପତ୍ର ଲେଖକଗଣ ଓଡ଼ିଆ ସାହିତ୍ୟର କୃତବିଦ୍ୟ ସାଧକ ଓ ତାଙ୍କର ସ୍ୱାଧୀନ ମତ ସାହିତ୍ୟ ଇତିହାସରେ ସ୍ମରଣଯୋଗ୍ୟ ।

ଏହି ବିତର୍କର ନିଷ୍କର୍ଷ ରୂପେ ଆଧୁନିକ କବି ଓ ସାହିତ୍ୟିକମାନଙ୍କୁ ଅନୁରୋଧ କରାଯାଇପାରେ ଯେ -

୧. ଅଯଥା ବାହ୍ୟ ପ୍ରଭାବରୁ ମୁକ୍ତ ରୁହନ୍ତୁ ।

୨. ବଙ୍ଗଳା ବା ହିନ୍ଦୀ ସାହିତ୍ୟର ସାମାନ୍ୟ ପରିବର୍ତ୍ତନ କରି ମୌଳିକ ଓଡ଼ିଆ ଚଳାଇ ବାହାବା ନେବାରୁ କ୍ଷାନ୍ତ ହୁଅନ୍ତୁ ।

୩. ବାହ୍ୟ ସାହିତ୍ୟର ଉପାଦେୟ ଭାବ ସଂଗ୍ରହ କରି ନିଜ ସାହିତ୍ୟକୁ ଋଦ୍ଧିମନ୍ତ କରନ୍ତୁ ।

'ପରଧର୍ମ' ପ୍ରକାଶର ବାରବର୍ଷ ପରେ 'ଶଙ୍ଖ'(ଆଷାଢ଼-୧୯୪୫) ପତ୍ରିକାରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ 'ଆଧୁନିକ ଓଡ଼ିଆ ସାହିତ୍ୟର ବାଣିଜ୍ୟ ମୂଲ୍ୟ' ପ୍ରବନ୍ଧ ପ୍ରକାଶିତ ହୁଏ । ଏହି ପ୍ରବନ୍ଧରେ ମଧ୍ୟ ବଙ୍ଗ ପ୍ରଭାବ ଉପରେ ଟିପ୍ପଣୀ ପ୍ରଦାନ କରାଯାଇଛି । ସେହି ପ୍ରବନ୍ଧର ଉପସଂହାରକୁ ଏଠାରେ ନିଷ୍କର୍ଷ ରୂପେ ଉଦ୍ଧୃତ କରାଯାଉଛି ।

"ଯେଉଁମାନେ ଓଡ଼ିଶାର ବଂଶ ପରମ୍ପରା, ଶିକ୍ଷା, ସଭ୍ୟତା ଓ ରୁଚି ମତେ କବିତା ଲେଖିବାକୁ ଅକ୍ଷମ ସେମାନେ ଇଂରାଜୀ କିମ୍ବା ବଙ୍ଗଳାରେ ଲେଖନ୍ତୁ । ଏଥିରେ ଓଡ଼ିଆର କ୍ଷୁବ୍ଧ ହେବାର କାରଣ ନାହିଁ । କାହିଁକି ନା ବର୍ତ୍ତମାନ ଜଣେ ଓଡ଼ିଆ ପୁଅ ଦେଶ ଭିତରେ ନାମ କରିବାଠାରୁ ବିଦେଶରେ ନାମ କରିବା ଓଡ଼ିଶା ପକ୍ଷରେ ବେଶୀ ଦରକାର ହୋଇପଡିଛି ।"(ଶଂଖ ୧/୧)

ସାହିତ୍ୟରେ ବାହ୍ୟ ପ୍ରଭାବ ସ୍ୱାଗତଯୋଗ୍ୟ କିନ୍ତୁ ବାହ୍ୟ ପ୍ରଭାବରେ ମୌଳିକତା ହରାଇ ଛିନ୍ନମୂଳ ହେବା ସ୍ପୃହଣୀୟ ନୁହେଁ । ଗାନ୍ଧିଜୀଙ୍କ ମତରେ ଜ୍ଞାନର ବାତାୟନ ଉନ୍ମୁକ୍ତ କରି ବିଶ୍ୱର ମୁକ୍ତ ଆଲୋକ, ମୁକ୍ତ ବାୟୁକୁ ସ୍ୱାଗତ କରିବା ତା ଅର୍ଥ ନୁହେଁ ଝଡବତାସରେ ନିଜସ୍ୱକୁ ଉଜାଡିଦେବ । ପର ପ୍ରଭାବରେ ଭାସିଯିବା । ପ୍ରାସଙ୍ଗିକ ଭାବେ ଏଠାରେ କବି ଗଙ୍ଗାଧରଙ୍କ 'ଉତ୍କଳ ଭାରତୀଙ୍କ ଉକ୍ତି'ର ନିମ୍ନ ପଂକ୍ତିକୁ ଉଦ୍ଧାର କରାଯାଇପାରେ ।

ପାଇଥିଲେ ଦିଅ ବିଲାତି ପ୍ରସୂନ
ଥାଏ ଯଦି ତହିଁ କିଛି ସୌରଭ
ସୌରଭ ନ ଥିଲେ କାନ୍ତିରେ ନିଉନ
ନ ଥିଲେ ବଢ଼ିବ ସିନା ଗୌରବ
ମସ୍ତକେ ମୋ ଟୋପି ନ ଦେବ ବାବାରେ
ନ କାଢ଼ିବ ମୋର କରୁ କଙ୍କଣ
ସିନ୍ଦୂର ବିନ୍ଦୁ ମୋ ଭାଲେ ରଖିବାରେ
ନିରନ୍ତର ମନେ ଥିବ ସ୍ମରଣ ।

ପ୍ରଚ୍ଛଦ : ରମେଶ ପତି

## ଏହି ଲେଖକଙ୍କ ଅନ୍ୟାନ୍ୟ କୃତି

**କବିତା :**

ନିଃଶବ୍ଦ ଆକାଶର ଡାକ (୧୯୯୩)
ଅରଣ୍ୟର ଡାକ (୨୦୦୦)
ଶୂନ୍ୟବିନ୍ଦୁ (୨୦୦୨)
ପାଦ ନାହିଁ ବୋଲି (୨୦୦୯)
ଯା'ଆକାଶ ହୋଇଯା (୨୦୧୪)
ନିଜ ନିଜର ସମୁଦ୍ର (୨୦୧୫)

**ପ୍ରବନ୍ଧ :**

ସମ୍ବଲପୁର ହିତୈଷିଣୀ...(୨୦୦୨)
ଅନନ୍ୟ ଅନ୍ୱେଷା (୨୦୧୧)

**ଗଳ୍ପ :**

ଶିଳାର ସ୍ୱପ୍ନ (୨୦୦୪)

**ଜୀବନୀ :**

ସାର୍ ବାସୁଦେବସୁଢ଼ଳଦେବ(୨୦୦୪)
ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ (୨୦୦୮)





## ଫଣୀନ୍ଦ୍ରଭୂଷଣ ନନ୍ଦ

ସାଂପ୍ରତିକ ଓଡ଼ିଆ କାବ୍ୟ କବିତା ଏବଂ ସମାଲୋଚନା ସାହିତ୍ୟ ଜଗତରେ ଏକ ବହୁ ପରିଚିତ ସ୍ୱର । କାବ୍ୟିକ ଶବ୍ଦ ପ୍ରୟୋଗ ସହିତ ବୌଦ୍ଧିକ ଚେତନା ପୂର୍ଣ୍ଣ ଉପସ୍ଥାପନା ଆରମ୍ଭରୁ ହିଁ ଡକ୍ଟର ନନ୍ଦଙ୍କୁ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଛି । ତର୍ଜମାଶୀଳ ବିତର୍କ ବଳୟକୁ ଭେଦକରି ସେ ଯେମିତି ଏକ ନିର୍ଦ୍ଦିଷ୍ଟ କେନ୍ଦ୍ର ବିନ୍ଦୁରେ ପ୍ରବେଶ କରିପାରନ୍ତି; ତାହା ଓଡ଼ିଆ ସାହିତ୍ୟରେ ବିରଳ ।

ଦୀର୍ଘ ଚାରି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ଫଣୀନ୍ଦ୍ରଭୂଷଣଙ୍କ ସାରସ୍ୱତ ସାଧନା ଅବ୍ୟାହତ ଓ ଅନାହତ । ବହୁ ପାଠିତା ମନୋଭାବ, ଗଭୀର ଅଙ୍ଗୀକାରବଦ୍ଧତା ଓ ଯୁକ୍ତି ସଂଗତ ରଚନା ପାଇଁ ସେ ସିଦ୍ଧି ଓ ପ୍ରସିଦ୍ଧି ଲାଭ କରିଥିଲେ ମଧ୍ୟ ସତ୍ୟନିଷ୍ଠ ଆଚରଣ ତାଙ୍କୁ ସ୍ୱତନ୍ତ୍ର କରିଛି ।

ନୂତନ ଶବ୍ଦ ପ୍ରୟୋଗ ଓ ସୂକ୍ଷ୍ମ ଚିନ୍ତନର ଆଧାରରେ ସେ ଯେମିତି କାଳଜୟୀ କବିତା ରଚନା କରିଥା'ନ୍ତି, ସେମିତି ମଧ୍ୟ ଭିନ୍ନ ଭିନ୍ନ ଦୃଷ୍ଟିଭଙ୍ଗୀକୁ ସଫଳତାର ସହ ବିଶ୍ଳେଷଣ କରି ପାଠକଙ୍କୁ ପରଶିଦେବାରେ ଡକ୍ଟର ଫଣୀନ୍ଦ୍ରଭୂଷଣଙ୍କର ଅଜସ୍ର ସୁନାମ ରହିଛି । ଦୁଇଟି ପ୍ରବନ୍ଧ ପୁସ୍ତକର ଅପୂର୍ବ ସଫଳତା ପରେ 'ଅମୃତ ଅଭୀପ୍ସାର ସନ୍ଦର୍ଭ' ତାଙ୍କର ତୃତୀୟ କୃତି । ଏହି ସଂକଳନଟି ପାଠକୀୟ ମର୍ଯ୍ୟାଦା ଲାଭକରିବାର ଆଶାକରାଯାଏ ।